

ଲେଖିଛନ୍ତି—

**ଶ୍ରୀ ଉମେଶଚରଣ ପାଢ଼ୀ**

ଲୋକନାଥପୁର, ଶକଟି, ଗଞ୍ଜାମ



ପ୍ରକାଶ କରିଛନ୍ତି—

**ଶ୍ରୀ ଭାସ୍କରଚନ୍ଦ୍ର ପାତ୍ର**

**ବିଜୟ ବୁକ୍ ଷ୍ଟୋର**

ବ୍ରହ୍ମପୁର-୧



ଆମ୍ଭ ପ୍ରକାଶ କରିଛୁ—

ଯାନୁୟାରି, ୬, ୧୯୭୯



ମୁଦ୍ରଣ କରିଛନ୍ତି—

**ଅରୁଣ ପ୍ରିଣ୍ଟିଂ ୱାର୍କସ୍**

ବ୍ରହ୍ମପୁର-୧



ଆଲୋକଚିତ୍ର ନେଇଛନ୍ତି—

**ଶ୍ରୀ ଉମେଶଚରଣ ପାଢ଼ୀ**



ଏଇ ଉପନ୍ୟାସର କଥାବସ୍ତୁ ସଂପୂର୍ଣ୍ଣ କାଳ୍ପନିକ ।
କୌଣସି ଜୀବିତ କିବା ମୃତବ୍ୟକ୍ତି ସହିତ
ଏଥିର କୌଣସି ଚରିତ୍ର ବା ଘଟଣାର ସାମଞ୍ଜସ୍ୟ
ରହିଲେ ସେଥିପାଇଁ ଲେଖକ ଦାୟୀ ନୁହନ୍ତି ।

ଏଇ କଥାକୃତୀର

କାଲ୍ପନିକ ନାୟିକା

ସନ୍ଧ୍ୟା ହାତରେ

## ଫିମେଲ ସର୍ଜିକେଲ୍ ଓ୍ୱାର୍ଡ଼

ଖୁବ୍ ଲମ୍ବା ହଲ୍ ଟିଏ, ବିଭିନ୍ନ ରୋଗରେ ରୋଗାକ୍ରାନ୍ତ ହୋଇ ତେରଶିଟି ରୋଗିଣୀ ପଡ଼ିଥାଆନ୍ତି ଖଟିଆ ଉପରେ । କେତେକଙ୍କର ଫିମେଲ୍ ଏଟେଣ୍ଡାଣ୍ଟ ବି ପାଖରେ ବସିଥାନ୍ତି ।

କେତେକ ରୋଗିଣୀ ବିବାହିତା, ଆଉ କେତେକ ଅବିବାହିତା । ଦରଦର୍ଶନ ସମୟ ହେଲେ ଜମି ଯାଆନ୍ତି ମେଲ୍ ଭିଜିଟର୍ସ (Male visitors) । ସେଇ ସମୟଟି ଓ୍ୱାର୍ଡ ଭିତରେ ପ୍ରତିଦିନ ନୂତନ ବାୟୁମଣ୍ଡଳ ସୃଷ୍ଟି କରିଯାଏ ।

ଜଣକର ଭିଜିଟର୍ସ ଆସିଲେ, ଅନ୍ୟମାନେ (ଯାହାର କେହି ଆସିନଥାନ୍ତି) ଖୁବ ବ୍ୟଥିତ ହୋଇ ଚାହିଁ ରହନ୍ତି ସେହି ଖଟିଆ ଆଡ଼େ । ଭିଜିଟର୍ସ ଶୂନ୍ୟ ଖଟିଆ ପାଖରେ ଘୁରିବୁଲେ ଦରଦତା । ଆଉ ଉକ୍ତ ଖଟିଆର ରୋଗିଣୀମାନେ ବ୍ୟାକୁଳ ଭାବେ ମନ ତଳେ ଖୋଜି ବୁଲନ୍ତି ନିଜର ଭିଜିଟର୍ସଙ୍କୁ । ଝରକା ଓ ଫାଟକ ଆଡ଼େ ଚାହିଁ ରହନ୍ତି ବ୍ୟାକୁଳ ନୟନରେ ।

ସତରେ ପୁରୁଷର ଆଶ୍ରାହିନା ଏ ନାରୀ ଜାତିଟା କି ନିଃସହାୟ !!

ଗୋଟିଏ ଜଣକୁ ନେଇ ୭୨ ନମ୍ବର ଖଟିଆ । ସେଥିରେ ପଡ଼ିଥାଏ ସନ୍ଧ୍ୟା । ଏକାକିନୀ, ଜୁଳୁ ଜୁଳୁ ଚାହିଁଥାଏ । କେତେ ବେଳେ ଉପରର ଦୃଷ୍ଟିନନ୍ଦିତ ବିଜୁଳି ପଙ୍ଖା ଆଡ଼େ, କେତେବେଳେ ଅନ୍ୟ ରୋଗିଣୀଙ୍କର ଖଟିଆ ଆଡେ, ଆଉ କେତେବେଳେ କର ଲେଉଟାଇ ଚାହେଁ ସାମନାର ବିଶାଳ ସିମେଣ୍ଟ-ଇଟା ଯୋଡ଼ାଇ ନିର୍ଜୀବ, ଶକ୍ତ କାନ୍ଥକୁ । ସେଇ କାନ୍ଥଟି କାହାର ନୁହଁ କବା କଏ ତାର ନୁହଁ । ସେ କେବଳ ତାର ନିଜର, ନିଜର ସ୍ୱତନ୍ତ୍ରତାରେ ସେ ଦଣ୍ଡାୟମାନ, ନିର୍ଜୀବ ଓ ନିଶ୍ଚଳ ।

( )

ସନ୍ଧ୍ୟା ଚାହେଁ ସେଇ କାନ୍ଥକୁ । ଦୃଷ୍ଟିକୁ କେନ୍ଦ୍ରୀଭୂତ କରେ କାନ୍ଥ ଗୋଟାଏ କ୍ଷତ ବା ଫିକା ପଡ଼ିଥିବା ମସୃଣ ପୃଷ୍ଠ ଉପରେ । ପୁଣି କ୍ଲାନ୍ତ ଆଖିକୁ ଫେରାଇ ଆଣି ଚାହେଁ ବିସ୍ତୃତ ଲମ୍ବା ହଲ୍ ଆଡ଼େ । କେଉଁଠି ଉତ୍କଟ ପୀଡ଼ାରେ ଜର୍ଜରିତ ହୋଇ କେଉଁ ରୋଗିଣୀ ଆର୍ତ୍ତନାଦ କରୁଥାଏ ତ, କେଉଁଠି ପୁନର୍ଜନ୍ମ ପାଇ ନୂଆ ଆଶାକୁ ପଣତକାନିରେ ଗଣ୍ଠି ହୋଇ କିଏ ଉତ୍ଫୁଲ୍ଲ ହେଉଥାଏ । ଅଥବା କେଉଁଠି ବା କିଏ ଥରି ଉଠୁଥାଏ ଡାକ୍ତରଙ୍କ ଛୁରୀ କଇଁଚି ଉପରେ । ସମସ୍ତଙ୍କ ସେଇ ଗୋଟିଏ ବ୍ୟାକୁଳତା—"କେମିତି ବା ଏ ଯମପୁରୀରୁ ବିଦାୟ ନିଅନ୍ତି !"

ହଠାତ୍ ଗୋଟିଏ କ୍ରନ୍ଦନର ରୋଳ ଉଠିଲା । କେତୋଟି ମାଈପି ଓ କେତୋଟି ମରଦ ଗୋଟିଏ ଖଟିଆ ପାଖରେ ଠିଆ ହୋଇ କାନ୍ଦୁଥାଆନ୍ତି ।

ଚକିଆ ଉପରକୁ ମୁଣ୍ଡ ଟେକି ନିରୀକ୍ଷଣ କଲା ସନ୍ଧ୍ୟା । ଯୁବକଟିଏ ରୋଗିଣୀର ଶରୀର ଉପରେ ପଡ଼ି କାନ୍ଦୁଥାଏ । ଦୁଃଖରେ ଫାଟି ପଡ଼ୁଥାଏ ତାର ଛାତି । ପ୍ରଫେସର୍ ଓ ନର୍ସ ପଶି ଆସିଲେ, ସେମାନଙ୍କ ମନ ଓ ପାଦର ବେଗ ବଢ଼ିଯାଇଥାଏ । ଷ୍ଟେଥୋ ଦେଇ ପରୀକ୍ଷା ଆରମ୍ଭ କଲେ ପ୍ରଫେସର । ଶେଷରେ ଷ୍ଟେଥୋଟି ଖସି ଆସିଲା କାନ ପାଖରୁ । ଗୋଟିଏ ଦୀର୍ଘ ନିଃଶ୍ୱାସ ଛାଡ଼ି ପ୍ରଫେସର ବୁଲେଇ ଗଲେ ଓ ନର୍ସ ଜଣକ ରୋଗିଣୀର ଚଦରଟିକୁ ଟାଣି ଦେଲେ ତାର ନିର୍ଜୀବ ଶରୀର ଉପରେ । ଗୋଟିଏ ଜୀବନର ଶେଷ ନିଷ୍ପତ୍ତି ହୋଇ ଯାଇଛି ।

ବ୍ୟାକୁଳ କ୍ରନ୍ଦନରେ ଓ୍ୱାର୍ଡଟି ଫାଟି ପଡ଼ିଲା । ସମସ୍ତଙ୍କ ଦୃଷ୍ଟି ସେଇ ଖଟିଆ ଆଡ଼େ । ସନ୍ଧ୍ୟା ଆଉ ରହିଁ ପାରିଲାନି । ଆଖିରୁ ଦୁଇ ଟୋପା ଲୁହ ଝରି ଆସିଲା । ସେ ଉଠି ଚାଲିଗଲା ବାରଣ୍ଡା ଆଡ଼େ । ପାରାପେଟ୍‌କୁ ଧରି ଚାହିଁଲା ବାହାରକୁ । ଆକାଶରେ ଜହ୍ନର ଛିଟା । ଓ୍ୱାର୍ଡ ଭିତରକୁ ଆଉ ସେ ପଶି ପାରିଲାନି । ନର୍ସ ଜଣକ ଆସି ତା'ର ପାଖରେ ପହଞ୍ଚିଲେ । କହିଲେ "ଆପଣ ଭିତରକୁ ଚାଲନ୍ତୁ । ଆପଣଙ୍କ ପକ୍ଷେ ଖଟିଆରୁ ଉଠିବା ଠିକ୍ ନୁହେଁ, ଭିତରକୁ ଯାଆନ୍ତୁ ।"

ଦୀର୍ଘନିଶ୍ୱାସଟିଏ ମାରି ସନ୍ଧ୍ୟା କହିଲା, "ଯାଉଛି ଦିଦି । ହେଲେ······ ସେ ରୋଗିଣୀ ଜଣକ କଣ······" ପାଟିରୁ ଆଉ କଥା ବାହାରି ପାରିଲାନି ।

—"ହଁ···ମରି ଯାଇଛି ।" ନିର୍ବିକାର ଚିତ୍ତରେ ଉତ୍ତର ଦେଲେ ନର୍ସ ଜଣକ ।

ଚମକି ପଡ଼ିଲା ସନ୍ଧ୍ୟା । 'ତେବେ ତାର ସଂସାର କଣ ହେବ ! ତିନୋଟି ସନ୍ତାନର ମା !!—ଏଣେ ପତ୍ନୀହୀନ ସ୍ୱାମୀ ଓ ମାତୃହୀନ ସନ୍ତାନ କେମିତି କାଳ କାଟିବେ ?' । ଏମିତି ଭାବ ଭାବ ମୁହଁ ଫେରାଇନିଲା ଓ୍ୱାର୍ଡ ଭିତର ଆଡ଼େ । ତାପରେ ଆଗେଇଲା ନର୍ସଙ୍କର ଆଦେଶ ମାନି ।

ନିଜ ଖଟିଆ ପାଖରେ ପହଞ୍ଚି ଭାବିଲା—'ଆଉ କେତେ ଦିନ ଏଇଁ ଖଟିଆରେ ଶୋଇ ରହିବାକୁ ପଡ଼ିବ କେଜାଣି?' ତାକୁ ଆଉ ନିଆରେ ହେଲା ନାହିଁ ।

ବାଧ୍ୟ ହୋଇ ଶୋଇଲା । ଦୀର୍ଘନିଶ୍ୱାସଟିଏ ଛାଡ଼ି ଚାହିଁଲା ସାମନା ଆଡ଼େ ।

ଗୋଟିଏ ଯୁବକ ସାମନା ଖଟିଆ ପାଖରେ ଆସି ପହଞ୍ଚିଲେ । ଯୁବତୀ ରୋଗିଣୀ ଜଣକ ମୁହଁରେ ହସ ଉଠିଲା । ମନରେ ଉଚ୍ଛ୍ୱସିତ ପ୍ରଫୁଲ୍ଲିତା, ଯୁବକ ଜଣକ ତାଙ୍କର ସ୍ୱାମୀ ।

ଖଟିଆ ଉପରେ ବସି ରୋଗିଣୀଙ୍କ ମଥାରେ ହାତ ଦେଇ ଯୁବକ ଜଣକ ଆରମ୍ଭ କଲେ ଆଳାପ । ଦୂର ଗଗନର ନାଲି ମେଘ ଦୁଇ ଖଣ୍ଡ ହସୁଥାଆନ୍ତି । ସନ୍ଧ୍ୟା ମୁହଁ ବୁଲାଇ ଆଣିଲା ପାଖ ଖଟିଆ ଆଡ଼େ ।

ପାଖ ଖଟିଆର ରୋଗିଣୀ ଜଣକ ଜଣେ ଯୁବତୀ, ଅବିବାହିତା । ବୟସ ସତର କିମ୍ବା ଅଠର ଭିତରେ । ଅନେକ ଦିନରୁ ରହିଲାଣି ।

ଝିଅଟି ଚାହିଁ ରହିଛି ବାହାରକୁ । ସତେ ଯେପରି କାହାକୁ ଅପେକ୍ଷା କରି ରହିଛି ଏକ ଲୟରେ ।

ସନ୍ଧ୍ୟା ପଚାରିଲା, "ସୁରଭି ! କଣ ଚାହିଁଛ ମ ?"

ଅପ୍ରସ୍ତୁତ ହୋଇ ସୁରଭି ହସିଦେଲା, ଆଉ ସନ୍ଧ୍ୟା ବି ।

—"ନା···ଦେଇ, ଏମିତି ବସି ଟିକଏ ଚାହୁଁଥିଲି," ଏତିକି କହି ଦେଇ ସୁରଭି ଉଠି ଚାଲିଗଲା ବାହାରକୁ । ଜଣେ ଯୁବକ ଆସି ଗୋଟିଏ କ୍ୟାରି ବଢ଼ାଇ ଦେଲେ । ଉଭୟଙ୍କ ମୁଖରେ ହସର ମାତ୍ରା ଟିକଏ ବଢ଼ି ଯାଇଥାଏ ।

"ଯାଃ···ଆପଣ ଷ୍ଟେଶନରୁ ହେଲା ଆସିଲେଣି ?", ଅଭିମାନ ଭରି ପ୍ରଶ୍ନ କଲା ସୁରଭି ।

—"ଟିକିଏ କାମ ଥିଲା", କହିଲେ ସୁଶ୍ରୀ ଯୁବକ ଜଣକେ ।

—"ହଁ...ସବୁବେଳେ ତ କାମ । ଖାଲି କାମ ବାହାନା ଦେଖାଇ..." କଥାକୁ ଅଧାରଖି ସୁରଭି ପଛକୁ ଫେରି ଚାହିଁଲା । ସନ୍ଧ୍ୟା ବି ଚାହିଁଥାଏ ସେମିତି, ଲକ୍ଷ୍ୟ କରୁଥାଏ ସେ ଦୁହିଁଙ୍କ କଥାବାର୍ତ୍ତାକୁ ।

ସୁରଭି ଘୁଞ୍ଚାଇଲା ସନ୍ଧ୍ୟାର ଦୃଷ୍ଟି ଉପାହାଡ଼କୁ, ସନ୍ଧ୍ୟା ବି ଦୃଷ୍ଟି ଫେରାଇ ଆଣି ଚାହିଁଲା ମସୃଣ ଛାତ ଉପରକୁ ।

ଯୁବକ ଜଣକ ସୁରଭିର ପ୍ରେମିକ, ପ୍ରେମିକର ଉପସ୍ଥିତିରେ ତା ହୃଦୟ ସାଗରରେ ସୃଷ୍ଟି ହୁଏ ଆନନ୍ଦର ଅଫୁରନ୍ତ ଜୁଆର । ସେ ମୁହୂର୍ତ୍ତରେ ସେ ଭୁଲିଯାଏ ନିଜକୁ ଓ ତାର ପରିସ୍ଥିତି ଓ ପରିବେଶକୁ ।

ସନ୍ଧ୍ୟା ବସି ବସି ଭାବୁଛି । ବିଚ୍ଛେଦ ଓ ମିଳନ ଦୁଇଟିଯାକ ସତ୍ୟ, ମରଣଶୀଳ ସଂସାରରେ ଏକାନ୍ତ ଚିରନ୍ତନ । ତାର ପରିବର୍ତ୍ତନ ମଣିଷ କରି ନପାରେ । ପ୍ରକୃତିର କମନୀୟ ଶ୍ରୀ ଆଡ଼କୁ ଦୃଷ୍ଟି ନିକ୍ଷେପ କଲା ସନ୍ଧ୍ୟା । ଅସ୍ତାୟମାନ ସୂର୍ଯ୍ୟର ଶେଷ ରଶ୍ମି ମ୍ଳାନ ହୋଇ ଆସୁଛି । ସେ ବିଦାୟ ନେଉଛନ୍ତି । ତା ପରେ ଆସିବ ଅନ୍ଧାର— ପ୍ରକୃତି ବକ୍ଷରେ ବିଚ୍ଛେଦର କାରୁଣ୍ୟ ।

ସୁରଭି ଆନନ୍ଦ ବିଭୋର—ପ୍ରକୃତି ବକ୍ଷରେ କରୁଣତାର ଆଭାସ— ବିଚ୍ଛେଦ ଓ ମିଳନର ଚିରନ୍ତନ ଲୀଳା—ସନ୍ଧ୍ୟାର ଭାବନାରେ ଅନ୍ତ ନାହିଁ । ଏଇ କେଇଟା ମୁହୂର୍ତ୍ତରେ କେତେ କଣ ନ ଦେଖିଲା ସେ । ଏକଆଡ଼େ ଦୁଇଟା ଜୀବନର ଚିର ବିଚ୍ଛେଦର କରୁଣ ମର୍ମନ୍ତୁଦ ହା-ହାକାରମୟ ପରିବେଶ । ସମ୍ମୁଖରେ ଗୋଟିଏ ଦମ୍ପତିର ସାଂସାରିକ ଆଳାପ । ବାହାରେ ଗୋଟିଏ ପ୍ରେମିକ ଓ ପ୍ରେମିକାର ଅସରନ୍ତି ମାନ ଅଭିମାନ,ଅନୁରୋଧ ଅଭିଯୋଗ,ଦାନ ପ୍ରତିଦାନର ଢେଉ । ତିନୋଟି ଯାକ ଘଟଣା ଗୋଟିଏ ପରିପୂର୍ଣ୍ଣ ଜୀବନର ପରିପ୍ରକାଶ ।

ଏତିକିବେଳେ ନର୍ସ ଆସି ଦୁଇଟି ବଟିକା ଦେଇଗଲେ ସନ୍ଧ୍ୟାକୁ । ସେମାନେ ଯେପରି ମେସିନ୍ ଭଳି ସ୍ୱୟଂଚାଳିତ, ବାହାରେ ଓ ଭିତରେ ଯାହା ହେଉନା କାହିଁକି ପୋଷାକ ପିନ୍ଧି ୱାର୍ଡ ଭିତରେ ପାଦମାନେ ପଶିବା ମାତ୍ରେ ଆରମ୍ଭ ହୋଇଯାଏ ତାଙ୍କର ମେସିନ୍ ସଦୃଶ୍ୟ କର୍ମ ଓ ସେବା । ବାହାର ଦୁନିଆ ଓ ଭିତର ଦରଦତା ପ୍ରତି ତାଙ୍କର ଭ୍ରୂକ୍ଷେପ ନଥାଏ । କେତେକ, ବୟସର ପୋଷାମାନି ଯାଇଥାଆନ୍ତି ଏବଂ ଆଉ କେତେକ ବା

ଯୌବନର ପ୍ରଖରତାରେ ଉଦ୍‌ବଗ୍ନ ଓ ବିଶୃଙ୍ଖଳ ହୋଇ ପଡ଼ିଥାଆନ୍ତି । ସେ ଯାହା ହେଉନା କାହିଁକି ଯୌବନର ଅଭିଶାପରେ ସେମାନେ ଅଭିଶପ୍ତ । ଏଇଟା ଯେମିତି ତାଙ୍କର ରୁକ୍ଷତାରୁ ଓ ବୁଲୁ ଚଳନ ମଳ ଆଶାରୁ ସ୍ପଷ୍ଟ ଜଣାପଡ଼େ ।

କିଛିଟା ମୁହୂର୍ତ୍ତ ପରେ ଡ଼ାକ୍ତର ପଶି ଆସିଲେ ଭିତରକୁ । ରୋମାଣ୍ଟି-କର ଚେହେରା । ନର୍ସ ଆଡ଼େ ଟିକିଏ ଚାହିଁଦେଇ ଚାଲିଗଲେ ନିଭୃତ ଚେମ୍ବର ଆଡ଼େ ।

ତାଙ୍କର ଗୁରୁଗମ୍ଭୀର ଡାକରେ ନର୍ସ ଜଣକ 'ସାର୍' କହି ପରଦା ଆଡ଼େଇ ପଶିଲେ ଚେମ୍ବର ଭିତରକୁ । ପରଦାର ତଳ ଫାଙ୍କ ଦେଇ ନର୍ସଙ୍କର ଧଳା ପୋଷାକର ଶେଷାଂଶ ଓ ଧଳା ମୋଜା ଉପରେ କଳା ଜୋତାର ସ୍ତମ୍ଭ ସଦୃଶ ଗୋଡ଼ ଦୁଇଟି ଦିଶୁଥାଏ । କିଛିକ୍ଷଣ ପରେ ଫେରି ଆସିଲେ ନର୍ସ । ହସର ଶେଷ ଭାଗଟି ଆଉ ସରି ନଥାଏ ।

—"ଅପା··· ମୁଁ ଚାଲି ଯାଉଛି । ମୋ ଡ଼ିଉଟି (Duty) ସରିଲା । ପୁଣି କାଲି ସକାଳ ସାଢ଼େ ଦଶରେ ଦେଖା"—କହି ନର୍ସ ଜଣକ ଚାଲିଗଲେ । ସନ୍ଧ୍ୟା "ହଉ" କହି ଚାହିଁ ରହିଲା ତାଙ୍କର ଯିବା ପଥକୁ ।

ରାତିର ଗଭୀରତା ବଢ଼ି ଚାଲିଛି । ଏଭିତରେ ମଶାଘିଟା ଟଣା ହୋଇ ସାରିଛି । ସବୁ ଆଟୋମେଟିକ୍ । ନିର୍ଦ୍ଦେଶନା ଦରକାର ପଡେନା--ମଣିଷର ଜନ୍ମ ଓ ମୃତ୍ୟୁ ମଧ୍ୟ ଆଟୋମେଟିକ୍ । ଗତାନୁଗତିକ ।

ସନ୍ଧ୍ୟା ମନଭିତରେ ଭାବନାର ଝଡ଼ । ବାହାରକୁ ଚାହିଁ ଦେଖିଲା, ସ୍ତ୍ରୀର ସ୍ପନ୍ଦନହୀନ ଶରୀରକୁ କାର୍‌ରେ ରଖାଗଲା ବେଳେ, ଅଶ୍ରୁ ଜର୍ଜରିତ ହାହାକାରମୟ ହୃଦୟରେ ବ୍ୟାକୁଳ କ୍ରନ୍ଦନ କରୁଛନ୍ତି ସ୍ୱାମୀ ।

ସନ୍ଧ୍ୟା ଆଖି ବୁଜି ଶୋଇବାକୁ ଚେଷ୍ଟା କଲା । ନିଦ ହେଲାନି । ହସି ହସି ପଶି ଆସିଲେ ମାଧୁରୀ ଦିଦି—ତାର ଖୁବ୍ ପରିଚିତା । ଅଞ୍ଚଳର ବନ୍ଧୁଭିତ୍ତିକ ଡ଼ାକ୍ତରଖାନାରେ ଆଉର ବଢ଼ି ଚାଲିଛି ।

--"ସନ୍ଧ୍ୟା ଅପା ନମସ୍କାର" ।

—"ନମସ୍କାର", ହସି ହସି ପ୍ରତି ନମସ୍କାର ଜଣାଇଲା ସନ୍ଧ୍ୟା ।

—"ଆଜି ସବୁ କଣ ? ଭଲ ଲାଗୁଛି ? ଭାଇ ଆସିଥିଲେ ?"

—"ନା" । ସଂକ୍ଷିପ୍ତରେ ଉତ୍ତର ଦେଲା ସନ୍ଧ୍ୟା ।

—"କାହିଁ···ଅନେକ ଦିନ ହେଲାଣି ଭାଇ ଆସି ନାହାନ୍ତି" ଜାଣିବାକୁ ଚାହିଁଲା ମାୟା ।

—"ନା··· । ଭାଉଜଙ୍କ ଦେହ ଭଲ ନାହିଁ । ଚାକରଟା ଆସି କଣ ଗୁଡ଼ାଏ ଦେଇ ଯାଇଛି ସକାଳେ ।"

—"ବାଃ··· । ତେବେ ମୋ ପାଇଁ ନିଶ୍ଚୟ ଥିବଣି !"

—"ନିଶ୍ଚୟ ।"

—"ହଉ ଆଗେ ମୋ କାମ ସାରିଦିଏଁ"—କହି ମାୟା ମୁହଁ ଫେରାଇ ନେଲା । ମାୟା ଚାଲି ଯିବାକୁ ଉଦ୍ୟତ ହେଲାବେଳେ ସନ୍ଧ୍ୟା କୌତୁକରେ ପଚାରିଲା, "ଦିଦି ! ଆଜିତ କ'ଣ ଭାରି ବାସୁଛ !"

—"ଆରେ ନା···ମ । ମୋର ରୁମ୍‌ମେଟ୍ ସବିତା ଆଜି ନୂଆ ସେଣ୍ଟଟିଏ ଆଣିଥିଲା । ଟିକିଏ ଟେଷ୍ଟ କରି ନେଇଛି ମୁଁ ।"

—"ତା ସାଥେ ମନ ବି ତ ବାସୁଛି । କଣ ଆଜି କିଛି (Achievement) ହୋଇଛି ବୋଧହୁଏ"-ସ୍ମିତ ହସି କହିଲା ସନ୍ଧ୍ୟା ।

କଥାର ଖିଅ ବଦଳାଇ ମାୟା କହିଲା, "ଅପା···ତୁମକୁ ପରା କହିଥିଲି ଦିଦି ବୋଲି ଡାକିବନି ।"

—"ଆରେ କଣ କରିବି । ଏ ପୋଷାକର ପରମ୍ପରା 'ଦିଦି' ଡାକର ସ୍ମାରକ ପରା !"

—"ତୁମେ ଖାଲି ଯୁକ୍ତି କରି ଜାଣ ।" ମାୟାର କଣ୍ଠରେ ଅଭିଯୋଗ ।

—"ହଉ··· । 'ମାୟା' ବୋଲି ଏଣିକି ଡାକିବି" ।

—"ଆଚ୍ଛା ଆସୁଛି । ଟିକିଏ ଡିଉଟି କମି ଆସିଲେ ଗପ କରିବାକୁ ଆସିବି । ଡାକ୍ତର ଭିତରେ ଅଛନ୍ତି । ମୁଁ ଯାଏ"—କହି ଯିବାକୁ ଉଦ୍ୟତ ହେଲା ମାୟା ।

—"ନା ମ । ମୋ ସାଥିରେ ଗପିଲେ କଣ ମିଳିବ ?"

—"ହୁଃ ଅପା" ! କହି ମୁହଁ ବୁଲାଇ ନେଲା ମାୟା । ତେବେ ସେତକ ଶୁଣିବାରେ ତାର ଦୁଃଖ କରିବା ସବ ନଥିଲା ।

ସନ୍ଧ୍ୟା ଶୁଣି ରହିଥାଏ । ମାୟା ଚାଲିଗଲା । ଅଧା ପରଦା ଟେକି ହସ ହସ ବଦନରେ ଡାକ୍ତରଙ୍କୁ ନମସ୍କାରଟିଏ କଲା । ତାପରେ ପରଦାଟି ଚେମ୍ବର୍‌ର ଭିତର ଓ ବାହାରକୁ ଅଲଗା କରି ଦେଲା ।

ସନ୍ଧ୍ୟା ପୁଣି ମୁହଁ ବୁଲାଇଲା କାନ୍ଥ ଆଡ଼େ । ଭାବନାର ଖିଅକୁ ଯେଉଁଠି ଛାଡ଼ିଥିଲା, ସେଇଠୁ ପୁଣି ଆରମ୍ଭ କଲା । ଅନ୍ୟମନସ୍କତା ଭିତରେ ନଖରେ କେତୋଟି ଗାର ଆଙ୍କି ଦେଲା କାନ୍ଥର ମସୃଣ ପୃଷ୍ଠରେ । ଝଙ୍ଗ ଚୂନ ଓ କଚ୍ଚା ବାଲି ତଳ ଚଟାଣରେ ପଡ଼ିଗଲା । ଭାବନାକୁ ପୁଣି ଘୁରାଇ ନେଲା ମାୟା ଆଡ଼େ ।

ଏଣୁ ମାୟା ବହୁତ ତଳ କ୍ଲାସରେ ପଢୁଥିଲା । ସନ୍ଧ୍ୟାର ମାମୁଁ ଘର ଓ ମାୟାର ଘର ଠିକ୍ ଗୋଟିଏ ସାହିରେ । କଲେଜରେ ପଢିବାବେଳେ ମାୟା ସହ ଦେଖାହୁଏ ମାମୁଁଙ୍କ ଘରେ । ମାୟା ସ୍କୁଲରେ ପଢୁଥାଏ । ସମୟେ ସମୟେ ତାରି ପାଖକୁ ଅଙ୍କ ପଢ଼ିବାକୁ ଆସେ । ଭାରି ଭଲ ଝିଅଟିଏ । ନିଖୁଣ ଚରିତ୍ର ।

ପୁଣି ଭାବିଲା-ନା କାହାରି ଚରିତ୍ର କଳ୍ପନା କରିବା ଭୁଲ୍ । ପ୍ରତ୍ୟେକଙ୍କର ଚରିତ୍ର ତାଙ୍କର ମନ ତଳେହିଁ ଥାଏ । ତାକୁ ବା ଜାଣିବ କିଏ ? ଦୁନିଆକୁ ଫାଙ୍କି ଜଣେ ଦୁଶ୍ଚରିତ୍ରା ହେବା କଣ ଅସମ୍ଭବକି ? ଅବିବାହିତା ଝିଅର ଚରିତ୍ର ସବୁବେଳେ ସନ୍ଦେହପୂର୍ଣ୍ଣ । ହେଲେ ମାୟା କାହିଁକି ମେଟ୍ରିକ୍ ପାଶକରି ନର୍ସିଂ ପଢ଼ିଲା ? ମେଟ୍ରିକ ପରେ ତ ଅନ୍ୟ ଯେ କୌଣସି ଟ୍ରେନିଂ କିମ୍ବା କଲେଜରେ ପଢ଼ି ପାରିଥାନ୍ତା । ଗୁଣରେ, ରୂପରେ, ପାଠରେ କାହିଁରେ ତ କମ ନୁହେଁ । ତେବେ ଏ ଅଭିଶପ୍ତା ଜୀବନକୁ କାହିଁକି ଆବାହନ କଲା ?

ସତ କହିବାକୁ ଗଲେ ହାତରେ କାଚ ଶୂନ୍ୟ ନର୍ସ ଜୀବନଟା କି ଅଭିଶପ୍ତ ! ବାହାରର ଶତ ସହସ୍ର ଲୋଲୁପ ଦୃଷ୍ଟି, ହିଂସା, କପଟ, ମାୟା ଓ ପ୍ରଲୋଭନଠାରୁ ନିଜକୁ ଦୂରେଇ ରଖି ଏବଂ ନିଜ ଭିତରେ ଅସୀମ ବାସନା, କାମନା, ଉଦ୍ଦୀପନା ଧରି ଅବିବାହିତା-ବିଧବା ସାଜିବା ନାରୀ ଜୀବନରେ କି କଠିନ ପରୀକ୍ଷା ! ଅଗ୍ନିର ପ୍ରଖର ଉତ୍ତାପ ନିକଟରେ କଅଁଳ ନିର୍ବିକାର

ଉପସ୍ଥିତି ଅସମ୍ଭବ । ତେଣୁ ଜଗତର ଜଡ଼ତା ଓ ତା'ର କଠିନତା ଅଗ୍ନି ନିକଟରେ ତୁଚ୍ଛ; କ୍ଷଣିକ । ଜଗତର ଗୁଣ ଓ ଧର୍ମ ହେଲା ନିଆଁ ପାଖେ ତରଳିବା; ଏହ୍ୱ ତାର ଶାଶ୍ୱତ ସନାତନ ଧର୍ମ ଓ ମାତ୍ରର ବ୍ୟତିକ୍ରମ କେବେ ଘଟିପାରେନା ।

ପୁଣି ଭାବନାକୁ ଫେରାଇ ଆଣିଲା ନିଜଆଡେ । ଭାବିଲା, ସେ କଣ ? ତାର ବୁକୁତଳେ କେତେ ଦରଦ, କେତେ ବ୍ୟଥା, କେତେ କୋହ, କେତେ ଲଜ୍ୟା, କେତେ ଆତ୍ମ ଘୃଣା ଲୁଚି ନ ରହିଛି !

ନିଜ କଥା ନିଜ ପାଖରେ ରଖି ଦୀର୍ଘ ନିଶ୍ୱାସଟିଏ ମାରିଲା । ଏତିକି ବେଳେ ୬୦ ନମ୍ବର ବେଡ଼ର ରୋଗିଣୀ ଜଣକ ସନ୍ଧ୍ୟା ପାଖରେ ପହଞ୍ଚି ନୀରବରେ ଠିଆ ହେଲେ ।

"କଣ ଭଉଣୀ, କେବେ ଯାଉଛ ?" ପଚାରିଲା ସନ୍ଧ୍ୟା । ଉତ୍ତର ନପାଇ ସନ୍ଧ୍ୟା କହି ଚାଲିଲା,"କଣ ହୋଇଛି ମ ? କଥା କହୁନ ? ଆସ···ବସ ।"

ସେମିତି ଠିଆ ହୋଇ ଥାଆନ୍ତି ସ୍ତ୍ରୀ ଲୋକଟି ।

"ସବୁବେଳେ ଏମିତି ଠିଆ ହୋଇ କ'ଣ କଥାବାର୍ତ୍ତା କରମ । ବସ । ବସ ମ···" କହି ସନ୍ଧ୍ୟା ଟାଣି ଆଣି ବସାଇ ଦେଲା ।

ରୋଗିଣୀ ଜଣକ ନୀରବରେ ବସି ଥାଆନ୍ତି । ନୀରବତା ଭାଙ୍ଗି ପୁଣି ପ୍ରଶ୍ନ କଲା ସନ୍ଧ୍ୟା, "ପୁଅ ତ ଭଲ ହୋଇଗଲାଣି । କେବେ ଡିସ୍ଚାର୍ଜ ହେଉଛ ?"

ବେଳକୁ ବେଳ ସ୍ତ୍ରୀ ଲୋକଟି ଝାଉଁଳି ପଡୁଥାନ୍ତି, ପାଟିରୁ କଥା ବାହାରୁ ନଥାଏ । ସନ୍ଧ୍ୟା ବ୍ୟତିବ୍ୟସ୍ତ ହୋଇ ଖୁବ୍ ନରମ ଗଳାରେ କହିଲା "ତୁମେ କାହିଁକି ମଉଳି ପଡ଼ିଛ ଆଜି ? 'ହସ ହସ ମୁହଁ ଶୁଖି ଯାଇଛି··· । ଫାଜିଲ ପାଟିରୁ କଥା ବାହାରୁନି, ହେଲା କଣ ? ମୋ ରାଣ 'କୁହ··· ଏ ହାତରେ ଏ କଣ !· ଲଫାପା ? ଓ···ଚିଠି ଦେବ ପରା । କହୁନା, ଏତିକି ପାଇଁ ନିରବରେ ବସିଛ ।"

ଲଫାପାଟା ଛଡ଼ାଇ ନେଇ, ନିଜକୁ ଅଲଗା କରି ଆଣିଲା ସନ୍ଧ୍ୟା । କଲମ ବାହାର କଲା ଠିକଣା ଲେଖିବାକୁ । କିନ୍ତୁ ନିସ୍ତଳ ଶରୀରର ହାତଟା ଗ୍ରେଟ୍ରଭଳି ଆସି ଅଟକାଇ ଦେଲା ତା କଲମଟିକୁ ।

"କାହାଁକୁ ? ଚିଠି ଦେଉଛନ୍ତି—" ପଚାରିଲା ସନ୍ଧ୍ୟା । ଏତେ ବେଳେ ନୀରବତାକୁ ଦୂରେଇ ଦେଇ ସ୍ତ୍ରୀ ଲୋକଟି ଗମ୍ଭୀରତା ଭରି କହିଲେ, "ଦେଖ ଯେ··· । କାହା ପାଖକୁ ଜାଣ ?"

—"କାହା ପାଖକୁ ?" ଜାଣିବାକୁ ଚାହିଁଲା ସନ୍ଧ୍ୟା ।

—"ତାଙ୍କ ପାଖକୁ"

—"କାହା ପାଖକୁ ?" ପୁଣି ପ୍ରଶ୍ନ କଲା ସନ୍ଧ୍ୟା ।

—"ତାଙ୍କ ପାଖକୁ ମ," କହି ଲାଜରେ ମୁହଁଟିକୁ ସେ ଲୁଚାଇ ନେଲେ, ସନ୍ଧ୍ୟା ନବୁଝିଲା ପରି ପୁଣି ପ୍ରଶ୍ନକଲା "ଭାଇ ପାଖକୁ ତ ?"

—"ନାଇଁ ମ"

—"ଆଉ···?"

—"ତାଙ୍କ ପାଖକୁ-କହିଲି ପରା"

—"ସିଧା କହୁନା''

—"ମୁଁ ତ ସିଧା କହୁଛି"

—"ଓ···ସ୍ୱାମୀ ପାଖକୁ

—"ହୁଁ", କହି ମୁଣ୍ଡ ଟୁଙ୍ଗାରି ନୀରବ ରହିଲେ ସ୍ତ୍ରୀ ଲୋକଟି ।

—"ଠିକଣା କହୁନା ?" ପ୍ରଶ୍ନ କଲା ସନ୍ଧ୍ୟା ।

—"ସାକ୍ଷୀଗୋପାଳ ।"

—"କଣ··· ଖାଲି ସାକ୍ଷୀଗୋପାଳ ? ଆଉ ସବୁ କହୁନା ?"

—"ସବୁତ ସେଇଠି । ସେତକ ଲେଖି ଦେଲେ ଚିଠି ଚାଲିଯାଏ ।

—"ନା' କଣ ? ସେ କଣ କରନ୍ତି·····" ପୁଣି ପ୍ରଶ୍ନ କଲା ସନ୍ଧ୍ୟା । ଟିକଏ ହସି ସ୍ତ୍ରୀ ଲୋକଟି କହିଲେ, "ନାଁଟି କେମିତି କହିବି ମ ? ନାଁ କଣ କହନ୍ତି ? ମାଇପି ଝିଅ ହୋଇ ଏତକ ବି ଜାଣିନ ?"

—"ମୁଁ କଣ ବାହା ହୋଇଛି ?"

—"କଣ ବାହା ହବନି ?"

—"ସେଥିରୁ କଣ ତୁମେ ପାଇବ ?"

"ନାଇମ ତୁମେ ବାହା ହେଲେ କଣ ମୁଁ କିଛି ପାଆନ୍ତି କି ? ପାଇବ ତୁମେ ନା……।"

ସନ୍ଧ୍ୟାର ବୟସ ଖୁବ୍ ବଢ଼ିଯାଇଥିଲେ ମଧ୍ୟ ନାରୀ-ସୁଲଭ ଲଜ୍ୟା ତାକୁ ଖାଇଗଲା । ପୁଣି ସ୍ତ୍ରୀ ଲୋକଟି ଆରମ୍ଭ କଲେ, "ଆଚ୍ଛା…କଣ ବାହା ଗପ ଶୁଣି ନ ?"

—"ଶୁଣିଛି ।"

—"ଶୁଣିଛତ, ଏତକ ଜାଣିନା ?"

—"ଗପ ଶୁଣିଛିନା… । ଆଉ ସବୁ କେମିତି ଜାଣିବ ?"

—"ଲେଖ ମ…… । ଯେତେକ ଅଭିଆଡ଼ ସବୁ ଚମଭଳି ଏମିତି ହୁଅନ୍ତି ।"

—"ନିଁ ଟା କୁହ ।" ପଚାରିଲା ସନ୍ଧ୍ୟା ।

—"ଆଗ ବାରଟା ପଗ ।"

—"ମାନେ ?"

—"ମାନେ ତ ସେଇଆ ।"

"ହଉ କୁହ… । ଆଗବାର ମାନେ କଣ ଗୁରୁବାର ? ଶୁକ୍ରବାର ? ଶନିବାର ? ସବୁତ ନାଇଁ-ଆଉ କଣ ଛେନାଟା ?"

—"କାହିଁକି ଆଜି କହିପାରୁନା ।"

—"ରବିବାର ? ସୋମବାର ?"

—"ହଁ ହଁ ସେଇଆ ।"

—"ସତେ ? ସୋମବାର କଣମ ? ଏମିତି କଣ ନାଁ ଥାଏ ?

—"ନାଇମ । ଆଗ ପଦରେ ପଗ ନାଥ ଲାଗିବ ?"

—"ଓ—ସୋମନାଥ ?"

ଯଜ ପ୍ରେରକା ଏତିକରେ ସ୍ତବ୍ଧ ଓ ନୀରବ ହୋଇଗଲେ । ମନ ତଳେ କେତେ କଣ ଖୋଜିବାରେ ବ୍ୟସ୍ତ ହୋଇ ପଡ଼ିଲେ ।

—"ଆଚ୍ଛା ସୋମନାଥ···କିଏ ?"

—"ମହାନ୍ତି ।"

ସନ୍ଧ୍ୟା ଠିକଣା ଲେଖିବା ଆରମ୍ଭ କଲା । ଲେଖିସାରି ମୁହଁ ଚାହିଁଲା ତାଙ୍କରି ଆଡ଼େ । ଆଉ ବା କଣ ଲେଖିବ । କଣକ ସ୍ୱାମୀଙ୍କ ପାଖକୁ ସେ କେମିତି ବିଷୟବସ୍ତୁ ଲେଖିବ ? ଯେତେ ହେଲେ ଅବିବାହିତା ଝିଅ । ବିବାହିତା ସ୍ତ୍ରୀର ଦରଦଟା ନେଇ ସେ କଣ ଲେଖି ପାରିବ ? ନା, ପାରିବନି । ଗୁପ୍ତ ପ୍ରେମର ପ୍ରେମିକ ପାଖକୁ ବା ସେ ଲେଖିବାକୁ ଚେଷ୍ଟା କରିବ—ନା···ତା'ବି ପାରିବନି । ଅଭ୍ୟାସ ନାହିଁ । କାହିଁ କେତେ ବର୍ଷ ତଳେ ସେ ଲେଖୁଥିଲା । ଅନେକ ଦିନ ତଳେ··· ।

ଭାବନାର ଘୂର୍ଣ୍ଣିବାତରୁ ନିଜକୁ ଫେରାଇ ଆଣି, ତଳକୁ ମୁହଁ ପୋତି ଦେଲା ସେ । ଖସି ଯାଇଥିବା ଲୁଗାକାନିକୁ ଡାହାଣ ଗୋଡ଼ ଉପରେ ଘୋଡ଼ାଇ ନେଲା । ନିଶ୍ୱାସଟିଏ ମାରି ଭାବିଲା—ନା ପାରିବନି ।

—"ହଉ । ଲଫାପାଟି ଦିଅ । ଆଉ କାହା ପାଖରେ ଲେଖାଇ ନେବ ।" ସଫା ସଫା କହିଦେଲା ସନ୍ଧ୍ୟା ।

—"ନା ମ । ତୁମେ ଲେଖିଦିଅ । ଆଉ ବା କାହାକୁ ଏସବୁ କଥା ଗୁଡ଼ାକ କହିବି ଲେଖି ଦେବା ପାଇଁ ?"

—"ମୁଁ ପାରିବନି ଭଉଣୀ । ତୁମ ସ୍ୱାମୀ ପାଖକୁ ମୁଁ କେମିତି ଲେଖିବ ? ଏଇଟା କଣ···"

—"ସେଥିରେ କଣ ଅଛି ମ ! ମୁଁ କହିବି, ଆଉ ତୁମେ ଲେଖିଦେବ ।"

—"ଆଚ୍ଛା, ଆଗରୁ କଣ କେବେ ଏମିତି ଲେଖେଇଥିଲ ?"

—"ନା" ।

—"ଅନ୍ୟ ଜଣଙ୍କ ହାତରେ ତୁମ ସ୍ୱାମୀଙ୍କ ପାଖକୁ କେମିତି ଚିଠି ଲେଖିବ ମ ?"

—"ଏମିତିତ ପୁଣି ବିଦେଶୀ ସ୍ୱାମୀ ପାଖକୁ ସ୍ତ୍ରୀମାନେ ଚିଠି ଦିଅନ୍ତି ।"

ସନ୍ଧ୍ୟା ନିରୁତ୍ତର । ବିବାହିତା ସ୍ତ୍ରୀ ପାଖରେ ଅବିବାହିତା ଝିଅ କ'ଣ ଯୁକ୍ତିରେ କେବେ ପାରିବ ? ବୁଦ୍ଧି ନଥିଲେ ବି ବାହା ହେବାପରେ ସମସ୍ତେ ବୁଦ୍ଧିଆ ହୋଇଯାନ୍ତି । ପଥର ବି ତରଳ ହୁଏ । ଶକ୍ତ ବି ନରମ ହୁଏ । କିଛି ସମୟ ଏମିତି ଭାବି ସନ୍ଧ୍ୟା ଆରମ୍ଭ କଲା ଚିଠି ଲେଖିବା ।

ନିଜ ଲେଟର୍‌ପେଡ୍‌ରୁ ଖଣ୍ଡିଏ କାଗଜ ଚିରି ଆଣିଲା । କଲମ ଖୋଲିକରି ପଚାରିଲା, "କୁହ··· । କଣ ଲେଖିବି ?"

ମୁହଁ ଫେରେଇ ନେଲେ ସ୍ତ୍ରୀ ଜଣକ । ଦରଘୋଡ଼ା ଓଢ଼ଣାଟି ପୁଣି ଘୋଡାଇ ନେଇ କିଛି ନ କହି ନୀରବ ରହିଲେ । ସୁରଭି ଏ ସବୁ ଲକ୍ଷ୍ୟ କରୁଥିଲା । ଉଠି ଆସି ସନ୍ଧ୍ୟା ପାଖରେ ବସି ପଡ଼ିଲା ।

—"ଦେଈ ! କଣ ଲେଖୁଛ ମ ?" ପଚାରିଲା ସୁରଭି ।

—"ବାଃ, ଏଇତ ! ସୁରଭି ପାରିବ । ସେ ଅଭ୍ୟସ୍ତ ନା", କହିଲା ସନ୍ଧ୍ୟା ।

—"ସେ ଗୋଟାଏ କଣ ଲେଖିବ ମ ? କାଲିକା ଝିଅ," କହିଲେ ସ୍ତ୍ରୀ ଜଣକ । ଏଇତକ କହିବା ଭିତରେ, ଅବିବାହିତା ଝିଅର ଅନଭିଜ୍ଞତାକୁ ସ୍ପଷ୍ଟ ପ୍ରକାଶ କରିଦେଲେ ।

ସନ୍ଧ୍ୟା କଥା ଉପରେ ଝାମ୍ପ ଦେଇ କହିଲା, "ତୁମେ ଜାଣିନା ଭଉଣୀ--ଆଜି କାଲିକା ଝିଅ ବୋଲିତ ଭଲ ଲେଖି ପାରିବ କହୁଛି । ଆଜି କାଲିକା ଝିଅ ପ୍ରେମ ପତ୍ର ଲେଖିବାରେ ଖୁବ ଅଭ୍ୟସ୍ତ—ହେଇଟା ଯେମିତି ତାଙ୍କର ଗୋଟାଏ ଯୋଗ୍ୟତା ।"

ସୁରଭି ସନ୍ଧ୍ୟାକୁ ଠେଲି ଦେଇ କହିଲା, "କଣ ମ ଦେଈ ଏମିତି ଗୁଡ଼ାଏ କହୁଛ ? ଆମେ କେବଳ ଲେଖୁଛୁ । ଆଉ ତୁମେ ଲେଖୁ ନଥିଲ ?"

— "ଲେଖୁଥିଲେ ବି ସୀମା ଅତିକ୍ରମ କରି ଆଧୁନିକତାର ନଗ୍ନ ରୂପରେଖ ନେଇ ନିଶ୍ଚୟ ନୁହେଁ ।"

ସୁରଭି ଝାଉଁଳି ଗଲା । ସନ୍ଧ୍ୟା ଓ ସେ ସ୍ତ୍ରୀ ଲୋକଟି ହସି ଉଠିଲେ । ସୁରଭି କହି କହି ଚାଲିଗଲା, "ସବୁବେଳେ ଦେଈ, ଏମିତିଗୁଡ଼ାଏ କଣ କହି ଯାଉଛ ମ !"

ସନ୍ଧ୍ୟା ସୁରଭିକୁ ଟାଣିଆଣି ଖଟ ଉପରେ ବସାଇ ଦେଇ କହିଲା, "ତୁମେ ଲେଖି ଦଅନା ସୁରଭି ।"

"ନା ଦେଈ, ମୁଁ ପାରିବିନି । ଦେଖୁନ ବାଁ ହାତର ବ୍ୟାଣ୍ଡେଜ୍ ଖୋଲା ହୋଇନି । ଗୋଟିଏ ହାତରେ ବ୍ୟାଲେନ୍‌ସ କରି ଲେଖି ପାରିବ ?"

ସନ୍ଧ୍ୟା ପୁଣି ଥରେ ହାସ୍ୟ ରସ ସୃଷ୍ଟି କରି କହିଲା, "ହଁ, ବୋଧହୁଏ ସିନେମାରେ ଖାଦ୍ ଡାହାଣ ପଟେ ବସୁଥିଲ । ତେଣୁ ବାଁ ହାତ ଜଖମ ହୋଇଗଲା ।"

—"ଧେତ୍", କହି ଚାଲିଗଲା ସୁରଭି । ଖୁବ ଲାଜସ ହୋଇଗଲାବ ।

—"ହଁ ଏଇତକ ଶୁଣିବାକୁତ ଆଗ୍ରହରେ ଆସିଥିଲ । ତେଣୁ ଶୁଣି ସାରିବା ପରେ ଆଉ କାହିଁକି ବସିବ ? ମରଦଙ୍କ ସଂସ୍ପର୍ଶରେ ଆସି ତୁମ ପ୍ରକୃତିବି ସେଇଆ ହୋଇଗଲାଣି ।" ହସି ହସି କହିଦେଲା ସନ୍ଧ୍ୟା । ମାଧୁରୀ ବି ଜଣକୁ ଇଞ୍ଜେକ୍‌ସନ ଦେଲାବେଳେ ଉପଭୋଗ କରୁଥିଲା ସନ୍ଧ୍ୟାର ହାସ୍ୟରସକୁ ।

"ତୁମେ କେତେ ଫାଜିଲ ମ ଅପା—" କହିଥିଲା ପତ୍ରପ୍ରେରିକା ।

—"ପୁରୁଷମାନଙ୍କ ପାଖରେ ହୁଏତ ମୁଁ ଏତେ ଫାଜିଲ ହୋଇ ପାରେନି । ତା ଛଡ଼ା ପୁରୁଷ ସଂସ୍ପର୍ଶରେ ଆସିବା ମୋ ଭାଗ୍ୟରେ ଆସିବନି । ହେଉ ବା ସେ ମୋର ସୌଭାଗ୍ୟ ବା ଦୁର୍ଭାଗ୍ୟ । ଗୁଡ଼, ଡାକ୍ତରଖାନାରେ ତୁମମାନଙ୍କର ସାହଚର୍ଯ୍ୟ କେବଳ ମୋତେ ଫାଜିଲ ହେବାର ସୁଯୋଗ ଦେଉଛି । ତା ଛଡ଼ା ଶିକ୍ଷୟିତ୍ରୀ ଜୀବନରେ ଫାଜିଲାମି କରିବାର ଅବସର ବା କାହିଁ ? ହୃଦୟର ନାରୀ ସୁଲଭ ଦୁର୍ବଳତା, ଗାମ୍ଭୀର୍ଯ୍ୟ ତଳେ ଆତ୍ମଗୋପନ କରିବାକୁ ବାଧ୍ୟ ହୁଏ । ସାମାଜିକ ସମ୍ମାନ ଓ ସଂସ୍କୃତି ଅପରିହାର୍ଯ୍ୟ । ହଉ ଗୁଡ଼, ତୁମ ଚିଠିଟି ଆଗ ସାରିଦିଏ । କୁହ—କଣ ଲେଖିବ ।"

—"ମୁଁ ଭଲ ଅଛି । ତୁମ ଭଲକୁ ବଡ଼ ଠାକୁର, ମା ସାରଳା, ମା ମଙ୍ଗଳା ଆଉ ସାକ୍ଷୀଗୋପାଳ ଅଛନ୍ତି—" କହି ଚାଲିଥିଲା ପତ୍ରପ୍ରେରିକା ।

ସନ୍ଧ୍ୟା ଚିଠିଲେଖା ବନ୍ଦକରି କହିଲା, "ହାଁ ଆସ୍ତେ ଆସ୍ତେ । ସବୁ ଦେବା ଦେବୀ ଯଦି ଏବେଠୁ ସରିଯାନ୍ତି, ଗଣ ନମସ୍କାରବେଳକୁ କୋଉଠୁ ଆସିବେ ? ହଉ କୁହ, କଣ ସମ୍ବୋଧନ କରିବ ଆଗେ ?"

—"ଲେଖିନା, ତମ ମନକୁ ଯାହା ସୁନ୍ଦର ଦିଶୁଛି ତାହା ଲେଖ ।"

ସନ୍ଧ୍ୟା ଅଟକି ଗଲା । କଣ ବୋଲି ସମ୍ବୋଧନ କରି ଚିଠି ଲେଖିବ ? ସମ୍ବୋଧନ ଟିକକ ପଢ଼ିବା ପାଇଁ କେତେ ଆଗ୍ରହରେ ତାଙ୍କ ସ୍ୱାମୀ ଅପେକ୍ଷା କରି ନଥିବେ । ସେ କଣବା ଲେଖି ଶାନ୍ତି ଦେବ । ପ୍ରେମର ସମ୍ବୋଧନହିଁ ଆବେଗତା, ବ୍ୟାକୁଳତାର ସବୁ କିଛି ପରିଚୟ ଦିଏ । ସେ କେବେତ ଦିନେ କେବେ ସମ୍ବୋଧନ କରି ଚିଠି ଲେଖିବା ମନେ ପଡ଼ୁନି । ଏବେ ବା ସେ କଣ ସମ୍ବୋଧନ କରିବ ? ପ୍ରାଣନାଥ, ପ୍ରାଣେଶ୍ୱର, ହୃଦୟ ଦେବତା--କେଉଁଟା ସୁନ୍ଦରି ହେବ ? ସେତ ଦିନେ ହେଲେ ସମ୍ବୋଧନ ବାଛିବାର ସୁଯୋଗ ପାଇ ନଥିଲା । ତେଣୁ ଏବେ ବା କେମିତି ପାରିବ । ବହୁତ ବେଳଯାଏ ଭାବି ଭାବି ଶେଷରେ ଲେଖିଲା—ପ୍ରାଣର ପ୍ରିୟତମ ।

କଲମ ଥୋଇଦେଇ ସନ୍ଧ୍ୟା ପଚାରିଲା ତାଙ୍କର ସ୍ୱାମୀଙ୍କର ପରିଚୟ । ସେ କାହିଁକି ଦିନେ ହେଲେ ଡାକ୍ତରଖାନାକୁ ଦେଖିବାକୁ ଆସି ନାହାନ୍ତି ? କେଉଁ ବିଷୟବସ୍ତୁ ଉପରେ କେନ୍ଦ୍ରକରି ଚିଠି ଲେଖିବ ? ଇତ୍ୟାଦି ଇତ୍ୟାଦି ।

ଉକ୍ତ ସ୍ତ୍ରୀଲୋକଟି କାନ୍ଥ ଆଡ଼େ ମୁହଁ ବୁଲାଇ ମେଲି ବସିଲେ ତାଙ୍କର ଅସରନ୍ତି ଦୁଃଖର ଭଣ୍ଡାର । ରାତି ବଢ଼ି ଚାଲିଥାଏ । ଓ୍ୱାର୍ଡ଼ଟି ସାରା ନିସ୍ତବ୍ଧ । ସ୍ତ୍ରୀଲୋକଟି ଧିରେ ଧିରେ ଗପି ଚାଲିଥାନ୍ତି ତାଙ୍କର ଦୁଃଖର କାହାଣୀ···ତାଙ୍କର ସ୍ୱାମୀ କପଟ ବିବାହର ଦୁଇବର୍ଷ ପରେ ଅନ୍ୟ ଗୋଟାଏ ଝିଅକୁ ଭଲ ପାଇ ବସିଲେ । ଦୁଇବର୍ଷ ଧରି ସ୍ୱାମୀଙ୍କର ଯେଉଁ ସ୍ନେହକୁ ଏକାନ୍ତ ଭାବରେ ସେ ପାଇ ପାରିଥିଲେ ତାକୁ ସେ ହରାଇ ବସିଲେ । ସେତିକି ନୁହେଁ—ତାଙ୍କର ନିସ୍ସହତାର ସୁଯୋଗ ନେଇ ସେ ଝିଅଟିକୁ ସ୍ୱାମୀ ଆଣିଲେ ଘରକୁ । ତ୍ୟାଗ ଓ ଭକ୍ତିର ଚରମ ପରକାଷ୍ଠା ଦେଖାଇ ସ୍ୱାମୀକୁ ଦେବତା ବିଚାର କରି ସମସ୍ତ ଅପମାନକୁ ମଥାପାତି ସହି ନେଲେବି ସ୍ୱାମୀଙ୍କ ଅତ୍ୟାଚାରର ସୀମା ଟପିଗଲା । ମନରେ ଆଘାତ ପାଇ ନୀରବ ରହିବା ପରେ ଦେହରେ ଆଘାତ ପାଇ ମଧ୍ୟ ଗୃହତ୍ୟାଗ ଓ ସ୍ୱାମୀ ତ୍ୟାଗ କରିବାକୁ ସେ ଇଚ୍ଛା କରି ନଥିଲେ । କିନ୍ତୁ ସ୍ୱାମୀଙ୍କର ଶେଷ ଆଦେଶ ହେଲା ସେ ଘର ଛାଡ଼ି ବାପ ଘରକୁ ନଗଲେ ବିଷ ଦେଇ ତାଙ୍କୁ ହତ୍ୟା କରିଦିବ । ଅନନ୍ୟୋପାୟ ହୋଇ ବାପ ଘରକୁ ଆସିଲେ ସତ, ମାତ୍ର ସ୍ୱାମୀ ପରିତ୍ୟକ୍ତା, ତା ଅବହେଳିତା ନାରୀ ଯେପରି ବାପ ଘରେ ମର୍ଯ୍ୟାଦା ପାଏନି—ସେହି ମାନରେ ଭାଉଜଙ୍କ ସେବା ଯତ୍ନ କରି

ଜୀବନ ଧାରଣ କରିବା ତାଙ୍କର ଥିଲା ଦୈନନ୍ଦିନ କାର୍ଯ୍ୟ । ଭଉଜଙ୍କ ବାସନ ସଫା କରିବାରେ ତ୍ରୁଟି କରିଛନ୍ତି କି ନାହିଁ ସେ ଜାଣିନ୍ତିନ । କିନ୍ତୁ ଭଉଜଙ୍କ ଆଘାତରେ ତାଙ୍କ ମୁଣ୍ଡ ଫାଟି ସଂଜ୍ଞାହୀନ ହୋଇ ପଡ଼ିଥିଲେ । ଫଳରେ ସେ ନିଜକୁ ଆବିଷ୍କାର କରିଥିଲେ ଡ଼ାକ୍ତରଖାନାରେ—ମୁଣ୍ଡରେ ବ୍ୟାଣ୍ଡେଜ୍ ବନ୍ଧା ଅବସ୍ଥାରେ ।

ସମ୍ପୂର୍ଣ୍ଣ ଗପ ସରିଲା । ତାଙ୍କର ଆଖିରୁ ଲୁହ ଧାର ଧାର ବୋହି ଶୁଷ୍କ ଗୁଲୁକୁ ଓଦାକରି ସାରିଥିଲା । ମୁଣ୍ଡ ଉପରୁ ଓଢ଼ଣାଟି କେତେବେଳୁ ଖସି ପଡ଼ିଛି ସେ ଜାଣିନ୍ତିନି । ସନ୍ଧ୍ୟା ନିଜର ଅଶ୍ରୁ ଜର୍ଜରିତ ନୟନରେ ଗୁହିଁଥାଏ ତାଙ୍କର ଆଡ଼େ । କି ସୁନ୍ଦର ମୁହଁ ! କି ସୁନ୍ଦର କଥା ! କି ସୁନ୍ଦର ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ ! ଏମିତିକା ସ୍ତ୍ରୀ ପୁଣି ଦୁନିଆରେ ଅବହେଳିତ ହୋଇ-ପାରେ କି ? ବିଶ୍ୱାସ ହେଉନି ତାର । କିନ୍ତୁ ତା ସାମନାର ଲୁହ ତ ମିଛ ନୁହେଁ । ଲୁହ କେବେ ମିଛ ହୋଇପାରେନା । ମିଛର ଲୁହ ନାହିଁ କି ସତ୍ୟର ଉପହାସ ନାହିଁ ।

ତାଙ୍କର ଲୁହକୁ ସନ୍ଧ୍ୟା ନିଜର ପଣତରେ ପୋଛି ଦେଇ ସାନ୍ତ୍ୱନା ଦେଇ କହିଲା—"ଭଉଣୀ, ତୁମର ଜୀବନ ଏତେ ଦୁଃଖମୟ, ତୁମର ବୁକୁତଳେ ଏତେ ବ୍ୟଥା, ମୁଁ ମୁହୂର୍ତ୍ତେ ବି କଳ୍ପନା କରିନଥିଲି । ବିବାହିତା ସ୍ତ୍ରୀର ଯୌବନରେ ପୁଣି ଦୁଃଖ ! ହଉ ଭଉଣୀ, ଭଗବାନଙ୍କ ଦୁନିଆରେ ମନୁଷ୍ୟର ଜନ୍ମ ବଞ୍ଚିବା ପାଇଁ । ମୃତ୍ୟୁ ମଣିଷର ଆୟତର ବାହାରେ । ହେଲେ ଦୁନିଆରେ ନ୍ୟାୟ, ଧର୍ମ ଓ ସତ୍ୟ କେବେ ଲୁଚି ପାରେ ନା । ଯଦି ଏ ଧରଣୀ ସତ୍ୟ, ଏ ଆକାଶ ସତ୍ୟ, ତେବେ ତାରି ଭିତରେ ଏ ଯେଉଁ ମଣିଷର ଜନ୍ମ ଏବଂ ଜନ୍ମପରେ ମଣିଷର ପ୍ରେମ ଓ ଭଲ ପାଇବା କେବେ ମିଥ୍ୟା ହୋଇପାରେନା । ଶୁଣ ଭଉଣୀ, ଦୁଃଖର ଭଟ୍ଟାପରେ ସୁଖର ଜୁଆର ନିଶ୍ଚୟ ଆସିବ । ମୁଁ ତୁମଠୁଁ ବୟସରେ ବଡ଼ ହେଲେ ବି ତୁମର ବିବାହିତ ଜୀବନ ପ୍ରତି ମୁଁ ଖୁବ୍ ସମ୍ମାନ ଦିଏ । ଅବିବାହିତ ଜୀବନଠାରୁ ବିବାହିତ ସ୍ତ୍ରୀର ସୁଖ ସମ୍ମାନ ଓ ଗୌରବ ବହୁତ ଉଚ୍ଚରେ । ବିବାହିତା ସ୍ତ୍ରୀର କାଚ ଦୁଇପଟ ଓ ମଥାର ସିନ୍ଦୂର ପାଖରେ ଅବିବାହିତା ଝିଅର ପୋଷାକ, ପରିଚ୍ଛଦ, ଧନ, ମାନ, ବିଦ୍ୟା ଓ ଆଭିଜାତ୍ୟ କିଛି ନୁହେଁ । ହେଲେ ଭଉଣୀ, ଭଗବାନ ତୁମ ଜୀବନର ମାନ କେତେ ତଳକୁ ଖସାଇ ଦେଇଛନ୍ତି !!!"

ପୁଣି କହି ଚାଲିଲା, "ଆଚ୍ଛା କହିଲ ଭଉଣୀ, ଯଦି ତୁମ ସ୍ୱାମୀ ତୁମର ମୃତ୍ୟୁ ଚାହୁଁଥିଲେ, ତେବେ ଦେଇ ଦେଲନି କାହିଁକି ? ତାଙ୍କର ହାତରେ ତୁମର ମରଣଠୁ କଣ ଆଉ କିଛି ଅଧିକ ସୁଖ ଶାନ୍ତି ଓ ତୃପ୍ତି ଥାଇପାରେ ? ଏତେ ଦୁଃଖ କଷ୍ଟ ଓ ନିର୍ଯ୍ୟାତନା ଧରି ବଞ୍ଚିବା ଅପେକ୍ଷା······"ସ୍ତ୍ରୀ ଲୋକଟି ଲୁହ ପୋଛି ଦରଦଭରି କହିଲେ, "ହଁ, ସେ ବି ଗୋଟାଏ କଥା । କଣ କରିବି ? ମରିବାକୁ ମୁଁ କେମିତି ଯାଇଥାନ୍ତି କହିଲ ? ଆଜିସିନା ସେ ଝିଅଟି ତାର ଯୌବନ ଦେଇ ସମସ୍ତ ସ୍ୱାର୍ଥ ସିଦ୍ଧି କରି ଚାଲିଛି ଓ ସ୍ୱାମୀ ବି ତାର ଉଚ୍ଛୁଳା ଯୌବନରେ ଭାସି ମୋତେ ଫୋପାଡ଼ି ଦେଇଛନ୍ତି; ହେଲେ କଣ ସ୍ୱାମୀଙ୍କ ସୁଖ ସମ୍ଭୋଗ ପାଇଁ ସେ ଚିରଦିନ ଠିଆହେବ ? ଆଜି ସବୁ ଅଛି । ଆଉ ତା ସାଥିରେ ସେ ବି ଅଛି । କିନ୍ତୁ କାଲିକି ସ୍ୱାମୀଙ୍କର ଧନ କମିଯା ଯୌବନ ଚାଲିଗଲେ ସ୍ୱାର୍ଥଲୋଭୀ ଝିଅଟି କଣ ଆଉ ରହିବ ?—ଲାତ ମାରି ଚାଲିଯିବ । ସେତେବେଳକୁ ମୋ ସ୍ୱାମୀ କି କଷ୍ଟ ନପାଇବେ ? ସେତେବେଳେ କଏ ତାଙ୍କ ପାଖେ ଠିଆହେବ ? କଏ ତାଙ୍କର ସେବା କରିବ ? କଏ ତାଙ୍କର ଦୁଃଖ ଶୁଣିବ ? ଯେତେ ଯାହା ହେଲେ ବି ସେ ମୋର ସ୍ୱାମୀ । ଇହକାଳ ଓ ପରକାଳର ଦେବତା । ମୁଁ ଯୁଗେ ଯୁଗେ ତାଙ୍କର ଦାସୀ । ମୁଁ କେମିତି ତାଙ୍କୁ ଛାଡ଼ିଦେଇ ଚାଲିଯାନ୍ତି କହିଲ । ସେ ଝିଅଟି ବୟସରେ ଖୁବ କମ୍ । ତେଣୁ ତାର ଯୌବନ ନ ଖସୁଣୁ ଯଦି ସ୍ୱାମୀଙ୍କର ଯୌବନ ଖସି ପଡ଼େ ସେ ଝିଅ କଣ ଆଉ ପଚାରିବ ? ତେଣୁ ମତେ ବଞ୍ଚିରହିବାକୁ ପଡ଼ିବ । କାଳେ ସ୍ୱାମୀ ଯଦି ନିଃସହାୟ ହୋଇ ପଡ଼ନ୍ତି, ମୋ ଛଡ଼ା ଆଉ କଏ ତାଙ୍କର ଦୁଃଖରେ ସମବେଦନା ଜଣାଇ ପାରିବ ?" ଏକା ନିଶ୍ୱାସରେ ଏତେକ କହିଦେଇ ଚୁପ ହୋଇ ବସିଲେ ।

ସନ୍ଧ୍ୟା ମୁହଁ କରୁଣ ତକିଆ ଉପରେ ପଡ଼ିଗଲା । ତାଙ୍କର ଦୁଃଖର ସମବେଦନାରେ ତାର ପ୍ରତି ଲୋମକୂପରେ ବି ଅଶ୍ରୁ ବହିବାକୁ ଲାଗିଲା । ନାରୀର ଦୁଃଖ ନାରୀହିଁ ବୁଝେ । କଥାରେ ଅଛି ଝିଅ ବାହାଘର ପାଇଁ ମା ବେଶି ବ୍ୟସ୍ତ ହୋଇପଡ଼େ । ନାରୀର ହୃଦୟ ନାରୀ ବିନା ଆଉ କେହି ବୁଝିପାରିବେନି । ସନ୍ଧ୍ୟା ତକିଆ ଉପରେ ମୁଣ୍ଡ ଥୋଇ ସମବେଦନାର ଲୁହ ଢାଳି ଗଲା । ଭାବିଲା—"ସେ ସିନା ପାଠ ପଢ଼ି ନାହାନ୍ତି ଓ ଭାଷା ତାଙ୍କ ପାଖରେ ନାହିଁ । ହେଲେ ସେ ଯଦି ଭାଷା ଓ ଅକ୍ଷରର ଅଧିକାରିଣୀ ହୋଇଥାନ୍ତେ, ତେବେ କି ଦରଦଭରା ବୋଲି ଗୋଟିଏ ଲେଖି ନଥାନ୍ତେ ! ମନୁଷ୍ୟ ପୁଣି ମନୁଷ୍ୟ ପାଇଁ ଏତେ ନିଷ୍ଠୁର ହୋଇପାରେ !"

ସ୍ତ୍ରୀଲୋକଟି ଖଟିଆ ଉପରୁ ଉଠି ଠିଆହେଲେ । କହିଲେ, "ଯାଉଛି ଅପା । କାଲି ସକାଳୁ ଆସିବି ଲେଖି ଦେବ ।"

—"ନା… । ତୁମେ ଯାଅ । ମୁଁ ତୁମ ଅନ୍ତରର ସମସ୍ତ ଭାଷା ଓ ବ୍ୟାକୁଳତାକୁ ରୂପଦେଇ ଆଜି ରାତିରେ ଚିଠି ଖଣ୍ଡିକ ସାରି ଦେବି । ହେଲେ ତୁମେ କେବେ ଡ଼ାକ୍ତରଖାନା ଯାଉଛ ?"

"ଦିଦି କହୁଥିଲେ ଆହୁରି ୧୫ ଦିନପରେ । 'ସେ' ଟିକଏ ଆସିଥିଲେ ମତେ ନେଇ ଘରେ ଛାଡ଼ି ଦେଇଥାନ୍ତେ । ଚିଠି ଆସିଛି ଭାଇନାଙ୍କୁ ଜ୍ୱର । ତେଣୁ ସେ ଆସିପାରିବେକି ନାହିଁ ସନ୍ଦେହ । ନହେଲେ ମୁଁ ନିଜେ ନିଜେ ଯିବି । ବେଶି ଅସୁବିଧା ନୁହେଁ ମ । ଏଠୁ ବସ୍‌ରେ ବସିଲେ ଘରେ ଯାଇ ପହଞ୍ଚାଇବ"—କହି ଦେଇ ସେ ଚାଲିଗଲେ ।

ବହୁତ ବେଳଯାଏ ଏଣୁ ତେଣୁ ଭାବି ଚିଠି ଲେଖିବା ଆରମ୍ଭ କଲା ସନ୍ଧ୍ୟା । ଅଭିନେତ୍ରୀ ଅଭିନୟ କଲା ଭଳି, ସଠିକ୍ ଦରଦତା ଢାଳି ଚିଠି ଲେଖି ଚାଲିଥାଏ । ଢ଼ାଳି ଯାଉଥାଏ ଅଭିମାନିନୀର ଅଭିମାନ ।

ରାତିର ନିବିଡ଼ ଅନ୍ଧାର ଭିତରେ ଟିକଏ ଦମ୍ ନେବା ପାଇଁ, ଆଲୁଅ ଲିଭେଇ ଦେଇ ଝରକା ବାହାରକୁ ଚାହିଁଲା । ସେଥିରେ ବି ତାର ତୃପ୍ତି ଆସିଲାନି । ଖଟିଆରୁ ଉଠିଆସି ଝରକା ପାଖରେ ଚୁପ୍ ହୋଇ ଠିଆ ହେଲା ।

ଓ୍ୱାର୍ଡ଼ଟି ନିଃଶବ୍ଦ । ସମସ୍ତେ ଶୋଇଲେଣି । ମଝିରେ ଗୋଟାଏ ଆଲୁଅ କେବଳ ଜଳୁଛି । ଓ୍ୱାର୍ଡ଼ର ସମସ୍ତ କର୍ମଚାରୀ ବି ରାତିର ନିଶା ଉପରେ ଢୁଳେଇ-ଲେଣି । ହାତ ଘଡ଼ିକୁ ଚାହିଁଲା । ରାତି ୩ଟା । ଭାବିଲା ପାହାନ୍ତା ବେଳକୁ ତାର ଚିଠି ସରିଯିବ । ଜୀବନରେ ବହୁତ ବର୍ଷ ହେବ ଏପରି ଆବେଗପୂର୍ଣ୍ଣ, ବ୍ୟାକୁଳିତ ଓ ବିରହ ଦୁଃଖ ଜର୍ଜରିତ ଚିଠି ଲେଖି ନଥିଲା । ନିର୍ଜନତା ଓ ନିରୋଳତାର ସୁଯୋଗନେଇ ଭାବନାଗୁଡ଼ିକ ତାକୁ ଅସ୍ତବ୍ୟସ୍ତ କରିଦିଅନ୍ତି । ବୟସବି ବଢ଼ି ବଢ଼ି ୩୫ ଟପିଲାଣି । ହେଲେ ତାକୁ କାହିଁକି ଘର ଏବେ ଏକୁଟିଆ ଲାଗୁଛି । ସବୁ ସମାସ୍ୟାର ସମାଧାନ ତାକୁ ନିଜେହିଁ କରିବାକୁ ପଡୁଛି ।

ସବୁଠୁ ତାକୁ ବେଶି ବାଧେ—ନିରୋଳତାର ସୁଯୋଗ ନେଇ ଆଖିରୁ ଅଜାଣତରେ ଲୁହ ବହି ଯିବାଟା । ବୟସ୍କା ଅବିବାହିତା ଜୀବନରେ ସେ ଲୁହ ନୁହେଁ…ଲହୁ, କି ଦାରୁଣ ଯନ୍ତ୍ରଣା ! ଯୌବନ କାନ୍ଦିଲେ ରକ୍ଷା ଅଛି । କିନ୍ତୁ ବୟସ କାନ୍ଦିଲେ ରକ୍ଷା ନାହିଁ ।

ପୁଣି ଭାବନ୍ତି, ସତରେ ନାରୀ ଜାତିଟା କଣ ! କେଉଁଠି ତାର ଶାନ୍ତି ! କେଉଁଠି ତାର ତୃପ୍ତି !! ଅସରନ୍ତି ଆଶା ଆକାଂକ୍ଷା ନେଇ ନାରୀର ଜନ୍ମ । ପୁରୁଷର ସେବା କରିବାହିଁ ନାରୀର ଧର୍ମ । ଯୁଗ ଯୁଗ ଧରି ଏଇ ନାରୀ ଜାତିଟା ସେବାକରି ଆସିଛି ଓ ଆସୁଥିବ । ସେଥିରେ ସେ ପାଏ ସୁଖ-ଶାନ୍ତି ଓ ଆନନ୍ଦ । ସେଇଥିରେହିଁ ତାର ମୁକ୍ତି । ମାନବ ଜଗତ ଭିତରେ ସେ ଶକ୍ତି, ଚିର୍ ଧରଣୀ ଭଳି ।

ସୂର୍ଯ୍ୟର ନିଆଁକୁ ସହି ଯୁଗ ଯୁଗ ଧରି ଏ ଧରଣୀ, ତାର ବକ୍ଷରେ ଶତ ଜଳଧି ଓ ଶତ ଶତ ଗୁଳ୍ମଧରି, ଶୀତଳ କରୁନଥାନ୍ତା, ତେବେ ଏ ସୂର୍ଯ୍ୟ କଣ ସୂର୍ଯ୍ୟ ହୋଇ ରହିଥାଆନ୍ତା ? ନିଜ ନିଆଁରେ ନିଜେ ଜଳି ପୋଡ଼ି ମରନ୍ତାଣି । ସୃଷ୍ଟି ଧୂଳିସାତ୍ ହୁଅନ୍ତାଣି ।

ସେମିତି......ପୁରୁଷ ଜାତିକୁ ଯୁଗ ଯୁଗ ଧରି ସେବା ମାଧ୍ୟମରେ ନାରୀ ଦେଇ ଆସୁଛି ଶକ୍ତି । ଗଙ୍ଗାଠୁ ବଳି ପବିତ୍ର ସେ, ପ୍ରକୃତିଠାରୁ ଆହୁରି ସୁନ୍ଦରୀ—ପ୍ରଶାନ୍ତ ମହାସାଗରଠାରୁ ଆହୁରି ଶାନ୍ତ—ସଙ୍ଗମଠାରୁ ଆହୁରି ତୃପ୍ତ, ଏଇ ନାରୀ ଜାତିକୁ ପୁରୁଷ କେତେ ବୁଝିରେ !!

ନଗ୍ନ ସ୍ତବ୍ଧତାର ମଝି ଦେଇ ଧାଉଁଛି ଏ ଲୁହ ବୋହିଗଲା । ଚମକି ଉଠିଲା ସନ୍ଧ୍ୟା । ଏତେ ରାତ୍ରରେ ଅବିବାହିତା ଯୁବତୀଟିଏ ଠିଆ ହୋଇ କାନ୍ଦିବା କି ଅସଙ୍ଗତ ! କି ସନ୍ଦେହ ପୂର୍ଣ୍ଣ ! କିଏ ଦେଖିଲେ କଣ ଭାବିବ ! ଗୁପ୍ତ ପ୍ରେମର ବିଷାକ୍ତ ବଦନାମ ଘୂରି ବୁଲିବ ତାର ଚତୁର୍ଦ୍ଦିଗରେ । ଭାବିଲା, ଏଥର ଶୋଇବ ।

ଏତିକିବେଳେ ଦେଖିଲା ତାର ନିକଟରେ ସାମନା ଲମ୍ବା ବାରଣ୍ଡାର ଶେଷରେ ଏକ ଅସ୍ପଷ୍ଟ ଶବ୍ଦ ଶୁଭୁଛି । ବାହାରକୁ ମୁହଁ ବାହାର କରି ଦେଖିଲା ଗୋଟିଏ ଯୁବକ ହାତ ଠାରି ବାରମ୍ବାର ଆଳ କରି ଡ଼ାକୁଛନ୍ତି କାହାକୁ ।

କିଛି କ୍ଷଣ ପରେ ଆସିଲେ ଜଣେ ଯୁବତୀ । ଅନ୍ଧାରର ଅସ୍ପଷ୍ଟ ଆଲୁଅରେ ପୋଷାକରୁ ଜାଣି ପାରିଲା ଯୁବତୀ ଜଣକ ଜଣେ ନର୍ସ । ଭାବିଲା ଏକଣ ? ଯୁବକ ଜଣ କିଏ ?

ଯୁବକ ଜଣକ ନର୍ସର ହାତ ଧରି ବାରଣ୍ଡା ଶେଷର କାନ୍ଥକୁ ଆଉଜି ଠିଆ ହେଲେ । ସନ୍ଧ୍ୟା ଆଉ ଟିକିଏ ନଇଁ ଯାଇ ସେମାନଙ୍କ ଅଲକ୍ଷ୍ୟରେ ଲକ୍ଷ୍ୟ କଲା ଦୁହିଁଙ୍କର ଗତିବିଧିକୁ ।

ଯୁବକ ଜଣକ ଆରମ୍ଭ କଲେ, "ତୁମେ ସବୁବେଳେ ଏତେଟା ନିର୍ଦ୍ଦୟ ହୁଅ କାହିଁକି ମାୟା ?"

—"କାହିଁ ନୁହଁ ତ । କହନ୍ତୁ ମୁଁ ଆପଣଙ୍କର କେଉଁ ଆଦେଶ ଓ ଅନୁରୋଧକୁ ଉପେକ୍ଷା କରିଛି ? ଏଇତ···ଆପଣ ଆଜି ସିନେମାକୁ ଡାକିଲେ —ମୁଁ କଣ ଗଲିନି ? କେତେ ଯେ ଆଖି ମୋର ଚରିତ୍ରକୁ କେନ୍ଦ୍ରକରି ଘୂରି ଯାଇଛି—କେତେ ଯେ ଦର୍ଶକ ମୁଁ ଆପଣଙ୍କ ପାଖରେ ବସିବାଟାକୁ କେନ୍ଦ୍ରକରି କେତେ କ'ଣ କୁତ୍ସିତ ମନୋଭାବ ନେଇ ଯାଇଛନ୍ତି, ତଥାପି ମୁଁ ଭ୍ରୂକ୍ଷେପ କରିନି । ହେଲେ ଆପଣଙ୍କ ବିବାହ କଥାଟାକୁ ମୁଁ ମୋଟେ ଗ୍ରହଣ କରି ପାରୁନି । ଆପଣ ଯାହା ଚାହିଁଲେ ମୁଁ ଦେଇ ପାରିବି । ଆପଣଙ୍କ ପ୍ରତିଟା ପ୍ରବୃତ୍ତିର ଅଣୁ ପରମାଣୁକୁ ବି ଶାନ୍ତ କରିବାକୁ ମୁଁ ପ୍ରସ୍ତୁତ । କିନ୍ତୁ ବିବାହ ନୁହଁ ।"

—"ସେପରି କୁହନି ମାୟା । ହେଇ କାଲିଠାରୁ ମୁଁ ଡାକ୍ତରଖାନାରୁ ବିଦାୟ ନେଇ ଯାଉଛି । ଆଉ ଦୁଇଟା ମାସ ପରେ ଲଣ୍ଡନ ଯିବି । ହେଲେ ଶେଷଥର ପାଇଁ ମୁଁ ତୁମଠାରୁ ପ୍ରତିଶ୍ରୁତି ଚାହେଁ । ମୋତେ ହତାଶ କରନି । ମୁଁ ଏଠି ଡାକ୍ତରୀ ପଢ଼ିବାର ଦ୍ୱିତୀୟ ବର୍ଷଠାରୁ ତୁମକୁ ଭଲ ପାଇ ବସିଛି । କିନ୍ତୁ ବହୁତ ଦିନ ପରେ ମୁଁ ମୋର ଅଭିପ୍ରାୟ ଜଣାଇଲି । ତୁମେ କାହିଁକି ହତାଶ କରିଦେଉଛ ? ତୁମେତ କୁହ ଭଲପାଅ ବୋଲି । ତୁମକୁ ଆଜି ମୋତେ କେନ୍ଦ୍ରକରି କେତେ ବଦନାମ ଚାଲିଲାଣି । ତଥାପି ତୁମେ ବିବାହ ପ୍ରସ୍ତାବକୁ ନିଷ୍ଠୁର ଭାବେ ପ୍ରତ୍ୟାଖ୍ୟାନ କରୁଛ କାହିଁକି ?"

କିଛି ସମୟ ନୀରବ ରହି ଯୁବକ ଜଣକ ପୁଣି ଆରମ୍ଭ କଲେ, "ମାୟା ତୁମେ ଯଦି ଅବିବାହିତା ରହିବା ପାଇଁ ଜନ୍ମ ହୋଇଥିଲ, ତେବେ ଏତେ ସୁନ୍ଦର ହେଲ କାହିଁକି ? ଭଗବାନ ତୁମଠାରେ ଏତେ ରୂପ ଏତେ ଯୌବନ-ଏତେ ସୌନ୍ଦର୍ଯ୍ୟ ଭରି ଦେଲେ କାହିଁକି ? ଆଉ ଯଦି ବା ଏଇ ରୂପ ନେଇ ଜନ୍ମ ହେଲ, ତେବେ ସେଥିରେ ଟିକିଏ ସିନ୍ଦୂର ଓ ଦୁଇପଟ କାଚ ଯୋଡ଼ି ଦେଲେ ଆହୁରି କି ସୁନ୍ଦର ନ ଦିଶନ୍ତା !"

ଭଗ୍ନ କଣ୍ଠରେ ମାୟା ଉତ୍ତର ଦେଲା, "ଛାଡ଼ନ୍ତୁ ପ୍ରଶାନ୍ତ ବାବୁ । ମୋର ଏଇ ସୌନ୍ଦର୍ଯ୍ୟ ହିଁ କାଳ ହୋଇଛି । ସସ୍ତା ହାଟରେ ଏଇ ସୌନ୍ଦର୍ଯ୍ୟକୁ ଧରି ଟିକିଏ ବି ନିରାପଦରେ ଚାଲି ପାରୁନି । ହେଲେ ଶୁଣି ରଖନ୍ତୁ ମୋ ଜୀବନର

ସବୁ କଥା ଜଣାଇ ଦେବ । ଆପଣ ତଥାପି ଯଦି ବିବାହ କରିବାକୁ ଚାହାନ୍ତି, ତେବେ ମୋର ଆପତ୍ତି ନାହିଁ । ଆପଣଙ୍କର କିନ୍ତୁ ଧୈର୍ଯ୍ୟ ଦରକାର ମୋର ଏ ଜୀବନ କାହାଣୀ ଶୁଣିବା ପାଇଁ ।"

କିଛି ସମୟ ନୀରବରେ ବିତିଗଲା । ଦୁହେଁ ସେମିତି ଠିଆ ହୋଇ ଥାଆନ୍ତି । ହଠାତ୍ ନୀରବତା ଭାଙ୍ଗି ମାୟା କହିଲା, "ମୁଁ ଆସେ ।"

—"ନା ମାୟା ଯାଅନା । ଯେପରି ମୁଁ ଭାବୁଛି ଏଇଟା ଆମ ପ୍ରେମ ଜୀବନର ଶେଷ ରାତି ।"

—"ଛି... ! ଆପଣ ଏମିତି ଭାଙ୍ଗି ପଡ଼ୁଛନ୍ତି । ମୁଁ କଣ ଆପଣଙ୍କର ଏଇ ବକ୍ତବ୍ୟ ଶୁଣିବା ପାଇଁ ଜନ୍ମ ହୋଇଥିଲି ? ଆପଣଙ୍କୁ ମୁଁ ଜୀବନ ଦେଇ କେବେ ଭଲ ନ ପାଏ । ମୁହୂର୍ତ୍ତିଟି ପାଇଁ ଆପଣଙ୍କର ବିଚ୍ଛେଦ ମୁଁ ସହି ପାରେନି । ତଥାପି ଆପଣ ଏପରି କହିବାକୁ ସାହସ କରୁଛନ୍ତି । ହଉ ମୁଁ ଯାଉଛି । ୭୨ ନମ୍ବର ପେସେଣ୍ଟକୁ କ୍ୟାପ୍‌ସୁଲଟା ଦେଇ ଆସେ । ସେବିକା ହୋଇ କର୍ତ୍ତବ୍ୟରେ ହେଳା କରିବାଠୁଁ ବେଶୀ ଅପରାଧ କଣ ଥାଇପାରେ ? ଭଲ ପାଇବାର ଅବହେଳାଠୁଁ ବି ସେବାର ଅବହେଳା ଖୁବ ସାଙ୍ଘାତିକ ।"

କଣ୍ଠରେ ଗମ୍ଭୀରତା ଭରି ପ୍ରଶାନ୍ତ କହିଗଲେ, "ଦେଖ ମାୟା— ତୁମର ଯିବାଟାକୁ ମୁଁ ମନା କରୁନି; କିନ୍ତୁ ତୁମର ଯୁକ୍ତିକୁ ମୁଁ ମାନି ପାରୁନି । ସେବାର ଅବହେଳା କଲେ ତା କାହାରି ଜୀବନ ସହିତ ଖେଳିଲେ, କେବଳ ଗୋଟିଏ ଜୀବନ ନଷ୍ଟ ହୁଏ । କିନ୍ତୁ ଭଲ ପାଇବାରେ ଅବହେଳା କଲେ କିମ୍ବା କାହା ଯୌବନ ସହିତ ଖେଳିଲେ ଜୀବନ ଓ ଯୌବନ ଦୁଇଟିଯାକ ନଷ୍ଟ ହୁଏ । ତେଣୁ କୁହ—କେଉଁଟା ସାଙ୍ଘାତିକ ?"

—"ପ୍ରଶାନ୍ତ ବାବୁ, ଆପଣଙ୍କ ଯୁକ୍ତି ପାଖରେ ମୁଁ ପରାଜୟ ସ୍ୱୀକାର କରୁଛି । ହେଲେ, ମୁଁ କାହା ପ୍ରତି ଅବହେଳା କରିବାକୁ ଯାଉନି । ମୁଁ ଚାହେଁନି, ଏତେବଡ଼ ଦୁନିଆରେ ଏତକ ଟିକିଏ ବି ନଷ୍ଟ ହେଉ । ମୁଁ ଚାହେଁ ଜୀବନ ହସୁ ଓ ଯୌବନ ବି ହସୁ । ଆଚ୍ଛା......କ୍ୟାପସୁଲଟା ଦେଇ ମୁଁ ସଙ୍ଗେ ସଙ୍ଗେ ଆସୁଛି ।" ଏତକ କହି ମାୟା ପ୍ରେମାଳାପ ଭିତରୁ ଖୁବ ସତର୍କତା ସହ ଖସି ଆସିଲା ।

ମୁଖ୍ୟ ଦୁଆର ପାଖରେ ଦୁଇଜଣ ବିପରୀତ ରାସ୍ତାରେ ଯିବା ପୂର୍ବରୁ ପ୍ରଶାନ୍ତ ବାବୁ କହିଲେ, "ମୁଁ ଚେମ୍ବର୍‌ରେ ବସିଛି । ଔଷଧ ନେଇ ଆସିଲେ ବହୁତ କିଛି କଥା ହେବାର ଅଛି । ତେବେ ଏତକ କହି ରଖୁଛି, ତୁମ ପାଇଁ ସବୁ କିଛି ତ୍ୟାଗ କରିବା ପାଇଁ ମୁଁ ପ୍ରସ୍ତୁତ । କିନ୍ତୁ ବିଖ୍ୟାତ ଲଣ୍ଡନ ନଗରୀରେ ବସି ତୁମକୁ ମୁଁ ଝୁରିଲି ବେଳେ ତୁମେ ହଜି ଯିବନି ତ ?"

—"ପ୍ରଶାନ୍ତ ବାବୁ... !" କହି ମାୟା ନିଃଶ୍ୱାସଟିଏ ମାରିଲା । ଯେପରି ତାର ପରିଚୟ ଏଇ ସମ୍ବୋଧନରେହିଁ ରଖିଦେଲା । ସେଇ ସମ୍ବୋଧନହିଁ ପ୍ରଶାନ୍ତ ବାବୁଙ୍କ ପ୍ରଶ୍ନର ଉତ୍ତର ।

ପ୍ରଶାନ୍ତ ବାବୁ ମଧ୍ୟ ପୋଡ଼ ଡାକ୍ତରୀ ଗମ୍ଭୀରତା ନେଇ ଚାଲିଗଲେ । ଆଉ ମାୟା ବି ।

ଏଣେ ସନ୍ଧ୍ୟା ୭୨ ନମ୍ବର ଶୁଣି ଚମକି ଉଠିଲା । ଭାବିଲା, ଏଇତ ମାୟା ତାର ପାଖକୁହିଁ ଆସିବ । ହୃଦୟରେ ଚରମ ଦୁର୍ବଳତା ଓ ନିଷ୍ଠୁରତା ନେଇ ଆସିବ ତାର ସେବା କରିବା ପାଇଁ ।

ମାୟାପ୍ରତି ତାର କେବେ ଭଲ ଧାରଣା ନଥିଲା । ହେଲେ କିଛିଟା ମୁହୂର୍ତ୍ତ ତଳର ସେଇ ପ୍ରେମାଳାପ ଶୁଣିବା ପରଠୁ ମାୟାକୁ ଆଦର୍ଶନାରୀ ଭାବି ବନ୍ଦନା କରିବା ଗୋଟିଏ ଭୁଲ୍ ବୋଲି ଠିକ୍ କଲା । ତାର ଦୃଢ଼ ଧାରଣା ହେଲା ମାୟା ଅସ୍ପୃଷ୍ଟା ନୁହଁ । କ୍ଷତ ଯୌବନା ।

ଏମିତି କେତେ କଣ ଭାବି ନିଜ ଖଟିଆ ପାଖକୁ ଚାଲି ଆସିଲା ସନ୍ଧ୍ୟା । ପ୍ରେମାଳାପ ଟିକିକ ତାର ହୃଦୟରେ ବହୁ ଦିନ ତଳର ସୁପ୍ତ ବିଗତଟିକୁ ଚହଲାଇ ଦେଲା । ତାର ଯେପରି ଶ୍ୱାସ ରୁଦ୍ଧ ହୋଇ ଆସିଲା ।

ଖଟିଆ ରେଲିଂ ଉପରେ ମଥା ରଖି ଆଖିବୁଜି ଆହୁରି ଭାବିବାକୁ ଲାଗିଲା । ଯେଉଁ ବିଗତଟିକୁ ଏତେ ଚାପ ଦେଇ, ଏତେ ଗୋପନ କରି ମନ, ହୃଦୟ ଓ ସର୍ବୋପରି ଅନ୍ତଃ ଦୃଷ୍ଟିରୁ ପୋଛି ଦେଇ ଟିକିଏ ହସିବ ବୋଲି ଚେଷ୍ଟା କରୁଛି, ବାହାର ଦୁନିଆଟା ତାକୁ ସେଇ ବିଗତ ସ୍ମୃତି ଆଡ଼େ ସେତିକି ଟାଣି ନେଉଛି । କେଉଁଠି ହେଲେ ତାକୁ ଶାନ୍ତି ମିଳୁନି । ପ୍ରେମ ଓ ଭଲ ପାଇବାର ସତ୍ତା ନଥାଇ ଟିକିଏ ବି ଜାଗା ଏତେ ବଡ଼ ଦୁନିଆରେ ତାପାଇଁ ନାହିଁ ।

କେତେବେଳଠୁଁ ମାଯ୍ନା ଆସି ପାଣିଗ୍ଲାସ ଓ କ୍ୟାପ୍‌ସୁଲ ଧରି ତା ପାଖରେ ଠିଆ ହୋଇଛି ସେ ଜାଣିନି ।

ମାଯ୍ନା ଡ଼ାକିଲା, "ସନ୍ଧ୍ୟା ଅପା !"

ଅଲକ୍ଷରେ ସନ୍ଧ୍ୟା ପାଟିରୁ ବାହାରି ପଡ଼ିଲା, "ଉଁ··· ।"

—"ଏମିତି କଣ ଶୋଇଛ !"

—"ଆରେ ମାଯ୍ନା···ତୁମେ କେତେବେଳଠୁଁ ?" ସନ୍ଧ୍ୟା ଚମକି ପଡ଼ିଲା ।

—"ଆଗେ ଔଷଧ ଖାଇ ନିଅ ।"

—"ନ ଖାଇଲେ ଚଳି ନଥାନ୍ତା ?"

—"ଚଳିବନି ବୋଲି ତ ମୁଁ ଆସିଛି । ଆଚ୍ଛା ଅପା କହିଲ, ଏମିତି କାହିଁକି ଶୋଇଥିଲ ? କିଛି ଭାବୁଥିଲ ବୋଧହୁଏ, ଭାବୁ ଭାବୁ ଶୋଇ ଯାଇଛ ନୁହେଁ ?"

—"ନା··· । ଶୁଣୁଥିଲି ।"

—"କଣ ?" ମାଯ୍ନା ଆଶ୍ଚର୍ଯ୍ୟ ହେଲା ଓ ଚମକି ଉଠିଲା ବି ।

—"ଏଇ ପ୍ରିୟ ନିକଟରେ ତୁମର ସଫେଇ ।"

—"ଅପା······ !!!" ମାଯ୍ନାର ହାତରୁ ଖସି ଗଲା ଗ୍ଲାସଟା ।

ଶବ୍ଦରେ ନିସ୍ତବ୍ଧତା ଚୁରମାର ହୋଇଗଲା । ଡାକ୍ତର ଚେମ୍ବର ଭିତରୁ ଧାଇଁ ଆସୁ ଆସୁ କହିଲେ, "ସିଷ୍ଟର୍ ! କଣ ହେଲା ?"

ସନ୍ଧ୍ୟା ଲୁଗା ସଜାଡ଼ି ନେଇ ଆଗଭୁହା କହିଲା, "ନା···କିଛି ନୁହେଁ ସାର୍ । ପାଣି ପିଇବା ବେଳେ ଗ୍ଲାସଟା ମୋ ହାତରୁ ଖସିଗଲା ।"

ମାଯ୍ନା ଝଡ଼ ବେଗରେ ସେଠୁ ଚାଲିଗଲା । ଡାକ୍ତର ଡ଼ାକିଲେ ବେହେରାକୁ । କିଛିଟା ସମୟ ଭିତରେ କାଚଖଣ୍ଡଗୁଡ଼ିକ ସଫା ହୋଇଗଲା । ପୁଣି ପାଣି ଆସିଲା । ସନ୍ଧ୍ୟା କ୍ୟାପ୍‌ସୁଲଟା ଗିଳି ନେଇ ଶେଜ ଉପରେ ଆଉଜାଇ ନେଲା ନିଜକୁ । ମାଯ୍ନା ଆଉ ଫେରିଲାନି ।

ମନ ଦେଇ ପୁଣି ଲେଖା ଆରମ୍ଭ କଲା ଅଧା ଲେଖିଥିବା ଚିଠିଟିକୁ ।

କିଛି ଦିନ ପରେ—

ଆଜି ମାୟା ଆସିନି ସେହି ଦିନଠୁ । ଦିହ ଖରାପ ବୋଲି ଛୁଟି ନେଇ ଥାଏ । ଡାକ୍ତର ପ୍ରଶାନ୍ତ ବାବୁ ବି ଆଜି ଆସି ନାହାନ୍ତି ।

ମାୟାର ଅନୁପସ୍ଥିତିଟା ସନ୍ଧ୍ୟା ପାଖରେ ଖୁବ୍ ନିଃସଙ୍ଗତା ସୃଷ୍ଟି କରିଥାଏ । ବେଳେ ବେଳେ ସୁରଭି ସହ ବସି ଗପ ଜମାଏ । ଦିନର କିଛିଟା ସମୟ କଟିଯାଏ । ହେଲେ, ବୟସର ଏତଟା ତାରତମ୍ୟ ବନ୍ଧୁତାରେ ସ୍ୱଚ୍ଛତା ଆଣି ପାରେନା । ମନ ତଳେ ସନ୍ଧ୍ୟା ଖୋଜି ବୁଲେ ମାୟାକୁ । ଇଚ୍ଛା ହେଉଥାଏ ମାୟା ପାଖରେ ଭୁଲ ମାଗିବ । କହିବ—ସେ କିଛି ଶୁଣିନି । କିନ୍ତୁ ପର ମୁହୂର୍ତ୍ତରେ ଭାବେ, ଯେତେବେଳେ ସତ୍ୟ ସତ ଘଟଣାକୁ ଆକ୍ଷେପ ପରି କହି ଦେଇଛି ପୁଣି କଣ ତାକୁ ମିଥ୍ୟା ଉକ୍ତି ବୋଲି ପ୍ରମାଣ କରି ପାରିବ ?

ବହୁତ ଭାବି ଭାବି ଶେଷରେ ମାୟା ପାଖକୁ ଖଣ୍ଡିଏ ଚିଠି ଲେଖି ଅନ୍ୟ ଦିଦିଙ୍କ ହାତରେ ଦେଲା ।

ରାତି ହେଲା । ତଥାପି ମାୟା ଆସିଲାନି । ତା ବଦଳେ ସେଇ ଅଳ୍ପ ବୟସ୍କା ନର୍ସ ଆସିଥାଆନ୍ତି । ତାଙ୍କର ହାବଭାବ ଆଚରଣ ବ୍ୟବହାରରେ ସନ୍ଧ୍ୟା ମନରେ ଯଥେଷ୍ଟ ଘୃଣା ଆସିଥାଏ । ଦୁଇଦିନ ତଳେ ନବାଗନ୍ତୁକା ଯୁବତୀ ନର୍ସ ଜଣକ କାମ ବିଜ୍ଞାନ ଦିହି ଧରି ପଡ଼ିବା ସନ୍ଧ୍ୟା ନିଜ ଆଖିରେ ଦେଖିଛି । ଖାଲି ସେତିକି ନୁହେଁ, ପରଦିନ ସକାଳେ ଓ୍ୱାର୍ଡର ଜଣେ ଯୁବକ କର୍ମଚାରୀ ସେ

ବହିଟି ହାତରେ ଧରି ଡାକ୍ତରଙ୍କ ପାଖରୁ ନେଇଗଲା ବେଳେ ସନ୍ଧ୍ୟା ଦେଖି ପାରିଛି । ତେଣୁ ପ୍ରତ୍ୟେକଙ୍କ ମନରେ ସନ୍ଦେହ ଓ ସ୍ୱତଃସିଦ୍ଧ ଭାବନା ଆସିବା କଥା ।

ଶରୀର ଗୁରୁଗମ୍ଭୀରତା ଭିତରେ ଯଦି ଜଣେ ଅବିବାହିତା ଯୁବତୀ କାମ ବିଜ୍ଞାନ ପଢେ, ତେବେ ଯୌବନର ବରଫ ପ୍ରବୃତ୍ତିର ଉତ୍ତାପରେ କଣ ହେଉ ନଥିବ । ଆଜି ସେତିକିବେଳେ, ନିକଟରେ କୌଣସି ଯୁବକର ଉପସ୍ଥିତି ଏଇ ନିର୍ମଳ ପବିତ୍ର ଧବଳବକ୍ଷରେ କି ଅଶ୍ଳୀଳତା ସୃଷ୍ଟି ନ କରିବ !!

ଇସ୍ କି କଦର୍ଯ୍ୟ ! ଛିଃ...... ।

ଘୃଣାର ବିଷୟବସ୍ତୁ ଉପରୁ ତା ଭାବନାକୁ ଘୁରାଇ ଆଣିଲା ସନ୍ଧ୍ୟା । ଭାବିଲା ମାମୁଁ କଥା । ମାମୁଁ ପାଇଁ ଯଥେଷ୍ଟ ଦରଦ ଆସିଯାଇଥାଏ । ମାମୁଁଙ୍କୁ ସେ ଖୁବ୍ ଭଲ ପାଏ । ଖାଲି ସେ ନୁହଁ, ଓ୍ୱାର୍ଡ଼ର ସମସ୍ତ ରୋଗିଣୀ ମାମୁଁ ଆସିଗଲେ "ମାମୁଁ ବାବୁ" ବୋଲି ଡ଼ାକି ପକାନ୍ତି । ତାର ଘରେ ଭାଉଜ ବି ମାମୁଁଙ୍କୁ ଖୁବ୍ ଶ୍ରଦ୍ଧା କରନ୍ତି । ମାମୁଁ ସହ ଦେଖା ନ କଲେ ଯାଆନ୍ତିନି ।

ରାତି ଖୁବ୍ ଜୋର୍‌ରେ ବଢ଼ି ଚାଲିଥାଏ । ସନ୍ଧ୍ୟାର ଭାବନା ବି ଠିକ୍ ତାଳ ଦେଉଥାଏ ।

ଡ୍ରେସର୍ ଆସି ସନ୍ଧ୍ୟାର ବ୍ଲଡ୍‌ପ୍ରେସର୍ ପରୀକ୍ଷା କରି ଗଲାବେଳେ କହିଗଲେ "ନର୍ମାଲ୍" । ତାପରେ ସନ୍ଧ୍ୟା ଶୋଇଗଲା ।

ତିନିଁ ଆଉ ଦିନ ସକାଳୁ ସନ୍ଧ୍ୟା ଇଂରାଜି ବହି ପଢୁ ପଢୁ ଭାବିଲା, ସେଦିନ ସେ ସ୍ତ୍ରୀ ଲୋକଟି ପାଇଁ ଏତେ ବଡ଼ ଲମ୍ବା ଚିଠିଟିରେ ଏତେ ଦରଦତା, ବ୍ୟାକୁଳତା ଓ ଆନ୍ତରିକତା ଢାଳି ଲେଖିଥିଲା ତାର ସ୍ୱାମୀ ନିକଟକୁ । ହେଲେ, କାହିଁ ପ୍ରତିକ୍ରିୟାତ କିଛି ହେଲାନି । ତା ସ୍ୱାମୀ ଆସିଲେନିତ । ହୁଁ ଖଣ୍ଡିଏ ଚିଠି ବା କି ପ୍ରତିକ୍ରିୟା ସୃଷ୍ଟି କରିବ ! ଏମିତି ହଜାର ହଜାର ଚିଠିର ମୂଲ୍ୟ ବା କଣ ? ରକ୍ତ ମାଂସ ଶରୀରର ପ୍ରତ୍ୟେକ ଇନ୍ଦ୍ରିୟ ଓ ସ୍ନାୟୁର ବ୍ୟାକୁଳତା ଓ ଆର୍ତ୍ତନାଦ ଯଦି କିଛି ସ୍ପନ୍ଦନ ତୋଳି ପାରିନି, ଗୋଟିଏ ନିର୍ଜୀବ କାଗଜ ଉପରେ ଲେଖିଲା ଅକ୍ଷର ବା କି ଚଞ୍ଚଳତା ସୃଷ୍ଟି କରି ପାରିବ ?

ଏତିକି ଭାବି ସେ ଟିକିଏ ଥକିଗଲା । ଅନ୍ତର ଭିତରୁ ଗୋଟାଏ ମୋଟା ବସ୍ତୁର କୋହର ସୁଅ ଶ୍ୱାସନଳୀର କ୍ଷୁଦ୍ର ରନ୍ଧ୍ରଦେଇ ଉପରକୁ ଉଠି ନପାରି ବହୁତ କଷ୍ଟ ଦେଲା ତାକୁ । ନିଜର ବଗତଟି ତାକୁ ବିବ୍ରତ କରି ଦେଲା । ଅନ୍ତରଭିତରର ଅବରୁଦ୍ଧ କୋହ ଫୁଲି ଫୁଲି ଗ୍ରନ୍ଥିଟାକୁ ଉଚ୍ଚା କରି ଦେଲା । ଦୃଷ୍ଟି ଶକ୍ତି ବି କମି ଆସିଲା ହଠାତ୍ । ଭ୍ରମ ହେଲାପରି ଝଟିଆ ଉପରେ ଢୁଲ୍‌କିନା ପଡ଼ିଗଲା । ଡ଼ର ଓ ଭୟରେ ଥରି ଉଠିଲା ସେ । ଭାବିଲା ଜୀବନରେ କି ଭୁଲ ନକରିଛି ସେ । ମନକୁ ମନ କହିଲା, ଭଗବାନ ମୋତେ ବୁଦ୍ଧି ଦିଅ, ଶକ୍ତି ଦିଅ, ସାହସ ଦିଅ । ମୁଁ ଦୋଷସ୍ୱୀକାର କରେ ତାଙ୍କର ନିକଟରେ ।

ତାର ଆଖି ଦୁଇଟି ଅଠାଳିଆ ଲୁହରେ ବୁଜି ହୋଇଗଲା । ଆଉ ଖୋଲି ପାରିଲାନି ।

ଏତିକିବେଳେ ସୁରଭି ତାକୁ ହଲାଇ ଦେଇ ପଚାରିଲା, "ଦେଈ, କଣ ହେଲା ତୁମର ? ଦେଈ··· ! ଦେଈ ମ··· !"

ସନ୍ଧ୍ୟା ପ୍ରକୃତିସ୍ଥ ହୋଇ ବସିଲା । କହିଲା, "ନା··· । ସେମିତି କିଛି ନୁହଁ । ବସି ବସି ହଠାତ୍ ଉଠି ପଡ଼ିଲିନା ମୁଣ୍ଡଟା ଘୂରେଇ ଗଲା ।"

—"ନା ଦେଈ ମିଛ କହୁଛ । ତୁମ ଆଖିରେ ଲୁହ··· !"

ସନ୍ଧ୍ୟା ଆଖିରେ ଅଞ୍ଚଳ ପରଶ ଦେଇ ଲୁହଟିକକ ପୋଛି ଆଣିଲା । ଦୋଷୀଟିଭଳି ଝାଉଁଳି ପଡ଼ିଲା ବି । ଭାବିଲା, ସୁରଭି ତାଠାରୁ ବୟସରେ କେତେ ସାନ । ହେଲେ, ଜୀବନରେ ପ୍ରଥମଥର ପାଇଁ ଧରା ପଡ଼ିଲା ତାର ପାଖରେ ।

ନିଜ ଲୁଗାକୁ ସଜଡ଼ା ସଜଡ଼ି କରି ଟିକିଏ ଦମ୍ଭ ନେଇ ବସିଲା । ନିରବରେ ଅଖିତକୁ ଦୁରେଇଲା ଭିତରେ ପୁଣି ଭାବିଲା, ରକ୍ତ ମାଂସର ପ୍ରେମ ଓ ଭଲ ପାଇବା କେବେ ଲୁଚି ପାରେନା । ଯଦି ବା ଲୁଚିବ, ଅଳ୍ପ ସମୟ ପାଇଁ । ଶେଷରେ ନିଶ୍ଚୟ ବାହାରେ ଧରା ପଡ଼ିବ । ଆଜି ସେତିକିବେଳକୁ ସମସ୍ତ ବୁଝିଲେ ଯିବଣି ଏବଂ ପରିସ୍ଥିତି ବି ଭୟଙ୍କର ହେଇ ଉଠିଥିବ । ବରଂ ନ ଲୁଚେଇବାହିଁ ଭଲ । ଜାଣନ୍ତୁ··· ସମସ୍ତେ ଜାଣନ୍ତୁ । ଦୁନିଆରେ ପ୍ରେମ କେଉଁଠି ନାହିଁ ? ଅଶ୍ଳୀଳତା କେଉଁଠି ନାହିଁ ? ବିନା ପ୍ରେମରେ ସୃଷ୍ଟି କାହିଁ ? ନିର୍ଜୀବର ବି ପ୍ରେମ ଅଛି । ତେଣୁ ଆପେ ଆପେ ରାସ୍ତା ଖୋଲି ଯିବ । ଡ଼େର

କଲେ ଶେଷରେ ସ୍ତ୍ରୀଟି ଘଞ୍ଚ ଜଙ୍ଗଲ ଭିତରେ ଚିର ଦିନ ପାଇଁ ଲୁଚିଯିବ । ନା କାହିଁ ଯାଇ ପାରିବ ; ନା ଫେରି ପାରିବ । ଭଲ ପାଇବାରେ ଭୁଲ୍ ହେଲେ ପ୍ରଳୟ ଘଟେ । କଥାରେ ଅଛି, ବ୍ୟତିକ୍ରମରେହିଁ ବିପ୍ଳବର ସୃଷ୍ଟି । ଆଉ ସତ୍ୟ ସନାତନରେ ହିଁ ଧରଣୀର ସୃଷ୍ଟି ଓ କ୍ରମବିକାଶ ।

ଏତିକବେଳେ ସୁରଭି ହଲାଇ ଦେଇ କହିଲା, "ଦେଖ...କଣ ଲାଗୁଛି ତୁମକୁ । ଏମିତି କାହିଁକି ହେଉଛ ? ଶୋଇଯାଅ ଟିକଏ । ଦେଖ... ଦେଖୁମ !

ସନ୍ଧ୍ୟା ହୋସ୍‌କୁ ଫେରି ଆସି କହିଲା, "ଏଁ...? ଉଃ...ଟିକଏ ପାଣି ଦେଲ ସୁରଭି । ମିଇବଏ ।"

ସୁରଭି ପାଣି ଦେଲା । ପିଇସାରି ତକିଆ ଉପରେ ମଥାଟିକୁ ଥୋଇ ଦେଇ ଶୋଇଗଲା ସନ୍ଧ୍ୟା । ସୁରଭି ତାର ମୁହଁରେ ଟିକଏ ପାଣି ବୋଳି ଦେଲା । ଶୀତଳ ପରଶରେ ସନ୍ଧ୍ୟା ଆଖି ବୁଜି ଶୋଇଗଲେ । ଅବଶ୍ୟ ଚେତନା ଶୂନ୍ୟ ହୋଇ ।

ବହୁତ ସମୟ ପରେ ଚେତନା ଫେରି ଆସିଲା । ସଞ୍ଜ ହୋଇ ଆସୁଛି । ନିଜକୁ ଅତି ଉଲ୍ଲାସ ମନେ କରି ଚେଷ୍ଟା କଲା ଆଖି ଖୋଲି ନିର୍ଭୟରେ ଦୁନିଆଟାକୁ ଟିକଏ ଚାହିଁବାକୁ ।

ମେ ଯେ ସଙ୍ଜ୍ଞାହୀନ ହୋଇ ବହୁତ ସମୟ ଯାଏ ପଡ଼ିରହିଥିଲା, ଏତକ ସେ ନିଜର ଶାରୀରିକ ଅସୁସ୍ଥତା ଓ ପାରିପାର୍ଶ୍ୱିକ ଅବସ୍ଥା ଓ ପରିସ୍ଥିତିରୁ ବୁଝି ପାରିଲା ।

ଭାଇ 'ଦେବ' ଖୁବ୍ ବ୍ୟାକୁଳ ଭାବେ ପଚାରିଲା, "ଅପା···! କଣ କିଛି ପିଇବ ?"

ସନ୍ଧ୍ୟା କଥା କହିବାକୁ ଅକ୍ଷମ । ତେଣୁ ମୁଣ୍ଡ ହଲାଇ ତାର ତୃଷ୍ଣାର୍ତ୍ତ ଜଣାଇଲା । ଆଗରୁ ପ୍ରସ୍ତୁତ ହୋଇଥିବା କମଳାରସ ଗ୍ଲାସଟି ବଢ଼ାଇ ଦେଲା ଭଉଣୀ 'ବିନ୍ଦୁ' । ସେତକ ପିଇ ସନ୍ଧ୍ୟା ଆଶ୍ୱସ୍ତ ଅନୁଭବ କଲା ।

ଆସ୍ତେ ଆସ୍ତେ ଆକାଶରେ ସଞ୍ଜ ଛୁଇଁଲା । ମାମୁଁ ବି ରାତି ଡ୍ୟୁଟିରେ ଆସିଥିଲା ସେ ଦିନ ।

ବହୁତ ସମୟ ଯାଏଁ ଭାଇ ଭଉଣୀ ସନ୍ଧ୍ୟା ନିକଟରେ ବସି ରହିବା ପରେ ସନ୍ଧ୍ୟାର ନିର୍ଦ୍ଦେଶ ଓ ଅନୁରୋଧରେ ବିଦାୟ ନେଇ ଚାଲିଗଲେ । କିଛି ସମୟ ପରେ ଓ୍ୱାର୍ଡ଼ର ଅନ୍ୟାନ୍ୟ ରୋଗିଣୀମାନେ ଆସି ଜମି ଗଲେ । ସମସ୍ତେ ତାର ଦୀର୍ଘ ସମୟ ଧରି ସଙ୍ଜ୍ଞାହୀନ ହେବାରେ ଦୁଃଖିତ ଓ ବିବ୍ରତ ହୋଇଥାଆନ୍ତି ।

ମାମୁଁ ସିରେଞ୍ଜ ଧରି ପହଞ୍ଚିଲା । ନରମ ଗଳାରେ କହିଲା, "ଅପା ଇଞ୍ଜେକ୍‌ସନ ।"

ସନ୍ଧ୍ୟା ଭାବିଲା ଡ଼ାକ୍ତରଗୁଡ଼ାକ ମୃତ୍ୟୁଠାରୁ ଆହୁରି କଷ୍ଟ ଦେଇ ଜୀବନଟାକୁ ବଞ୍ଚାଇବାକୁ ଚେଷ୍ଟା କରନ୍ତି । ଟିକିଏ ବି ଦୟା ଆସେନା ।

"ହଉ···।" କହି ହାତଟା ବଢ଼ାଇ ଦେଲା ସନ୍ଧ୍ୟା । ଇଞ୍ଜେକ୍‌ସନ ଦେଇ ମାମୁଁ ଚାଲିଗଲା । ଗପ ଜମେଇଥିବା ରୋଗିଣୀମାନେ ବି ଚାଲିଗଲେ ।

ସନ୍ଧ୍ୟା ଚେଷ୍ଟା କଲା ଶୋଇବାକୁ । କିନ୍ତୁ ପାରିଲାନି । ବହୁତ ରାତି ଯାଏ ନିଦ ହେଲାନି, ମାମୁଁ ସବୁ କାମ ସାରି ପହଞ୍ଚିଲା ତାର ନିକଟରେ । ମଶାରି ଟେକି ଚାହିଁଲା । ସନ୍ଧ୍ୟା ଆଖି ବୁଜି ଭ୍ରୂ କୁଞ୍ଚିତ କରି ପଡ଼ିଥାଏ । ସତେ ଯେପରି କୌଣସି ଦର୍ଶନ ଶାସ୍ତ୍ରର ଗଭୀରତା ଭିତରେ ହଜିଯାଇ ନିଜ ସତ୍ତା ହରାଇ ଦେଇଛି ।

ମାମୁଁ ଚରଣ ଦେଇ ସନ୍ଧ୍ୟାକୁ ଉଠାଇ ଉଠାଇ ପଚାରିଲେ, "କଣ ଅପା !···ଭଲ ଲାଗୁଛି ?"

—"ହଁ ଭଲ ଲାଗୁଛି । ହେଲେ ନିଦ ହେଉନି ।"

—"ହଉ··· । ଏଇ ନିଅ ବଟିକା । ଏଥର ନିଦ ହୋଇଯିବ ।"

ସନ୍ଧ୍ୟା ବଟିକାଟିକୁ ଗିଳି ଦେଇ ବସିଲା । ମାମୁଁଙ୍କ ତାର ପାଖରେ ।

ସନ୍ଧ୍ୟା ଆରମ୍ଭ କଲା, "ମାମୁଁ··· । ମୋ ଚିଠି ପାଇଛ ?"

—"ହଁ । ସେଇଥି ପାଇଁ ତ ଆଜି ଡ଼ିଉଟିକୁ ଆସିଲି ।"

—"ତୁମ ଜୀବନରେ ମୁଁ ଖୁବ୍ ଆଘାତ ଦେଇଛି ନା ମାମୁଁ ।"

—"ଛିଃ···ଅପା··· । ତୁମେ କଣ ଆଘାତ ଦେଇଛ !! କି ଅସମ୍ଭବ କଥା ! ଭୁଲ୍ ମୋର । ମୋତେ କ୍ଷମା ଦିଅ । ତୁମ ପାଖରେ ବି ମୁଁ ଆଜି ଦୋଷୀ ଓ ଘୃଣ୍ୟ ହୋଇ ପଡ଼ିଲି । ହେଲେ କଣ କରିବି ଅପା - ଥରେ ଗୋଡ଼ ଖସିଗଲେ···"

--"ଛାଡ଼ ମାମୁଁ । ମୁଁ କ୍ଷମା ମାଗିବି ଓ ତୁମେ କ୍ଷମା ମାଗିବ, ଏଥିରେ କଥା ସରେନା । ବରଂ ହୃଦୟ ଖୋଲି ଗପ ଭିତରେ ହିଁ ସବୁ ସମାଧାନ ହୋଇ ପାରିବ । ଆଚ୍ଛା କହିଲ, ତୁମେ ତା ପର ଦିନଠୁ ଆସିଲନି କାହିଁକି ?"

—"ସତ କହିବାକୁ ଗଲେ ମୋର ଜଣେ ବହୁତ ଦିନର ବନ୍ଧୁ ଡାକ୍ତରଖାନାରେ ଭର୍ତ୍ତି ହେଲେ । ଅତି ସିରିୟସ୍ କେସ୍ । ତେଣୁ ଆସି ପାରିଲିନି ।"

—"ମାନେ···ତାଙ୍କର କଣ ଆଉ କେହି ଆସି ନଥିଲେ ?"

—"ହଁ···ଆସିଥିଲେ । ତେବେ ମୋର ରହିବାଟା ବି ତାଙ୍କ ପାଖରେ ଆବଶ୍ୟକ ଥିଲା ।"

—"ବନ୍ଧୁ ଜଣକ କଣ ଘନିଷ୍ଠ ତୁମର ।" ନିସଙ୍କୋଚରେ ପଚାରିଲା ସନ୍ଧ୍ୟା ।

—"ମୋର ଦୂର ସମ୍ପର୍କୀୟ ଭାଇ ଓ ମୋର ସାର୍ ଥିଲେ ।"

—"ତାଙ୍କର ପାଖେ ପାଖେ ରହିବା ତୁମର ଆବଶ୍ୟକ ?"

—"ମୋତେ ରକ୍ତ ଦେବାକୁ ହେଲା ।"

—"କାହିଁକି ? ରକ୍ତ ଭଣ୍ଡାରର କଣ କୌଣସି ରକ୍ତ ମ୍ୟାଚ୍ କଲାନି ?"

—"ନା...ତାହା ନୁହଁ । ବହୁତ ଦିନ ତଳେ ଥରେ ସେ ଗୋଟିଏ ଏକସି୍‌ଡେ଼ଣ୍ଟରେ ଆଘାତ ପାଇ ଏଇ ଡାକ୍ତରଖାନାକୁ ଆସିଥିଲେ । ତାଙ୍କର ରକ୍ତ ଦରକାର ପଡ଼ିଲା । ସେତିକବେଳେ ରକ୍ତ ଭଣ୍ଡାରର କୌଣସି ବ୍ଲଡ ମ୍ୟାଚ୍ କଲାନି । ତେଣୁ ଆମେ ଯେତେ ଜଣ ତାଙ୍କ ପାଖରେ ଥିଲୁ ସମସ୍ତେ ନିଜର ବ୍ଲଡ ମ୍ୟାଚ କରିଥିଲୁ । କେବଳ ମୋର ବ୍ଲଡ଼ହିଁ ମ୍ୟାଚ୍ କରିଥିଲା । ମୁଁ ରକ୍ତ ଦେଇଥିଲି । ସେ ଭଲ ହୋଇ ଉଠିଥିଲେ ଆଉ ଏବେ ଯେତେବେଳେ ଦରକାର ପଡ଼ିଲା, ଅନ୍ୟ କୌଣସି ମ୍ୟାଚ୍ ବ୍ଲଡ଼ ଅପେକ୍ଷା ମୋ ବ୍ଲଡ଼ ନିର୍ଭର ଯୋଗ୍ୟ ବୋଲି ଡାକ୍ତର ପରାମର୍ଶ ଦେଲେ । ତେଣୁ ମୁଁ ରକ୍ତ ଦେଲି ।"

—"ହଉ...ତୁମ ଦେହର ରକ୍ତରେ ଫାଟି ପଡୁଛୁ । ତେଣୁ କିଛିଟା ରକ୍ତ ଦେବାରେ କ୍ଷତି କଣ ? ଆଚ୍ଛା...ସେ କପରି ଅଛନ୍ତି ?"

—"ଭଲ ନୁହଁ ।"

—"ମାନେ !"

—"କ୍ୟାନ୍‌ସର୍......" ଏହି ପଦକ କହିଲା ବେଳକୁ ମାୟାର ବାକ୍‌ରୁଦ୍ଧ ହୋଇଗଲା ।

—"କ୍ୟାନ୍‌ସର୍ !!! କଣ କହୁଛ ମାୟା !" ସନ୍ଧ୍ୟା ଆଶ୍ଚର୍ଯ୍ୟ ହେଲା ।

ଅଶ୍ରୁ ଗଦ୍‌ଗଦ୍ କଣ୍ଠରେ କହିଲା, "ହଁ...ଅପା । ଭଗବାନଙ୍କ ସାହା ଭରଷା । ଡାକ୍ତର କହୁଛନ୍ତି ଅପରେସନ୍ କଲେ ଭଲ ହୋଇଯିବେ । ତେବେ...ବିଶ୍ୱାସ କରି ହେଉନି । ତାଙ୍କର କଲିକ୍ ବହୁତ ଦିନରୁ ଥିଲା । କିନ୍ତୁ ନିଜ ଉପରେ ତାଙ୍କର ଅତ୍ୟାଚାରର ବଳ ପଡ଼ିଲା । ସେ ସବୁ କହିଲେ ଗତି ପାଇଯିବ । ଶେଷରେ ତାଙ୍କୁ ଏଇୟା ଭୋଗିବାକୁ ପଡ଼ିଲା । ଭଗବାନ କଣ କରୁଛନ୍ତି ଦେଖାଯାଉ ।" ମାୟା ନିଜ ଆଖିର ଲୁହଟିକିକ ପୋଛିନେଲା ।

ସନ୍ଧ୍ୟା ପଚ୍ଚାରିଲା, "ତାଙ୍କର ବୟସ ?"

—"ଚାଳିଶି ଡେଇଁଥିବେଣି ।"

—"ତାଙ୍କର ପିଲା ପିଲା ?"

—"ଏଭଳିକ ବଜକଟେ ବୋଲ ଝିଅ", କହି ମାୟା ଖୁବ୍ ଭଜ ପଡ଼ିଲା ।

ଅତି ଭାବପ୍ରବଣ ହୋଇ ସନ୍ଧ୍ୟା କହି ଚାଲିଲା, "ବାଃ କି ଦୁଃଖର କାହାଣିକା !! ଭଗବାନ କେବେ କେବେ ଅତି ନିଷ୍ଠୁର ହୋଇ ପଡ଼ନ୍ତି । ମନୁଷ୍ୟଙ୍କୁ ଅସ୍ତ କରି ପ୍ରକୃତି ସହ ବଳ କଷିଲା ବେଳେ ଟିକିଏ ବି ପଛକୁ ଚାହାନ୍ତିନି ।" ଏତକ କହି ଦୀର୍ଘ ନିଃଶ୍ୱାସ ଛାଡ଼ିଲା ।

ତାପରେ ଦୀର୍ଘ ନୀରବତା ଭାଙ୍ଗି ସେଇଗପ ଉପରୁ ଗୁରୁତ୍ୱ କମାଇବାକୁ ଯାଇ, ପୁଣି ପ୍ରଶ୍ନ କଲା ସନ୍ଧ୍ୟା, "ଆଚ୍ଛା ଆପଣଙ୍କ ଡ଼ାକ୍ତରବାବୁ କଣ ଫାରେନ୍ ଗଲେଣି ?"

—"ନା··· ।"

—"କେବେ ଯିବେ ?"

—"ଯିବାର କିଛି ଠିକ୍ ନାହିଁ ।"

—"କାହିଁକି ?"

—"ସେଇ ଭାଇଙ୍କ ଦେହ ଖରାପ ଯୋଗୁଁ ।"

—"କାହିଁକି ? ସେ ତାଙ୍କର କଣ ହୁଅନ୍ତିକି?" ସନ୍ଧ୍ୟା ଆଶ୍ଚର୍ଯ୍ୟ ବି ହେଲା ।

—"ସେ କହୁଛି କିଛି ।" ମାୟାଙ୍କ ସ୍ୱରରେ ଉତ୍ତର ଦେଇ ଚୁପ ରହିଲା ।

ଏତକ ସନ୍ଧ୍ୟା ଶୁଣି ଅବାକ୍ ହୋଇ ପଡ଼ିଲା । ଭାବିଲା, ଜଣକୁ କେନ୍ଦ୍ର କରି କେତେ ଜଣ ଆବଦ୍ଧ । ପୁଣି ଉଦ୍‌ବେଗ ଭରା କଣ୍ଠରେ ବ୍ୟଗ୍ରତା ନେଇ ସେ ପ୍ରଶ୍ନ କଲା, "କଣ କହୁଛି କିଛି ମ ! କହୁନା ··· । ଆରେ କୁହ ।"

—"କହୁଛି ଅପା···କହୁଛି । ହେଲେ ପ୍ରଶାନ୍ତବାବୁଙ୍କ ଠାରୁ ଯାହା ଶୁଣିଛି ତାହା କହୁଛି··· । ଯେତେବେଳେ ପ୍ରଶାନ୍ତବାବୁ ଖୁବ୍ ଛୋଟ ଥିଲେ, ତାଙ୍କର ବାପା ମାଁ କଲେରାରେ ମରିଗଲେ । ସେମାନଙ୍କର ପ୍ରଶାନ୍ତବାବୁ ଏକମାତ୍ର ସନ୍ତାନ । ତେଣୁ ଭାଇଙ୍କ ବାପା ମାଁ ତାଙ୍କୁ ଆଣି ପିଲାଠୁଁ ପାଳିଲେ ।

ତାପରେ ଆରମ୍ଭ ହେଲା ପ୍ରଶାନ୍ତବାବୁଙ୍କ ଛାତ୍ର ଜୀବନ । ସେ ଜଣେ ଖୁବ୍ ମେଧାବୀ ଛାତ୍ର ଥିଲେ । ଏପରିକି ତାଙ୍କର ଛାତ୍ର ଜୀବନର ପ୍ରତ୍ୟେକ ପରୀକ୍ଷାରେ ସେ ଫାଷ୍ଟ ଡ଼ିଭିଜନ୍‌ରେ ପାଶ୍ କରି ଆସିଛନ୍ତି ଆଜିଯାଏ । ଭାଇ ତାଙ୍କୁ ଖୁବ୍ ଭଲ ପାଉଥିବା ଯୋଗୁଁ ତାଙ୍କୁ ମେଡ଼ିକାଲ୍ ପଢାଇଲେ । ଖାଲି ସେତିକି ନୁହେଁ··· ଭାଇଙ୍କର ଇଚ୍ଛା ପ୍ରଶାନ୍ତବାବୁଙ୍କୁ ଫାରେନ୍ ପଠାଇବେ । କିନ୍ତୁ କଥାରେ ଅଛି man proposes God disposes । ତେଣୁ ତାଙ୍କର ଆଶା ଯେ ପୂରଣ ହେବ କିଏ କହିବ ?”

—“ଆଚ୍ଛା ତୁମ ଭାଇ କୁହ କିବା ସାର୍ କୁହ, ସେ କଣ ଖୁବ୍ ଧନୀ ?” ସନ୍ଧ୍ୟା ପ୍ରଶ୍ନ କଲା ।

—“ହଁ ଧନୀ ଓ ସମ୍ଭ୍ରାନ୍ତ ଘରର ବି···”

—“ଆଚ୍ଛା ମାୟା···! ତୁମେ ଯଦି କିଛି ନ ଭାବିବ ତେବେ ତୁମକୁ ଗୋଟିଏ କଥା ପଚାରିବି ।” ପୁଣି କହି ଚାଲିଲା, “ପ୍ରଶାନ୍ତବାବୁଙ୍କୁ ତୁମେ ଆଗରୁ ଜାଣିଥିଲ······ନା ଏବେ ଏହି ଡାକ୍ତରଖାନାରେ ତାଙ୍କ ସହ ପରିଚୟ ହେଲା ?”

—ନା···ଏଇଠି । ତାଙ୍କର ମେଡିକାଲ୍ ଦ୍ୱିତୀୟ ବର୍ଷ ବେଳେ···”

—“ବୁଝିଲି··· । ମୁଁ ବି ତୁମ କଥାରୁ ଠିକ୍ ସେଇଆ ଅନୁମାନ କରୁଥିଲି । ଆଚ୍ଛା···ତୁମ ଭାଉଜ କଣ ଆସିଛନ୍ତି ?”

—“ହଁ”, ମାୟା ଆଖି ଛଳ ଛଳ କରି କହିଲା ।

—“ସେ କେମିତି ?”

—“ତାଙ୍କ କଥା ଅଧିକ କଣ କହିବି ଅପା ! ହୁଏତ ଏତେଟା ସ୍ୱାମୀ ଭକ୍ତା, ଧୈର୍ଯ୍ୟଶୀଳା, କର୍ତ୍ତବ୍ୟପରାୟଣା, ସ୍ପଷ୍ଟବାଦୀନୀ, ଆଦର୍ଶନାରୀ ଏ ଧରାରେ ଥିବେ କି ନାହିଁ ସନ୍ଦେହ । ଖୁବ୍ ଉଚ୍ଚ ଶିକ୍ଷିତା ବି ।”

—“ଗୁଡ୍ ମାୟା । ଶୁଣିଲେ ଭାରି ଦୁଃଖ ଲାଗୁଛି । ଭଗବାନ ହିଁ ତାଙ୍କର ସାହା । ଆଚ୍ଛା ମାୟା···ନିଦ ଲାଗୁଛି ଶୋଇବି”, କହି ସନ୍ଧ୍ୟା ଅଳସ ହାଇ ଦିଟା ମାରିଲା ।

ମାଧୁ. ବ୍ଲିଗଲା । ସନ୍ଧ୍ୟା ନିଜକୁ ଅ.ଉଜା'ଇ ନେଲା ବିଛଣା ଉପରେ ।

ଆଖି ବୁଜି ଚନ୍ଦ୍ରାକୁ ଆବାହନ କରିବା ଭିତରେ ଭାବିଲା, ଏତେ ଉଚ୍ଚ ଶିକ୍ଷିତ ଓ ସମ୍ଭ୍ରାନ୍ତ ବଂଶୀୟ ହୋଇ, ନିଜ ଉପରେ ଅତ୍ୟାଚାର କରି, ଏତେ ବଡ଼ ସୁଖର ସଂସାରକୁ ଜାଳି ଦେଲେ କାହିଁକି ?

କରି ଲେଉଟାଇ ଦୀର୍ଘ ନିଃଶ୍ୱାସଟିଏ ଛାଡ଼ିଲା । ଗୋଟିଏ କରୁଣ ଇତିହାସକୁ ମନରୁ ଦୂରେଇ ଦେବାକୁ ଯାଇ ପୁଣି ଭାବିଲା, କିଏ ଜାଣେ କା' ମନ କଥା । ହେଲେ ଯହିଁ ଶୁଣୁଛି···ଖାଲି ଦୁଃଖର କାହାଣୀ । ଭଗବାନ କଣ ଟିକିଏ ବି ସୁଖର କାହାଣୀ ଶୁଣେଇବେନି ?

ଆଖି ପତା ଭିତରେ ଦୁଇଟୋପା ଲୁହ ରହିଗଲା । ଆଖିବୁଜି ହୋଇ ଗଲା । ଶୋଇଗଲା ସନ୍ଧ୍ୟା ।

ପରଦିନ ସେ ଶୁଣିବାକୁ ପାଇଲା, ଆଉ ଦୁଇ ଦିନ ପରେ ସେ ଡିସ୍‌ଚାର୍ଜ ହେବ ।

ଘରେ ଘରଜଙ୍କ ପାଖକୁ ଚିଠି ଲେଖିଲା । ବେହେରାକୁ ଦେଲା ଡାକ ଘରେ ପକାଇବା ପାଇଁ ।

ସୁରଭି ହସି ହସି ପହଞ୍ଚିଲା ସନ୍ଧ୍ୟା ନିକଟରେ । କହିଲା, "ଦେଖ ଆଜ ମୁଁ ଯାଉଛି ।"

—"ଆଜ !"

—"ହଁ ସଞ୍ଜବେଳେ ଯିବି । ବାପା ବୋଉ ଆସିବେ ।"

—"ଆଉ...ସେ...?" ପ୍ରଶ୍ନ କରି ସନ୍ଧ୍ୟା ହସିଲା ।

—"କିଏ...?" ସୁରଭି ନ ଜାଣିଲା ଭଳି ପଚାରିଲା । କିନ୍ତୁ ହସ ମାଧ୍ୟମରେ ଜଣାଇଥିଲା ନାରୀ ଜୀବନର ତୃପ୍ତି ।

—"ହଉ... । ବାହାଘର ଭୋଜି ଦେବତ ? କିଣ କଲେଜଂରେ ଥାର୍ଡଇୟର ପଢ଼ିବ; ନା ବାହା ହୋଇ ଚୁଲି ମୁଣ୍ଡରେ ସବୁ ପୋଡ଼ି ଦେବ ?"

—"ଦେଖ...ସବୁବେଳେ ତୁମର ସେଇ କଥା ଲୋ ।"

—"ଆରେ, ମୁଁ ବି ତ ମଣିଷ—ନାରୀ । ମୁଁ କଣ ନାରୀ ମନ ଜାଣେନି ?"

ସୁରଭି କଥା ବାଆଁରେଇବାକୁ ଯାଇ କହିଲା, "ଦେଖ ଶୁଣିଲଣି, ହେଇ ଟିକିଏ ଗୁହାଁ ସେହି ବେଞ୍ଚକୁ ।" ସଂକେତ ଦେଲା ସେଇ ସ୍ତ୍ରୀ ଲୋକର ଖଟିଆ ଆଡ଼େ ।

ସନ୍ଧ୍ୟା ଟିକିଏ ଆଶ୍ଚର୍ଯ୍ୟ ହୋଇ ପଚାରିଲା "ମଲା...ସେ କିଏ ମ ?"

—"ସେଇ ପରା ତାଙ୍କ ସ୍ୱାମୀ । ତୁମେ ଶଠି ହେଇ ନ ଥିଲ... ? ସେଇ ପରା ଆସିଛନ୍ତି । ସକାଳଠାରୁ ହବେଁ ବସି ବାହାରେ ଗପୁଥିଲେ ଏତେ ବେଳ ଯାଏଁ । ଏଇନେ ଆସି ବସିଛନ୍ତି ।......ଦେଖ ମୋତେ ଦେଖି ତାଙ୍କର ସେଇଁ ଲାଜନା...କଣ କହିବ ?"

ସନ୍ଧ୍ୟା ନାରୀ ସୁଲଭ କୋମଳତା ଭରି ମନ୍ତବ୍ୟ କଲା, "ସୁନ୍ଦରିଆ ସ୍ୱାମୀଟି ଏତ । କୁଆଡ଼େ ଆସିଛନ୍ତି ?"

ସୁରଭି ଝାମ୍ପ ଦେଇ କହିଲା, "ତୁମେ ହେଉଁଥି ପାଇଁ ଲେଖିଥିଲ । ହେଲେ, ତାଙ୍କ ଗପ କଣ ସରିଲାଣି ! ଗପ ସରିଲେ ସିନା କଣ ବୁଝିବା ।"

ସୁରଭି ଚାଲିଗଲା ଅନ୍ୟ ଖଟିଆ ଆଡ଼େ ।

ସନ୍ଧ୍ୟା ମନରେ ଟିକିଏ ଆଶ୍ୱାସନା ଆସିଲା । ଯାହା ହେଉ ତାର ଗୋଟିଏ ରାତିର ପରିଶ୍ରମ କିଛି ନା କିଛି ଫଳପ୍ରଦ ହୋଇଛି । ଭଗବାନ କରନ୍ତେ ତାଙ୍କର ଜୀବନ ଡ଼ୋରି ପୁଣି ଯୋଡ଼ି ହୁଅନ୍ତା କି ! ଏମିତି କେତେ କଣ ଭାବିଲା ।

ସେଦିନ ଠିକଏ ସୁସ୍ଥତା ଅନୁଭବ କରୁଥାଏ ସନ୍ଧ୍ୟା । ଆଉ ଦିଦିନ ପରେ ସେ ଚାଲିଯିବ । କିନ୍ତୁ ଏଇ କେତୋଟା ଦିନ, ସ୍ମୃତି ହୋଇ ରହିଯିବ ପଛରେ ।

ନିଜର ବିଗତଟିକୁ ଖୋଜୁ ଖୋଜୁ ଭାବିଲା, ଅବିବାହିତା ମନ କେତେ କିଣ ନ ଖୋଜେ ! ହେଲେ ସବୁ ହରାଇ ଦେଇଛି । ନାରୀ ଅବିବାହିତା ରହିବା କି କଷ୍ଟ !! ଅବିବାହିତା ଯୌବନଟା ଗୋଟିଏ ଅସ୍ପର୍ଶ-ଗୁପ୍ତ ଧନ ଭଣ୍ଡାର ଭଳି । ସେଥିରେ ସମସ୍ତଙ୍କର ଅଧିକାର ଥାଏ । ଯଦିଚ କେହି ନେଇ ପାରନ୍ତିନି, ତଥାପି ସମସ୍ତଙ୍କର ଇଚ୍ଛା ଟିକେଟି କରି ଲୁଚାଏ ନେଇଯିବା ପାଇଁ । ଏଣେ ନଗ୍ନ ଶରୀର ଉଷ୍ଣତାକୁ ମନର ସଂଯମତାରେ ଶାନ୍ତ କରିବା କି ଦାରୁଣ କଷ୍ଟ । ଅବିବାହିତ ଯୌବନର ବୟସ ଗଡ଼ିଗଲେ ସନ୍ଦେହ ଓ କଳଙ୍କର କି ବିଭତ୍ସ ରୂପ ଲାଗିରହେ ! କିନ୍ତୁ ବିବାହ କରି କୌଣସି ପୁରୁଷ ସହ ଯୋଡ଼ି ହୋଇ ଗଲେ ତାର ସମ୍ମାନ କି ବଢ଼ିଯାଏ !!!

ସତରେ, ପୁରୁଷର ଅଙ୍ଗସ୍ପର୍ଶ ବିନା ନାରୀର ବିକାଶ ନାହିଁ ।

ମନେ ପଡ଼ିଲା ତାର ବହୁ ଦିନ ତଳର କଥା – ନିଷ୍ଠୁର ସାଜି ସେ ଯେତେବେଳେ ଅଶୋକକୁ ମନରୁ ପୋଛି ଦେବା ପାଇଁ ଗୃହତ୍ୟାଗରେ ଯୋଗଦେଲା, କି ସାବଧାନତାରେ ତାକୁ ଚାଲିବାକୁ ହେଉଛି !! ପଦେ ପଦେ ସଂଯତ ହୋଇ, ପାଦେ ପାଦେ ଜଣା ଆଡ଼େଇ ଆଡ଼େଇ ତାକୁ ଚାଲିବାକୁ ହୋଇଛି । ହାଇସ୍କୁଲରେ ଶିକ୍ଷକତା କରି ପୁରୁଷ ଶିକ୍ଷକଙ୍କ ସମ୍ପର୍କରେ ଆସିଲାବେଳେ କନ୍ଦର୍ପର ଶତ ଆଘାତ ସେ ସହିଛି । ତିଳେ ବି ଟଳି ନଥିଲା ।

କିନ୍ତୁ···ଅନେକ ଦିନ ପରେ ତାର ନିସ୍ସଙ୍ଗତା ଓ ନିର୍ଜନତାର ସୁଯୋଗ ନେଇ ଦେଖାଦେଲେ ମନୋଜ ବାବୁ । ରୂପ···ଗୁଣ···ଯୌବନ କୌଣସିଥିରେ ସେ କମ୍ ନଥିଲେ । ହେଲେ, କାନ୍ତି···କମନୀୟ ଓ ଆଦର୍ଶ ଅଶୋକ ବାବୁଙ୍କ ତଳେ । ସେ ଯାହା ହେଉ, ମନୋଜଙ୍କ ଯୋଗୁଁ ଅବସ୍ଥା ଚକ୍ରରେ ପଡ଼ି ସେ ଚରିତ୍ରହୀନା ହୋଇ ପଡ଼ିଲା । ଅବଶ୍ୟ ପ୍ରେମ କମ୍ବା ଭଲ ପାଇବାର ତିଳେ ମାତ୍ର ସ୍ପନ୍ଦନ ମନୋଜବାବୁଙ୍କ ପାଇଁ ତାର ହୃଦୟରେ ଛୁଇଁ ନଥିଲା ।

ଯଦିଚ ସନ୍ଧ୍ୟା ଯୌବନର ପ୍ରବୃତ୍ତିକୁ କେତୋଟି ମୁହୂର୍ତ୍ତ ପାଇଁ ତୃପ୍ତି କରାଇ ପାରିଥିଲା, ତଥାପି ତାର ହୃଦୟ, ମନ, ବିବେକ ସମସ୍ତେ ବିରକ୍ତ ପ୍ରକାଶ

କରିଥିଲେ । ମନୋଜବାବୁଙ୍କୁ ସେ କେବେ ଭଲ ପାଇନ । ହଠାତ୍ ହେଲେ ତାଙ୍କର ପାଇଁ ବ୍ୟାକୁଳ ହୋଇନ । କେବଳ ଗୋଟିଏ ଦୁର୍ବଳ ମୁହୂର୍ତ୍ତରେ ଏକ ଘନ ଅନ୍ଧାର ବର୍ଷା ରାତିରେ, ସେ ଯେତେବେଳେ ଅଶାନ୍ତର ଅଶୋକବାବୁଙ୍କ କଳ୍ପନାର ଛବିକୁ ଛାତି ତଳେ ଜାକିଧରି ବାହାରର ଶୀତଆ ପବନକୁ ପ୍ରତିରୋଧ କରୁଥିଲା, ସେତିକବେଳେ ସହକର୍ମୀ ମନୋଜବାବୁ ଗାଡ଼ିରୁ ଓହ୍ଲାଇ ତାର ପାଖରେ ପହଞ୍ଚିଲେ ବର୍ଷା ସମୟଟକ ଆଶ୍ରୟନେବା ପାଇଁ ।······ରାତି ବଢ଼ିଚାଲିଲା—ବର୍ଷା ଶେଷ ହେଲାନି । ମନୋଜବାବୁଙ୍କ ବିଛଣା ତାର ଘରର ଅନ୍ୟ ଏକ କୋଠରୀରେ ଆଶ୍ରୟ ନେଲା । ଏଣେ ନିଜେ ଶୋଇବା କୋଠରୀରେ ବସି ସନ୍ଧ୍ୟା ଭାବୁଥାଏ ଅଶୋକବାବୁଙ୍କ ପ୍ରେମ ଓ ଅଶୋକବାବୁଙ୍କ ଅଭିମାନଭରା ଆଖିର ଲୁହ । ତାଙ୍କର କମନୀୟ ପ୍ରତିମୂର୍ତ୍ତିଟି ତାର ଶାଢ଼ୀ ତଳର ନଗ୍ନ ଶରୀରଟିକୁ ଅସ୍ତ ବ୍ୟସ୍ତ କରି ଦେଉଥାଏ ।

ଏତିକବେଳେ ଜନଶୂନ୍ୟ, ନିରୋଳା, ଘନ ଅନ୍ଧାର ବର୍ଷା ରାତିରେ ଉତ୍ତେଜିତ ନାରୀ ଯୌବନର ସୁଯୋଗନେଇ, ମନୋଜବାବୁ ପାଣି ବାହାନାରେ ସନ୍ଧ୍ୟା ଶୋଇଥିବା କୋଠରୀର କବାଟରେ ଆଘାତ ଦେଲେ । ଭାବନା ବିହ୍ୱଳତା ଭିତରେ ସନ୍ଧ୍ୟା ଭଲ ମନ୍ଦ ବାରି ନପାରି ଫାଟକ ଖୋଲିଲା । ବାହାର ଝଡ଼ର ଅଶାନ୍ତ ପବନରେ କବାଟଟି ବାଡ଼େଇ ହୋଇ ଲଣ୍ଠନଟି ଭାଙ୍ଗିଗଲା । ଗୃହଆଡ଼କୁ ମାଡ଼ି ଆସିଲା ଘଞ୍ଚ ଅନ୍ଧାର । ସେ ଅନ୍ଧାର ତା ଜୀବନରେ ଚିର ଅନ୍ଧାର ହୋଇ ରହିଲା । ଆନ୍ଦୋଳିତ ଓ ଉତ୍ତେଜିତ ପୁରୁଷ ଯୌବନର ଶଙ୍କିତ ନରମ ଡାକରେ ସନ୍ଧ୍ୟାର ଯୌବନ ପ୍ରତିରୋଧ କରି ପାରିଲାନି । ମନୋଜବାବୁ ଅତି ଚୁପା ଗଳାରେ "ସଂ···ଧ୍ୟା···" "ସଂ···ଧ୍ୟା" ଡାକଦେଇ ପାଖକୁ ପାଖକୁ ଘୁଞ୍ଚି ଆସିଲେ । ସତୀ ସନ୍ଧ୍ୟା ସେଇ ଅନ୍ଧାର ଭିତରେ ଚିର ଦିନ ପାଇଁ ହଜିଗଲା । ମନୋଜବାବୁଙ୍କ ନରମ ପାପୁଲି ସନ୍ଧ୍ୟାର ଶରୀର ଉପରେ କେତେ କଣ ଖୋଜିବାରେ ଲାଗିଲା । ପ୍ରତିରୋଧ ବଦଳରେ ଆତ୍ମସମର୍ପଣ କରିଭଲ ମନେକଲା ସନ୍ଧ୍ୟା । ବିବେକ ବିରୁଦ୍ଧରେ ନାରୀ ଯୌବନର ସଂଗ୍ରାମର ସୂତ୍ରପାତ ହେଲା । ଶରୀର ସମସ୍ତ ଶକ୍ତି ହରାଇ ବସିଲା ସେ ।

ବିଜୁଳିଟିଏ ଜଣାଇ ଚାଲିଗଲା—ସନ୍ଧ୍ୟା ଆତ୍ମସମର୍ପଣ କରିସାରିଛି । ଯୌନବର ବିଜୟ ଘଟିଛି । ସନ୍ଧ୍ୟା ହୃଦରେ ଲୁଗା ନାହିଁ ।

ମନୋଜବାବୁ ଚାଲିଗଲେ । ଗଲାବେଳେ କିଛି କହି ନାହାନ୍ତି । ଦୋଷ ସ୍ୱୀକାର କରି ନାହାନ୍ତି ବି । କବାଟଟି ଶୀତୁଆ ପବନରେ ବାଡ଼େଇ ହେବାରେ ଲାଗିଥାଏ । କେତେ ଯେ ବିଜୁଳି ତା ଶେଜ ଉପରେ ଚମକି ଯାଉଥାଏ ସନ୍ଧ୍ୟା କିଛି ମନେ ରଖିନି । ବାହାରର ଅନ୍ଧାର ଓ ଭିତରର ନିର୍ଜନତାକୁ ନିଜର ସାଥି ସାଜି ଖାଲି ଭାବିବାରେ ଲାଗିଛି "କଣ ହେଲା !!! "

ଅବହାହିତା ଜୀବନରଚିତ୍ର ଅନୁଭୂତି ସବୁ ସବୁ ସଫା ଦିନର ଫିକା ନିଦ ଆସିଗଲା ସନ୍ଧ୍ୟା ଆଖିରେ । ବହୁତ ବେଳଯାଏଁ ଶୋଇଗଲା । ଆଖିକଣରେ ଲୁହ ଦି ଧାର ଶୁଖିଗଲା ।

କିଛି ସମୟ ପରେ କାହାର ଉପସ୍ଥିତି ବାରିପାରି ସନ୍ଧ୍ୟା ଆଖି ମେଲିଲା । ସେ ସ୍ତ୍ରୀ ଲୋକଟି ଠିଆ ହୋଇ ଥାଆନ୍ତି ପାଖରେ । ଓଢ଼ଣା ତଳେ ତର ଘୋଡ଼ା ମୁହଁର ଆଖି ଦିଓଟି କେବଳ ଦିଶୁଥାଏ । ଲଜ୍ୟାରେ ସେ କିଛି କହି ପାରୁ ନଥାନ୍ତି ।

ସନ୍ଧ୍ୟା ଆରମ୍ଭକଲା, "କଣ ଭଉଣୀ··· । ଆପଣଙ୍କର ସେ କିଏ ଆସିଥିଲେ ?"

ଅତ୍ୟଧିକ ଲାଜରେ ଝାଉଁଳି ପଡ଼ିଲେ ସେ ସ୍ତ୍ରୀ ଲୋକଟି । ଆଖିରେ ତାଙ୍କର ଶାନ୍ତି ଓ ତୃପ୍ତିର ପରିପୂର୍ଣ୍ଣତା ଭରି ହୋଇ ରହିଥାଏ । କେବଳ ବାହାରକୁ ଆଖିଠାରି ସଙ୍କେତ ଦେଉଥାନ୍ତି ସେ ।

ସନ୍ଧ୍ୟା କିଛି ବୁଝି ନପାରି ଗୃହିଣୀଙ୍କ ବାହାର ବାରଣ୍ଡା ଆଡ଼େ । ସେଇ ଯୁବକ ଜଣକ ହାତ ଯୋଡ଼ି ଠିଆ ହୋଇ ଥାଆନ୍ତି । ସନ୍ଧ୍ୟା ପ୍ରତିନମସ୍କାର ଜଣାଇ ଉଠିଗଲା ବାହାରକୁ ।

ଯୁବକ ଜଣକ ଅପରିଚିତ ସ୍ୱରରେ ଆରମ୍ଭ କଲେ, "ଅପା···ତୁମକୁ ଦେଖିବା ମୋ ଜୀବନରେ ଗୋଟିଏ ସୌଭାଗ୍ୟ । ଏ ଭାଇକୁ କଣ କ୍ଷମା ଦେବନି ?"

—"ଆପଣ···?"

—"ହଁ···ମୁଁ ସେଇ ଅଧମ ସ୍ୱାମୀ, ଯାହାର ପାଖକୁ ତାର ସ୍ତ୍ରୀର ଦରଦଭରା ବୋଲି ଚିଠି ଦେଇଥିଲ ।"

ଜଣେ ଅପରିଚିତ ଯୁବକଠାରୁ ଏଇତକ ଶୁଣି ସନ୍ଧ୍ୟାର ମୁହଁ ତଳକୁ ନଇଁଗଲା ।

ଯୁବକ ଜଣକ ସନ୍ଧ୍ୟାର ହାତଟି ଧରି କହିଲେ, "ଅପା···! ଏ ଭାଇକୁ କଣ କ୍ଷମା ଦେବନି ?"

ସନ୍ଧ୍ୟାର ଅଜାଣତରେ ତାର ହାତଟି ଖସି ଆସିଲା । ମୁହଁ ଆହୁରି ତଳକୁ ନଇଁଗଲା ।

ସ୍ତ୍ରୀ ଲୋକଟି ସନ୍ଧ୍ୟାକୁ ଧରି ନେଇ ହଠାତ୍ କହି ପକାଇଲେ, "ଅପା ଆଜିଠୁଁ ମୋତେ ଭଉଣୀ ବୋଲି ନଡାକ ଭାଉଜ ବୋଲି ଡାକିଲେ ହୁଅନ୍ତାନି ।"

ସେତିକିବେଳକୁ ସନ୍ଧ୍ୟାର ଆନ୍ତରିକ ସ୍ନେହ ମମତା ଉଚ୍ଛୁଳି ଉଠିଲା । ସେ ସ୍ତ୍ରୀ ଲୋକଟିକୁ କୁଣ୍ଢାଇ ପକାଇ କହିଲା, "ଭାଉଜ···! ଆନନ୍ଦରେ ମୁଁ ଆଜି ଫାଟି ପଡୁଛି । ତୁମେ ଯାଅ, ସୁଖରେ ଜୀବନ କଟାଅ । ହେଲେ ଏ ଅପାକୁ ଯେପରି ଭୁଲି ନଯାଅ ।"

ସନ୍ଧ୍ୟାର ହାତ ବର୍ଣ୍ଣଟି ଖସି ଆସିଲା । ଆଖିରୁ ଆନନ୍ଦାଶ୍ରୁ ପୋଛିନେଲା ।

—"ଭାଉଜ···! ମୋ ଚିଠିଟି ମୋତେ ଫେରାଇ ଦେବନି", ପୁଣି କହିଲା ସନ୍ଧ୍ୟା ।

—"ଦେଇ···ନିଅ", କହି ଚିଠିଟି ଫେରାଇ ଦେଲେ ଭାଉଜ ।

—"ଆଉ···ମିଠେଇ କେବେ ପାଇବ ?"

—"ତୁମ ଭେଜ କେବେ ପାଇବ ଆଗେ କହନ୍ତୁ", ହସି ହସି କହିଲେ ଭାଉଜ ।

—"ମାନେ ?" ସନ୍ଧ୍ୟା ଜାଣିବାକୁ ଚାହିଁଲା ।

—"ସତେ ଯେପରି ବୁଝି ପାରୁନ। ।"

—"ସତରେ ବୁଝି ପାରୁନ ।"

—"ତୁମ···ବା···ହା···ଘର", ଏତକ କହି ଲାଜରା ମୁହଁଟିକୁ ଆଡ଼ୁର ଘୋଡ଼ାଇ ନେଲେ ଭାଉଜ ।

ଏତକବେଳେ ଯୁବକ ଜଣକ ଦୂରେଇ ଗଲେ ।

ସନ୍ଧ୍ୟା କହିଲା, "ଛିଃ··· । ଏମିତ କଣ କୁହନ୍ତୁ ଦେଢ଼ ଶାଶୁଙ୍କୁ ।"

—"ମ··· ।" ପୁଣି କାନରେ ଚୁପ। ଗଳାରେ କହିଲେ, "ମାଇପି ହୋଇ କଣ ବାହା ନହେବନ କ ମ ?"

—"ନ ହେଲେ କଣ ଚଳବନ ?" ସନ୍ଧ୍ୟା ଲାଜ ଲାଜ ହୋଇ କହିଲା ।

—"ହଁ···ସତେ ଯେପରି ବର ଗନ୍ଧୁଛ ।"

କଥାର ସୁଅ ବଦଳାଇ କହିଲା ସନ୍ଧ୍ୟା, "ଆଚ୍ଛା······ଭାଉଜ ସେ କିଏ ଅଛି······ ?"

—"ଓ···!! ତା କଥା କହୁଛ ! ସେ ଆଉ ନାହିଁ । ତାଙ୍କୁ ଠକଦେଇ ଅନ୍ୟ ସାଥୀରେ ଚାଲିଗଲା । ତାପରେ ପଚେ ବସନ୍ତରେ ଗଲା ସନ ମରିଗଲା । ହେଲେ···ଅପା, ତାଙ୍କର ବାହ ଭଲ ନାହିଁ ମ ।"

—"ଓ···ତା ହେଲେ ତୁମ ବହିଙ୍କ ସଂସାର ନିଷ୍କଣ୍ଟକ ନା !··· ଭାଉଜ, ତୁମର ଅଗାଢ଼ ସ୍ୱାମୀ ଭକ୍ତି ଓ ପ୍ରେମ ନିକଟରେ ଭଗବାନ ବି ହାର ମାନିଲେ । ତୁମର ଜିତା ହେଲା··· । ହଁ···କେବେ ଯାଉଛ ?···ସ୍ୱାମୀଙ୍କ ସେବାରେ ମନଦେଇ ଲାଗି ପଡ଼ିବଟି । ଅବଶ୍ୟ ତୁମକୁ ଉପଦେଶ ଦେବା ଅନାବଶ୍ୟକ । ହଁ··କେବେ ଯାଉଛ······ ?" ସନ୍ଧ୍ୟା ଅତି ସ୍ୱଷ୍ଟ ଭାବେ ସବୁ କହିଗଲା ।

—"ଏଇନେ" କହିଲେ ଭାଉଜ ।

—"ଓ··· ! ତା ହେଲେ ମନେ ପକାଉଥିବ । ପୁଅଟିଏ ହେଲେ ମୋ ପାଇଁ ତୁମେ ମିଠେଇ ଖାଇଦେବ" ସନ୍ଧ୍ୟା ହସି ହସି କହିଲା ।

ସେ ସ୍ତ୍ରୀ ଜଣକ ସନ୍ଧ୍ୟାର ଧରମ ଭଉଜ ହୋଇ ରହିଲେ ସେ ଦିନଠୁଁ । ସନ୍ଧ୍ୟାର ଡାକ ଠିକଣାଟା ନେଇ ବିଦାୟ ନେଲେ ସେ । ଆଖି ଲୁହରେ ଭରି ଯାଇଥିଲା । ଗଲାବେଳେ ସନ୍ଧ୍ୟାକୁ କୃତଜ୍ଞତା ଜଣାଇବାକୁ ଭୁଲି ନଥିଲେ ସେ। ବିଦାୟଟି ଅତି କରୁଣ ଝଙ୍କାର ତୋଳି ଥିଲା ଦିହିଁଙ୍କ ହୃଦୟରେ ।

ରାତି ହେଲା । ଓ୍ୱାର୍ଡ଼ଟିରେ ଲୋକ ଥିଲେ ବି ସନ୍ଧ୍ୟାକୁ ଶୂନ୍ୟ ଲାଗୁଥାଏ । ସୁରଭି ବି ଚାଲି ଯାଇଛି । ବହୁତ ପୁରୁଣା ରୋଗିଣୀ ଏ ଭିତରେ ଓ୍ୱାର୍ଡ଼ରୁ ବିଦାୟ ନେଲେଣି । ତାଙ୍କ ଜାଗାରେ ସବୁ ନୂଆ ରୋଗିଣୀ ଆସି ଥାଆନ୍ତି ।

ଆଉ ଦିନେ ଦୁଇଦିନ ପରେ ସେ ବି ଚାଲିଯିବ । ଡାକ୍ତର କହି ସାରିଲେଣି ।

ତେବେ ସମସ୍ତଙ୍କର ଭଲ କପରି ଖୁସିରେ ଯିବ ଅନ୍ତତଃ ପକ୍ଷେ ସୁଖ ଦୁଃଖର ଭାରସମ୍ୟ ରଖି ବିଦାୟ ନେବ, ଏଇଥିଲା ତାର ପ୍ରଧାନ ଚିନ୍ତା ଓ ଆଶଙ୍କା ।

ବସି ବସି ଏମିତି ଆଶଙ୍କା କରୁ କରୁ ଭାବିଲା, ଯେ କୌଣସି ବିପ୍ଳବ, ବିଦ୍ରୋହ ଓ ଇତିହାସରେ କିଛି ଗୋଟାଏ ମୃତ୍ୟୁ ବା କ୍ଷତି ନଘଟିଲେ ସମାଧାନ ହୁଏନା କିବା ସମସ୍ୟ ସରେନା । କେଉଁ ମୃତ୍ୟୁରେ ଇତିହାସର ସୃଷ୍ଟି ହୁଏ ଏବଂ କେଉଁ ମୃତ୍ୟୁରେ ଇତିହାସର ଅବସାନ ଘଟେ । ବିନା କ୍ଷତିରେ ଲାଭ ନାହିଁ—ବିନା ଦୁଃଖରେ ସୁଖନାହିଁ । ଗୁଳି ବାଜେ ସୈନ୍ୟଠାରେ ଆଉ ଜୟ ହୁଏ ଭୋଗ ବିଳାସ ଭରା ଦେଶର । ଦୁନିଆରେ ମୃତ୍ୟୁ ନଥିଲେ ସଂଗ୍ରାମ ବା ବିପ୍ଳବର ସମାଧାନ ହୁଅନ୍ତାନି । ସବୁବେଳେ ଏ ଧରାବକ୍ଷରେ ସଂଗ୍ରାମ ଲାଗି ରହିଥାଆନ୍ତା ।

ବାହାରେ ଯାଇ ଠିଆ ହେଲା ସନ୍ଧ୍ୟା । ଜହ୍ନଟା ଅସ୍ପଷ୍ଟ । ତଥାପି କିଛିଟା ଦେଖା ଯାଉଥାଏ ସେଇ ଅସ୍ପଷ୍ଟ ଜହ୍ନର ଆଲୁଅ ଭିତରେ । ସୁଦୁର ଓ୍ୱାର୍ଡଗୁଡ଼ିକରୁ ବାହି ହୋଇ ଆସୁଥିବା ଆଲୁଅ, ଧଳାଛିଟିକା ଭଳି ଦେଖାଯାଉ ଥାଏ । ଜନ ସମାଗମ ପ୍ରାୟ କମି ଯାଇଥାଏ । ଅମୀମାଂସୀତ ସମାସ୍ୟା ବହୁଳ ଜୀବନରେ ଏଇଦୃଶ୍ୟ ଅତି ମନୋରମ । ଦାର୍ଶନିକ ପ୍ରତି ଏକ ସୁଯୋଗ । କିନ୍ତୁ ଅନୁତପ୍ତ ବିରହିଣୀ ପ୍ରତି ଏକ ଦୁର୍ଯୋଗ । ନିର୍ଜନ, ନିଃଶବ୍ଦ ଅନ୍ଧାର ରାତିରେ ସୁଦୁର କ୍ଷୀଣ ଆଲୋକର ଛଟା ସୃଷ୍ଟି କରେ ମନ ଓ ବିବେକ ଭିତରେ ସଂଗ୍ରାମ ।

ସନ୍ଧ୍ୟା ବା ବାଦ୍‌ଯିବ କପରି ? ଅନ୍ତର ଭିତରେ ସୁଂପାତ୍ ହେଲ ବଗିଚ ସ୍ମୃତି ଭିତରେ ବିଦ୍ରୋହ । ତେଣୁ ଦୁଇ ଟୋପା ଲୁହକୁ ପୋଛି ଦେଇ ବଗିଚଟିକୁ ଭୁଲିବାକୁ ଚେଷ୍ଟାକଲ । ନିଜ ଜୀବନ ଉପରୁ ଭାବନା ଘୁରାଇ ଆଣି ଭାବିଲା ଅନ୍ୟ ଜୀବନ କଥା ।

ଏଇ ମାୟା···!······ସେ ଆଜ ଯୁବତୀ । ଖାଲି ଯୁବତୀ ନୁହଁ, ପ୍ରେମର ପୂଜାରିଣୀ । ଯେଉଁ ମାୟା ଦିନେ ଇତିହାସ ପଢ଼ୁଥିଲା, ଆଜ ତାର ଯୋଗୁଁ ଗୋଟିଏ ଇତିହାସ ବି ସୃଷ୍ଟି ହୋଇ ଯାଉଛି ।

ଏମିତି କେତେ କଣ ଭାବିବାକୁ ଲଗିଲା । ଯାହାର ଆଦି ନାହିଁ କିବା ଅନ୍ତ ନାହିଁ । ଟିକିଏ ଖିଅ ଧରିଲେ ବେଜାଏ ସୂତା ବାହାରି ପଡ଼େ ଭାବନାର ବଣ୍ଡିଲ୍ ଭିତରୁ । ଶେଷରେ ଦୀର୍ଘନିଃଶ୍ୱାସଟିଏ ମାରି ଫେରି ଆସିଲ୍ ଝିଟିଆ ପାଖକୁ । ପାଟିରୁ ବାହାରି ପଡ଼ିଲା । "ଅଶୋକବାବୁ" ଆଖିରୁ ଝରିପଡ଼ିଲା ଦୁଇଟୋପା ଲୁହ ।

ସନ୍ଧ୍ୟା ଖାଇ ସାରି ଶୋଇବାକୁ ଯାଉଛି—ମାୟା ଝଡ଼ ବେଗରେ ଆସି ପହଞ୍ଚିଲା । ଯେଉଁ ତାହା ଶାଢ଼ୀ ଖଣ୍ଡେ ପିନ୍ଧିଛି । ବାଳ ମୁକୁଳା । ଆଖି ଫୁଲ ଫୁଲ । ନାଲି ପଡ଼ିଯାଇଛି ବି । ଜଣା ପଡ଼ୁଥାଏ ଯେପରି କୌଣସି ସଂଗ୍ରାମରୁ କ୍ଷତ ବିକ୍ଷତ ହୋଇ ଫେରୁଛି । ସନ୍ଧ୍ୟା ଆଶ୍ଚର୍ଯ୍ୟ ହେଲ୍ । ମନଭିତରେ କେତେ ପାପଚୁଲିଂ ଗଲା । ଶତ ଆଶଙ୍କା ଭରି ପଚାରିଲା, "ମାୟା ! ଭାଇଙ୍କର କଣ ହେଲା ! !"

—"ନା···ଅପା···ସେମିତି କିଛି ନୁହଁ ।"

ସନ୍ଧ୍ୟା ଆଶ୍ୱସ୍ତ ହୋଇ ପୁଣି ପ୍ରଶ୍ନ କଲା, "ତେବେ ତୁମର ଏ ରୂପ ଆଜ ଏମିତ କାହିଁକି ? କଣ ହେଇଛି ?"

—"କହିବାକୁ ଗଲେ ବହୁତ କଥା ଅପା । ମୁଁ କେବଳ ଆସିଛି ତୁମ ସହିତ ଟିକଏ ଦେଖା କରି ଚାଲିଯିବା ପାଇଁ । ଆଉ ହୁଏତ ତୁମ ସହ ଦେଖା ଦେଇ ନପାରେ ।"

—"ମାମୁ... !! ଏମିତ କଣ ଗୁଡ଼ାଏ କହିଯାଉଛ ମ । କଥା କଣ କୁହ... । ମୋ ରାଣ କୁହ । ଦେଖିଲ... ତୁମ ଆଖିରୁ ଲୁହ ଝରି ଝରି କେମିତି ଦିଶୁଛି । କୁହ... । କିଛି ଭୟ କରନି ମ । ବିଶ୍ୱାସ କର, ମୋତେ କହିଲେ ତୁମର କିଛି କ୍ଷତି ହେବନି ।"

—"କହିବି ଅପା । ବାହାରକୁ ଆସ... । ତୁମେତ ଜାଣ କବାଟ ଅଉ ଦିନ ରହିଯିବ । ହେଲେ ଖୁବ୍ କମ ସମୟ ଭିତରେ ଯେତିକି ପାରୁଛି ସେତକ କହିବି ।"

ଦୁହେଁ ମିଶି ବାହାରକୁ ଗଲେ । ଚେୟାରପଟକୁ ଧରି ଠିଆ ହୋଇ ମାମୁ ଆରମ୍ଭ କଲା ଦୁଃଖର କାହାଣୀ ଲୁହ ପୋଛି ପୋଛି—

—"ଅପା... । ଆଉ ବୋଧହୁଏ ଭାଇ ବଞ୍ଚିବେନି ।"

—"କାହିଁକି...?" ସନ୍ଧ୍ୟା ଆଶ୍ଚର୍ଯ୍ୟ ହେଲା ।

—"ଅପରେସନ୍ ପରେ ପରେ ସେ ସିରିୟସ୍ ହୋଇ ପଡ଼ିଛନ୍ତି । ଏ ଯାଏଁ ସେନ୍ସ ଫେରିନି । ପ୍ରଫେସର କହିଲେ ରକ୍ତ ଖୁବ୍ କମି ଯାଇଛି । ଏଣେ ବ୍ଲଡ଼୍ବେଙ୍କ୍‌ର କୌଣସି ରକ୍ତ ମ୍ୟାଚ କରୁନି । ତେଣୁ ଯାହା ପାରିବି ମୋତେ ହିଁ ଦେବାକୁ ପଡ଼ିବ । ଆହୁରି, ମୋତେ ପରୀକ୍ଷାକରି ଡାକ୍ତର କହିଲେ ଆଉ ଅଧିକ ରକ୍ତ ଦେଲେ ମୋ ଅବସ୍ଥା ବି ଭଲ ନ ହୋଇ ପାରେ । ଆଜି ରାତି ୧୨ଟାରେ ମୁଁ ରକ୍ତ ଦେବି । ଗଲା ରକ୍ତ ଦେଲା ପରଠୁଁ ମୋ ଆଖିକୁ ଭଲ ଦିଶୁନି । ତେଣୁ କ'ଣ ହେବ କିଛି ହେଉନି । ପ୍ରଶାନ୍ତବାବୁ ଆଜକୁ ୫ ଦିନ ହେଲା ନ ଖାଇ ନ ପିଇ ଜଗି ରହିଛନ୍ତି । ତାଙ୍କ ମନ ବି ଠିକ୍ ନାହିଁ । ଖାଲି ବସି କାନ୍ଦୁଛନ୍ତି । ଆଉ, ଭାଉଜଙ୍କ ଅବସ୍ଥା ବର୍ଣ୍ଣନା କରି ପାରିବିନି......ଅପା, ଭାଇଙ୍କର ଯଦି କଣ ହୁଏ, ତେବେ ଏତେବଡ଼ ସଂସାରଟା କଣ ନହେବ !!

ସ୍ରେଷ୍ଟ ଝିଅଟିର ଅବସ୍ଥା ଭାବଲେ ଏ ଛାତିଟା ଫାଟି ପଡୁଛି······। ଅପା ! କଣ ହେବ ଭାଇଙ୍କ ଅବସ୍ଥା ! ! ବୋଧହୁଏ ଆଉ ଭାଇ ବଞ୍ଚିବେନି—" କହି ପିଲାଙ୍କ ଭଳି କାନ୍ଦିବାରେ ଲଗିଲା ମାୟା ।

ସନ୍ଧ୍ୟା ମାୟା ପାଟିରେ ହାତ ଦେଇ କହିଲା, "ଛି ମାୟା—ଏମିତି କୁହନି । ଭଗବାନ୍ କରନ୍ତୁ ସେ ଭଲ ହୋଇ ଯାଆନ୍ତୁ । ବିଚରା ତୁମ ଭାଉଜଟି କ ଦୁଃଖ କଷ୍ଟ ନ ଭୋଗିବେ । ଭୂଷଣ ଚାଲଗଲେ ନାରୀ ଆଉ ନାରୀ ହୋଇ ରହି ପାରିବନି । ସତୀ ସ୍ତ୍ରୀର ଲୁହ ଏ ଧରାର ଧୂଳି ସହିତ ମିଶି ଜଳି ଉଠିଲେ ସ୍ୱୟଂ ଭଗବାନ ବି ସହି ପାରିବେନି । ନା ମାୟା ଅଧୈର୍ଯ୍ୟ ହୁଅନି । ଭାଇ ନିଶ୍ଚୟ ଭଲ ହୋଇଯିବେ । ଆଧୁନିକ ବିଜ୍ଞାନ ଯୁଗରେ ଡାକ୍ତରଙ୍କ ସାମନାରେ ମୃତ୍ୟୁ କେବେ ଛୁଇଁ ପାରିବନା···"

"ମୁଁ ଆଶଙ୍କା କରୁନି ଅପା, ତେବେ ସେ ଯାହା ଅତ୍ୟାଚାର କରି ଯାଇଛନ୍ତି ନିଜ ଉପରେ ଏବଂ ତା ସହିତ କ୍ୟାନ୍ସର୍ ଭଳି ରୋଗର ପରିଣାମ ଯାହା, ସେଥିରେ ଭଲ ହେବାର ଆଶା ମରିଯାଉଛି । ଗୋଟିଏ ଯୁବତୀ ଝିଅ ପାଇଁ କେତୋଟି ପ୍ରାଣ ଆଜି ଭାସି ଯାଉଛି । ପ୍ରଫେସର୍ ନିଜେବି ହତୋତ୍ସାହ ହୋଇ ପଡ଼ିଲେଣି ।"

ସନ୍ଧ୍ୟା ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲା, "ତୁମେ ଏକଣ କହୁଛ ମାୟା ! ପୁଣି ଗୋଟିଏ ଝିଅ କାହିଁକି ଆସିଲା ଏ ଦୁଃଖର କାହାଣୀ ଭିତରକୁ ।"

—"ହିଁ···ଅପା । ଗୋଟିଏ ଝିଅ ପାଇଁ ସେ ଆଜି ଏତିକି କଷ୍ଟ ଭୋଗୁଛନ୍ତି । ଏତେ ଦୁଃଖ, ଏତେ ଲୁହ, ଏତେ କଷ୍ଟ, ଏତେ ତ୍ୟାଗ, ଏତେ ସାଧନା କୌଣସି ପ୍ରେମର ଇତିହାସରେ ଥିଲେ ମୁଁ ତାଙ୍କର ଗ୍ରନ୍ଥୀ ବୋଲି ଁ ବି କହି ଜାଣିଥିଲି । କିନ୍ତୁ ମୋର ସମସ୍ତ ସାହାଯ୍ୟ, ସହାନୁଭୂତି ଓ ନିବେଦନକୁ ସେ ଥରେ ହେଲେ ଗ୍ରହଣ କରି ନାହାନ୍ତି । କେବଳ ମୋତେ ବଞ୍ଚି ରହିବାକୁ ନିର୍ଦ୍ଦେଶ ଦେଇ ଆଜି ସେ ଚାଲିଯିବାକୁ ବସିଛନ୍ତି ।"

—"କଣ କହୁଛ ମାୟା ! ସେ ଝିଅଟି ପୁଣି କିଏ ?"

—"କେଜାଣି । ସେ କାହାକୁ କହି ନାହାନ୍ତି । କେବଳ ଏଇ ଡାଏରୀ ଖଣ୍ଡିକ ଲେଖି ଦେଇଯାଇଛନ୍ତି ଅପରେସନ୍ ପୂର୍ବରୁ । ତା ସାଥେ ସାଥେ

ତାଙ୍କର ସ୍ତ୍ରୀଙ୍କୁ ଅନୁରୋଧ କରିଛନ୍ତି କସ୍ମିନ୍‌କାଳେ ନ ପଢ଼ିବା ପାଇଁ । ଆଜି ସେ ୱିଅର ପରିଚୟ ଦେବାକୁ ଯାଇ କହିଛନ୍ତି—ଯିଏ ଦୁନିଆରେ ସବୁଠୁଁ ସୁନ୍ଦରୀ ଓ ଭଲ, ସେ ହେଉଛି ତାଙ୍କର ପ୍ରିୟା ?"

—"ମାୟା··· ଯେପରି ଭାବେ ତୁମେ ଗୋଟାଏ ଗପ ମୋ ଆଗରେ ରଚିଯାଉଛ । କେବେ ହୋଇ ଏଇ ଗପ ବାସ୍ତବ ରୂପ ନେଇ ପାରେନା ।"

—"ବିଶ୍ୱାସ କର ଅପା । ମୁଁ ବି ଜାଣିନଥିଲି । ଆଜି ସକାଳେ ଭାଉଜ ଏ ଡାଏରୀ ଖଣ୍ଡିକ ଓ ଗୋଟାଏ ଶିଶି ଦେଇ କହିଲେ, 'ମାୟା ଏଇତକ ଭାଇନା ରଖିଦେଇ ଯାଇଛନ୍ତି । ମୋ ଛଡ଼ା ଅନ୍ୟ ଯେ କେହି ପଢ଼ି ପାରିବ । ତେଣୁ ତୁମେ ଟିକିଏ ପଢ଼ି ଦେଖ କ'ଣ ସେ ଗୁହା'ନ୍ତି । କଣ ବା ଲେଖି ଯାଇଛନ୍ତି ।' ଅପା···ସକାଳଠୁଁ ଏବେ ବେଳଯାଏଁ ବସି ଖାସ୍ ଏଇ ଖଣ୍ଡିକ ପଢ଼ୁଥିଲି । ବହୁତ କଷ୍ଟରେ ସାରିଲି ହେଲେ କିଛି ବୁଝି ପାରିଲିନି । ଖାଲି ମୁଁ ନୁହେଁ, ଦୁନିଆରେ ଯେ କେହି ପଢ଼ିଲେ ବି ବୁଝି ପାରିବେନ । ଆଜି ବି ଏ ଡାଏରୀ ପଢ଼ିବା ପରଠାରୁ ମୋର ଧୈର୍ଯ୍ୟ ନାହିଁ । ଅପା···! କି ଦୁଃଖର ବିପ୍ଳବ କହିଲେ । ଦୁନିଆରେ କଣ ଭଗବାନ ବୋଲି କେହି ନାହାନ୍ତି ? ଏଇ ସବୁ ମୂର୍ତ୍ତି ଗୁଡ଼ାକ କଣ ସତରେ ପଥର ! !" କହି ମାୟା ଖୁବ୍ ଅଧୈର୍ଯ୍ୟ ହୋଇ କାନ୍ଦିଲା ।

—"ନା···, ଏମିତି କୁହନି ମାୟା । ଦୁନିଆରେ ଭଗବାନ ନିଶ୍ଚୟ ଅଛନ୍ତି । ନିଶ୍ଚୟ ଶୁଣିବେ । ନାରୀର ଡାକ ଯୁଗେ ଯୁଗେ ଭଗବାନ ଶୁଣିଛନ୍ତି । ନାରୀର ଭଗବାନ ହିଁ ସାହା । ମୋ କଥା ଶୁଣ । ଧୈର୍ଯ୍ୟ ଧର···ଛି···ଏତେଟା ଭଜ ପଡ଼ନ । ଏବେତ ରାତି ଏଗାରଟା ହେଲାଣି । ୧୨ ଟାରେ ରକ୍ତ ଦେବ ପରା···?"

—"ହିଁ···।" ଲୁହ ପୋଛି ପୋଛି ମାୟା ଉତ୍ତର ଦେଲା ।

—"ତେବେ ଯାଅ । ଆଉ ଡ଼େରି କରନା ।"

—"ଯିବି ସତ । ହେଲେ ଭାଉଜଙ୍କୁ କଣ କହିବି ?"

—"କଣ ତୁମେ ଏମିତି କହୁଛ ମ ମାୟା !" ଆଶ୍ଚର୍ଯ୍ୟ ହେଲା ସନ୍ଧ୍ୟା ।

—"ହିଁ ଅପା···। ଡ଼ାଏରୀଟା ପଢ଼ିଲେ ଜାଣନ୍ତି । ମୁଁ କାହିଁକି, ଯେ କେହି ବ୍ୟକ୍ତି ପଢ଼ିଲେ ମୋଭଳି ବିବ୍ରତ ହୋଇ ପଡ଼ିବ ।"

—"ଆଚ୍ଛା···, କେତେ ନମ୍ବର ବେଡ୍‌ରେ ଅଛନ୍ତି ତୁମ ଭାଇ ?"

—"୨୮ ନମ୍ବର—ମେଲ୍ ସର୍ଜିକଲ୍ ।"

—"ହଉ ଗୋଟିଏ କାମ କର । ମୋତେ ଡ଼ାଏରୀଟି ଦେଇଯାଅ ।" ମୁଁ ଟିକିଏ ଟିକିଏ କରି ପଢ଼ି ଦେଖିବି କଣ ଲେଖିଛନ୍ତି । ସକାଳେ ଯଦି 'ଦେବ' ଆସେ ତ ଭଲକଥା । ତା ହାତରେ ପଠାଇ ଦେବି । ନଚେତ୍ ମୁଁ ନିଜେ ଯାଇ ଦେଇ ଆସିବି ।"

—"ନା···ଅପା । ମୁଁ ଯିବା ସଙ୍ଗେ ସଙ୍ଗେ ଭାଇଜି ପଚାରିବେ । ଡ଼ାଏରୀଟି ମାଗିବେ । ଏ ଶିଶିଟି ବି ଅଛି ତା ସାଥିରେ" କହି ମାଧୁରୀ ଗ୍ଲୁକୋଜ ଶିଶିଟି ଦେଖାଇଲା ସନ୍ଧ୍ୟାକୁ ।

—"କଣ ମ କହୁଛ ! ଏ ଶିଶିଟି ପୁଣି କଣ ?"

—"ଆଜି କିଛି ଅଧିକ କହି ପାରିବିନି ଅପା", ମାଧୁରୀର ବାକ୍‌ରୁଦ୍ଧ ହୋଇ ଆସିଲା ।

—"ଆଚ୍ଛା ଭାଇଜିଙ୍କୁ କହିବ ତୁମ ଦେହ ଖରାପ ଥିଲା । ପଢ଼ି ପାରିନା । ଆଜି ଡ଼ାଏରୀଟା ମାଗିଲେ କହିବ—ରୁମ୍‌ରେ ଛାଡ଼ି ଦେଇ ଆସିଛି । ମୁଁ ଏ ଭିତରେ ପଢ଼ିସାରି ସକାଳେ ନେଇଯିବି । ସବୁ ବୁଝାଇ ଦେବି । ନାଇଁ ଯଦି ଅତି ଆବଶ୍ୟକ ହୁଏ, କୌଣସି ବେହେରା ହାତରେ ଖବର ଦେବ—ମୁଁ ପଠାଇ ଦେବି ।"

—"ଅପା, ଏ ଡ଼ାଏରୀ ପଢ଼ିବା ତୁମର ଉଚିତ୍ ହେବନି । ତା ଭିତରେ ଖାଲି ଦୁଃଖର କାହାଣୀ, କେବଳ ଭଲ ପାଇବା ଉପରେ କେନ୍ଦ୍ର କରି ତାଙ୍କ ପ୍ରିୟା ପାଖକୁ ଲେଖିଛନ୍ତି ।"

—"ହଁ···ମାଧୁରୀ, ମୋତେ ଦେଇଯାଅ । ତୁମେ ରକ୍ତ ଦେବ । ବେଶୀ ଗୁଡ଼ାଏ ଭାବି ନିଜକୁ ଆଜି ଦୁର୍ବଳ କରନି । ମୋ କଥାଶୁଣ । ଭାଇଜି ଓ ପ୍ରଶାନ୍ତବାବୁ ତୁମକୁ ରହିଁ ବସିଥିବେ । ତୁମେ ଯାଅ ମାଧୁରୀ ।"

ଠିକ ଏତିକିବେଳେ ପ୍ରଶାନ୍ତବାବୁ ଧାଇଁ ଧାଇଁ ଆସିଲେ ଓ ଘନ ନିଶ୍ୱାସ ଭିତରେ ବ୍ୟାକୁଳତା ଭରି କହିଲେ, "ମାସ୍ନା···ଜଲ୍‌ଦି ଆସ । ଆଜି ଡିନର କରନା ।" ଥୋଡ଼ାଏ ନିଃଶ୍ୱାସ ନେଇ ସାରି ପୁଣି କହିଲେ, "ଭଇନା ଖୁବ୍ ସିରିୟସ୍ । ଜଲ୍‌ଦି ରକ୍ତ ଦରକାର ପଡ଼ିଲାଣି । ସମସ୍ତେ ଅପେକ୍ଷା କରିଛନ୍ତି । ତେଣେ ନୂଆ ବୋଉ ସେନ୍‌ସ୍‌ଲେସ୍ ।"

ମାସ୍ନା ଡାଏରୀ ଓ ଶିଶି ସନ୍ଧ୍ୟା ହାତକୁ ବଢ଼ାଇ ଦେଇ ଧାଇଁଲା— ପାଗଳଙ୍କ ଭଳି । ଆଜି ତା ସାଥିରେ ପ୍ରଶାନ୍ତବାବୁ ବି ।

ଦୁଇଟି ଚଞ୍ଚଳ ଯୋଡାର ଠପ୍ ଠପ୍ ଶବ୍ଦ ବେଳକୁ ବେଳ ବଢ଼ିବାରେ ଲାଗିଲା ।

ସନ୍ଧ୍ୟା ଚାହିଁ ରହିଥାଏ । ଆଉ ଶବ୍ଦ ଶୁଭିଲାନି । ଦୂର ଆକାଶର ଗୋଟିଏ ତାରା, ଗଛର ଘନ ଫାଙ୍କ ଦେଇ ଚାହିଁଥାଏ ତାକୁ । ସନ୍ଧ୍ୟା ବି ଏକ ଦୃଷ୍ଟିରେ ଚାହିଁଥାଏ ।

ଫେରି ଆସିଲା ବାହାରୁ । ଖଟିଆରେ ଶୋଇ ଆରମ୍ଭ କଲା ଡାଏରୀ ପଢ଼ା ।

ପ୍ରଥମ ପୃଷ୍ଠାରୁହିଁ ଅଟକିଗଲା । କିନ୍ତୁ ପରେ ଥକି ଥକି ପୃଷ୍ଠା ପରେ ପୃଷ୍ଠା ଓଲଟାଇଲା । ଗୁଡ଼ାଏ ଖାଲି ପୃଷ୍ଠା ପରେ·····ଜୁଲାଇ ୬ ତାରିଖ । ସେଠୁ ଲେଖା ଆରମ୍ଭ ହୋଇଛି ।

ଜୁଲାଇ ୬ ତାରିଖ ରାତି ୧୨ ଟା।

ହେ ମୋର ପ୍ରିୟା,

ଡାଏରୀ ମାଧ୍ୟମରେ ତୁମ ପାଖକୁ ଏ ମୋର ଶେଷଚିଠି । ଡାଏରୀର ଅନେକ ପୃଷ୍ଠା ଡେଇଁ ଆଜି ଲେଖୁଛି । କିନ୍ତୁ ଆଶଙ୍କା ଲାଗେ—କାଳେ ସମୁଦାୟ ଡାଏରୀ ଶେଷ ହେବା ପୂର୍ବରୁ, ହୃଦୟର ଆବେଗ ଓ ହୃତ୍‌ପିଣ୍ଡର ସ୍ପନ୍ଦନ ବନ୍ଦ ହୋଇଯିବ ।

ସେ ଯାହା ହେଉ ସମସ୍ତ ଓ ଦୂରନ୍ତ ଅଙ୍କର ସମାଧାନ ଠିକ୍ ହୋଇଛି କି ନା, ଡାଏରୀ ଯିଏ ପଢ଼ିବ ମୋ ସମାଧି ନିକଟରେ ସେ ଜଣାଇ ଦେବ ବୋଲି ମୋର ବିନୀତ ଅନୁରୋଧ ।

ସତରେ, ଜୀବନ ଦେଇ ତୁମକୁ ଭଲ ପାଇଥିଲି । ନାରୀ ହୋଇ ତୁମେ ଏତିକି ଟିକିଏ ପ୍ରତିଦାନ ଦେବା ଦୂରେ ଥାଉ, ଟିକିଏ ବୁଝିଲନି ବି । ଗୁପ୍ତ ପ୍ରେମର ପରିଣତି ଅତି ଭୟଙ୍କର ହୋଇ ପଡ଼ିଲା ମୋ ପକ୍ଷେ । ଉଃ··· । ନାରୀ ରହସ୍ୟମୟୀ, ଅବିଶ୍ୱାସିନୀ ବି ।

କଥାରେ ଅଛି—ମନର ବେଗଠାରୁ ଅଧିକ ବେଗ ଆଉ ନାହିଁ । ତେଣୁ ବହୁତ ଭାବ ଆସୁଛି । କିନ୍ତୁ ଶାରୀରିକ ବେଗ ନିର୍ଦ୍ଦିଷ୍ଟ ଯୋଗୁଁ କଲମ ସେତିକି ଆଗେଇ ପାରୁନି । ବହୁତ ଶବ୍ଦ ପଛରେ ପଡ଼ି ଯାଉଛି । ଶରୀର ବି ଆଜି ଖୁବ୍ କ୍ଲାନ୍ତ । ପୁଣି ଭାବନାଗୁଡ଼ିକୁ ଏକାଠି ଯୋଡ଼ିଲେ ଲେଖିବି । ଟା···ଟା ।

ଜୁଲାଇ ୭ ତାରିଖ ରାତି ୭ ଟା

କଣ କରିବି ? କିଛି ହେଉନି । ଅଶ୍ରୁର ବନ୍ୟା କୂଳ ଲଂଘି ବହି ଚାଲିଛି । ଦୁଃଖର ଚାପ ଏତେ ଉଚ୍ଚତା ସୃଷ୍ଟି କରିଛି ଯେ, ନେତ୍ର ସ୍ନାୟୁର ସଂକୀର୍ଣ୍ଣ ଓ ନିର୍ଦ୍ଦିଷ୍ଟ ପଥର ଦେଇ ଅଶ୍ରୁର ବେଗ ଖୁବ୍ ବଢି ଯାଇଛି । ଅତି ମାତ୍ରାରେ ବଢ଼ି ଯାଇଛି ଅଶ୍ରୁ ବନ୍ୟାର ପ୍ରକୋପ । ତୋଳି ଯାଉଛି ଅସାମାନ୍ୟ ଧ୍ୱଂସଲୀଳା । ବଡ଼ କଲବଲ ଲାଗୁଛି ମ

କଥାରେ ଅଛି—'ଦୁଃଖ ବାଣ୍ଟିଲେ କମ୍ପୁଛି ହୁଏ' । ତେଣୁ, ଏ ଡାଏରୀର ନିର୍ଜୀବ ପୃଷ୍ଠା ଉପରେ--ଶୁଷ୍କ ଧାର ମାଧ୍ୟମରେ--ତୁମ ପାଇଁ କହି ଦେଇ ଯାଉଛି । ତୁମେ ଯେ ଏହାକୁ ପଢ଼ିବ ବା କହୁଛି ମୋର ଦୁଃଖରୁ ଗ୍ରହଣ କରିବ, ଏ ଭାଗ୍ୟ ମୋର ନାହିଁ । ତଥାପି ତୁମେହିଁ ମୋ ଜୀବନର ପ୍ରିୟା । ତୁମ ପାଇଁ ସଞ୍ଚିତ ଏ ଡ଼ାଏରୀ ଭିତରେ ରଖି ଦେଇ ଯାଉଛି ।

ହିଁ···ସତରେ···, ମୁଁ ତୁମକୁ କେତେ ଭଲ ନପାଏ ! !

ରାତ୍ର ନିଶାସକ୍ତ । ମୁଁ ବି ନିଶାସକ୍ତ । ଖାଲି ସେତିକି ନୁହଁ ସୁରାର ନିଶା ସହିତ ଚାଲି ଦେଇ ବିରହର ନିଶା, ଅଶ୍ରୁର ନିଶା, ଭାବନା ଓ ଭାଷାର ନିଶା ବି ବଢ଼ି ଚାଲିଛି । କିଏ ଯଦି ମୋତେ ଏପରି ଅବସ୍ଥାରେ ଦେଖେ, କହିବ ପାଗଳ । ହୁଁ... ।.

ହେଲେ...କହିଲି ଦେଖି—ଏ ନିଶାର କଣ ଅବସାନ ନାହିଁ ? ସଞ୍ଜ କଣ ସକାଳ ଦେବନି ?

ଭଗବାନ୍ !...ତୁମର ଇଚ୍ଛା ।

ରାତ୍ର ୧୧ ଟା

ଶୋଇବାକୁ ଚେଷ୍ଟା କରି ବିଫଳ ହେଲି ।

ହେ ମୋର ପ୍ରିୟା ! ତୁମରି ଜଳଧୀ ବକ୍ଷରେ ଏ ଅଶ୍ରୁ ଶିଶିର କଣ ଛୁଇଁ ନା ?

ହଉ... । ହତଭାଗା ମୁଁ ।

ଆଜି ସିନା ତୁମ ଜଳଧୀ ଜୁଆରରେ ଭରପୁର ହୋଇ ନାଚୁଛି । ଦିନେ ନା ଦିନେତ, ଟିକିଏ ହେଉବା ନଶିଏ ହେଉ, ଭଟ୍ଟା ଆସିବ । ସେତିକି ବେଳେ ତୁମରି ଜୁଆର ଛୁଆଁ ବେଳା ଭୂଇଁରେ ଏ ଅଶ୍ରୁ-ଶିଶିର କଣ ଛୁଇଁବନି ?...ନିଶ୍ଚୟ ଛୁଇଁବ ।

ହେ ମୋର ପ୍ରିୟତମା... ! ତୁମେ ଟିକିଏ ଆଖି ଖୋଲି ଚାହଁ । ଏଯାଏଁ ଆଖି ବୁଜି ମାରବ ରହିଛ ବୋଲି ସିନା କିଛି ଦେଖି ପାରୁନା । ଏଣିକି ଟିକିଏ ଆଖି ମେଲି ବାହାରକୁ ଦେଖ । ଯଦି ଚାହିଁବ ଚାହିଁ...ମୋର ଅଶ୍ରୁ । ହେଇ ଦେଖ—କେବଳ ତୁମେ ବସିଥିବା ଏଇ ନଭଶ୍ଚୁମ୍ବୀ ଶୀଳାଖଣ୍ଡିକ ବ୍ୟତୀତ ଏ ସସାଗରାଧରା ମୋର ଲୁହ ଭିତରେ ବୁଡ଼ିବଲାଣି । ଦେଖ...ଏଇ ଶାନ୍ତ, ଉତ୍ତପ୍ତ ଅଶ୍ରୁ ସାଗରଟି ବକ୍ଷ ଭିତରେ ଏତେବଡ଼ ସବୁଜ ଧରଣୀକୁ ଧରି କି କଷ୍ଟ ପାଉଛି !!

ଜୁଲାଇ ୮ ତାରିଖ ରାତି ୯ ଟା ୩୦ ମିନଟ

ହେ ମୋର ପ୍ରଣୟୀ··· ! ତୁମେ ସିନା ଗୃହ ଚକ୍‌କଣୀୟ କୋଠାଉପରେ ବସି ଦିଗ୍‌ବଳୟକୁ ସୃଷ୍ଟି ସୌନ୍ଦର୍ଯ୍ୟ ଉପଭୋଗ କରୁ କରୁ ଆତ୍ମହରା ହୋଇ ପଡ଼ୁଛ । ହେଲେ···ଏ ଧରାକୁ ଟିକଏ ଚାହଁ । ଦେଖିବ—ତୁମର ଦଳାକୁଦା ଖୋଜ ଗୁଡ଼ିକ ଏ ଯାଏଁ ଲିଭିନ । ଏଧରା ସେମିତି ଜଗି ରହିଛି—କାଳେ ତୁମେ ଓହ୍ଲାଇଲେ ତୁମର ଓଜନିଆ ଖୋଜଗୁଡ଼ିକ ଏବୁକୁ ଉପରେ ଗ୍ରହଣ କରିବାପାଇଁ । ତୁମେ କଣ ଏ ଧରାର ଆନ୍ତରିକତା ବୁଝନା ?

ଏ ଧରାର ସଡ଼କ ଉପରେ, ଲୋଭନୀୟ ଶରୀରରେ କମନୀୟ ଆବରଣ ଗୁଡ଼ାଇ, ଗୁରୁଗମ୍ଭୀର ଖୋଜଥାଇ, ତୁମେ ଦୋକାନ ଦୋକାନ ବୁଲୁଛ ଯେ, କ'ଣ ଶାଢ଼ୀ କିଣିବ ? ହେଇ···, ସେ ଶାଢ଼ୀ ତୁମକୁ ଛୁଇଁଲେ ଆଜଠୁଁ ଏ ଆକାଶରେ କୁମାର ପୂର୍ଣ୍ଣିମା ତୁଳିବଟି ! ଏ ରତ୍ନ ପୁଞ୍ଜ କ କଷ୍ଟ ନପାଇବ ! ଅନୁମାନ କରି ପାରୁଛ ?

ବିଗତ ସ୍ମୃତିର ଖିଅରେ ଆଉ କେତେ ଭାବନା ଗୁନ୍ଥି ଯିବ ? ଶତ ସହସ୍ର ସ୍ମୃତି ଏ ବକ୍ଷରେ ଆଙ୍କି, ତୁମେ ଆଜ ନିଷ୍ଠୁର···ନିର୍ମମ ହୋଇ ଚାହିଁଛ ।

ସଚେତନ···। ମୁଁ ଖୁବ୍ ଅଭିମାନୀ ହୋଇ ପଡ଼ୁଛି । ଲେଖନୀ କ୍ଳାନ୍ତ ହେଲାଣି । ପରେ ଲେଖିବ । ଶୁଭରାତ୍ରି ।

ଜୁଲାଇ ୧୨ ତାରିଖ, ରାତି ୧୧ ଟା।

ହେ ପ୍ରିୟେ !···ଅଭିମାନ ଭରି ଯାଉଛି । କୋହ ଠେଲି ଠେଲି ଛାତିକୁ ବିଦୀର୍ଣ୍ଣ କରି ଦେଲାଣି । ଅନେକ ଦିନ ନୀରବ ରହି ଆଜ ମେଲି ବସିଛି ମୋ ଦୁଃଖର ପସରା ।

ହେଲେ ପ୍ରିୟେ ! ଭାଷାର ଅଭାବ ଯୋଗୁଁ ଦିନ ପରେ ଦିନ ଗଡ଼ି ଯାଉଛି । ପାରୁନି । ଭାଷା'ର ଅଭାବହିଁ ଲେଖିବାର ପ୍ରତିବନ୍ଧକ । ଭାବନାର ତାଳ ଓ ଲୟକୁ ଠିକ୍ ରଖି ଶବ୍ଦ ବ୍ୟବହାର କରିବା ମୋ ପକ୍ଷେ ବହୁତ କଷ୍ଟ ହେଉଛି । ସଂଯତ ଓ କ୍ଳୁପ୍ତ କରି ଲେଖି ପାରୁନି ।

ବଗିଚା ଶଠି ଗୁଡ଼ିକରେ ଅନ୍ଧାଧାନର ସମସ୍ତ ଶବ୍ଦ, ସାହିତ୍ୟ ଓ ଅଳଙ୍କାର ସାର ଦେଇଛୁ । ତେଣୁ ଅଭିଧାନଟିର ସମସ୍ତ ଶବ୍ଦ ହରେଇ ଛଟ ପଟ ହେଉଛୁ ।

ଶୁଭ ସଖୀ—

ଜୁଲାଇ ୧୪ ତାରିଖ ରାତି ୧୦ ଟା

ହେ ମୋର ସଖୀ···! ଚୈତ୍ର ପୂର୍ଣ୍ଣମୀରେ ସୋରଆ ନଈ କେତେ ସୁନ୍ଦର ଦିଶେ ! (ଥରେ ମୋ ସହିତ ଉପଭୋଗ କରିଥିଲ ମନେ ଅଛି ? ) ହେଲେ, ଦେଖିଲ···ଶ୍ରାବଣ ଅମାବାସ୍ୟାର ଘନ ଅନ୍ଧାର ଭିତରେ ଜୁଆର ଠେଲା ବନ୍ୟା ପ୍ଲାବିତ ନଦୀ କ କଷ୍ଟ ପାଉଛି ! !

ହେ ମୋର ସଙ୍ଗିନୀ ! ଦେଖ—ତୁମର ସଙ୍ଗ ବିଚ୍ଛେଦନରେ ଏତେବଡ଼ ଖେଳ ଭୂଇଁ ଜନଶୂନ୍ୟ ହୋଇ କାନ୍ଦୁଛି । ତୁମର ପରଶ ନ ପାଇ ଏ କୁଟୀରର ସମସ୍ତ ଆସବାବ ପତ୍ର ଅସଂଯତ ହୋଇ ପଡ଼ି ରହିଛି ! ତୁମର ପରଖିବା ବାଟ ଏ ପେଟ ଦେଖିଲା ରହିଛି । ତୁମର ହାତକୁ ଝୁରି ଝୁରି ଏଇ ହାତ ଘଡ଼ିର ସେକେଣ୍ଡ କଣ୍ଟା ଘଣ୍ଟା କଣ୍ଟାରେ ପରିଣତ ହେଲାଣି ।

ହେ ମୋର ଚନ୍ଦ୍ରା ! ବାସ୍ତବ ଦୁନିଆରୁ ଟେକି ନେଇ ସ୍ୱପ୍ନ ଭୂଇଁରେ ଠେଲି ଦେଲ ଯେ, ଏତେ ସ୍ୱପ୍ନ ପାଇଁ ରାତି କାହିଁ ?

ହେ ମୋର କବିତା ! ତୁମ ବିନା ଏ ଛନ୍ଦହରା ସୃଷ୍ଟି କରି କରି କାନ୍ଦି ବୁଲୁଛି । (ତୁମକୁ ଶୁଭୁନି ?) । ହେଲେ···ଏଇ ଶ୍ରାବଣର ବାଦଲ, ଶତ ସହସ୍ର ଝର ମେଳ ସେଇ ସୁରବନ୍ଧରେ ଯେଉଁ ଆଘାତ ଦେବ, ସହି ହେବଟି ?

ଗୁଡ···। ଅଭିମାନ ବଢ଼ି ଚାଲିଛି । ଶଠି ଲେଖା ଏ ଯାଏଁ ଆରମ୍ଭ ହେଇନି । କେତେ କାଳ ଏ କଲମ ଧରିବ କଏ ଜାଣେ ? ବିଜ୍ଞାନ ଯୁଗର ଆବିଷ୍କାର ଭଳି ଅଭିମାନ ପରେ ଅଭିମାନ ବଢ଼ି ଚାଲିଛି । ରାତି ବହୁତ ହେଲାଣି । ନିର୍ଜନତାର ଝଡ଼ ମୋତେ ଅବଶ କରି ସାରିଲାଣି । ପରେ···।

ଜୁଲାଇ ୧୬, ରାତି ୮ ଟା

ଲେଖି ଯାଉଛି, ହେଲେ ଲାଭ କଣ ?

ଏହାର ଉତ୍ତରରେ ମୁଁ ଏତିକି କହି ପାରେ—ମଣିଷ ପ୍ରକୃତି ସହ ଯୁଦ୍ଧ କରି ଶେଷରେ ପରାଜୟ ସ୍ୱୀକାର କରିବାକୁ ବାଧ୍ୟ ହେବ ବୋଲି ଜାଣି ସୁଦ୍ଧା ସଂଗ୍ରାମରତ ହୁଏ । ଜନ୍ମର ମୃତ୍ୟୁ ଅନିବାର୍ଯ୍ୟ ଜାଣି ସୁଦ୍ଧା ମଣିଷ ନୂତନ ଜନ୍ମ ଦେଇଯାଏ । ତେଣୁ···ଏ ଲେଖା ମୂଲ୍ୟହୀନ ଜାଣି ସୁଦ୍ଧା ଲେଖି ଯାଉଛି । କେବଳ କେତୋଟି ବାକ୍ୟ ହୋଇ ଇତିହାସରେ ମିଶି ରହିବ । ଯଦିଓ ଏ ଡ଼ାଏରୀ ଖଣ୍ଡିକ ତାର ଆୟୁଷ ଭିତରେ ତୁମକୁ ସ୍ପର୍ଶ କରି ପାରିବନି, ତଥାପି ତୁମେ ସ୍ପର୍ଶ କରିଥିବା ଧରାକୁ ଛୁଇଁ ପାରିବତ । ଏଇ ଆଶାନେଇ ଲେଖିଯାଉଛି ।

ଜଣେ କେହି ଇଂରେଜ ଲେଖକ ଲେଖି ଯାଇଛନ୍ତି—"ମନୁଷ୍ୟ, ନିଜର ଭାବନା ବା ବକ୍ତବ୍ୟକୁ ସାଧାରଣତଃ ଚାରି ପ୍ରକାରରେ ପ୍ରକାଶ କରିବାକୁ ହୁଏ । ପ୍ରଥମତଃ– କେତେ ଗୁଡ଼ାଏ ଏମିତି ବାକ୍ୟଥାଏ ଯାହାକି କେବଳ ସାକ୍ଷାତରେହିଁ କହିବାକୁ ହୁଏ । ଦ୍ୱିତୀୟତଃ—ଏମିତି କେତେ ବକ୍ତବ୍ୟ ଥାଏ, ଯାହାକୁ କି ନିଜେ ନ କହି ଅନ୍ୟଙ୍କ ଦ୍ୱାରା କୁହାଇବାକୁ ହୁଏ । ତୃତୀୟତଃ– କେତେ ଭାବନା ବା ବକ୍ତବ୍ୟକୁ କେବଳ ଲେଖିକରି ଜଣାଇବାକୁ ହୁଏ । ଚତୁର୍ଥରେ—ନିଜର ବ୍ୟବହାର, ନିଷ୍ଠା ଓ ସାଧନା ଦ୍ୱାରା ଉପରୋକ୍ତ ସବୁକୁ ପ୍ରମାଣ କରିବାକୁ ହୁଏ, ଏଥିରୁ ଗୋଟିକର ଅଭାବ ହେଲେ ମନୁଷ୍ୟ ନିଜକୁ ଦୁନିଆ ଆଗରେ ସଠିକ ପରିଚିତ କରି ପାରେନା ।

କେତେକ ଅନିବାର୍ଯ୍ୟ କାରଣ ଯୋଗୁଁ ଆଜି ଆଉ ଅଧିକ ଲେଖି ପାରୁନି । ହେଲେ, ଏଇଟା ନିସୃତ ସତ ଯେ ମୁଁ ଉପରୋକ୍ତ କୌଣସି ଗୋଟିକରେ ବି ସଫଳ ହୋଇ ପାରିଲିନି । ଅବଶୋଷ ରହିଗଲା ।

ହାୟରେ··· ! ମୁଁ ଆଜି ଯାହା ଲେଖୁଛି, ତାକୁ ମୁଁ ନିଜେହିଁ ବାର ବାର ପଢ଼ି ଶେଷରେ ଏକେତ ଚିରି ଦେବାକୁ ପଡ଼ିବ; ନଚେତ ତାକୁ ସାଥୀରେ ନେଇ ମୋର ସମାଧି ଭିତରକୁ ଯିବାକୁ ପଡ଼ିବ !

ଜୁଲାଇ ୨୦, ରାତି ୧୦ ଟା

ସଖୀ···! ଦୁନିଆରେ ଏତେ ନନ୍ଦ, ଏତେ ଝରଣା—ଏତେ ମିଳନ, ଏତେ ସୁଖ—ଏତେ ବ୍ୟାକୁଳତା, ଏତେ ଆନ୍ତରିକତା – ଏତେ ଦାନ, ଏତେ ପ୍ରତିଦାନ—ଏତେ ଜ୍ୟୋତ୍ସ୍ନା, ଏତେ ସୁଷମା ଭରି ହୋଇ ରହିଛି । କିନ୍ତୁ ମୋର କପାଳକୁ କେବଳ ଧକ୍କାର କଷାଘାତ ଓ ବିଷର ଜ୍ୱାଳା !!!

(ଛିଃ···ପ୍ରଭୁ ! ତୁମେ ଏକ ବିଚାର ! ତୁମର ତ ଏତେବଡ଼ ସାଗର ପଡ଼ିଛି । ପୁଣି କ'ଣ ଏମିତି ଅଭାବ ହେଲା ଯେ, ମୋର ଅନ୍ତରକୁ ଏତେ ଆଘାତ ଦେଇ, ବ୍ୟର୍ଥତା ଓ ହତାଶାର ନିଆଁ ଜାଳି ଅଶ୍ରୁ ଟିକିକ ନେଇଯାଉଛ ! ଏ ଅଶ୍ରୁ, ଏ ଶଙ୍କର ଭିତରେ ଥାଇ ଦିନେନା ଦିନେତ ତୁମରି ସୃଷ୍ଟିର ଏଇ ମାଟିରେ ମିଶିଥାଆନ୍ତା । ହଉ···। କଣ କରିବ ? ତୁମ ବିରୁଦ୍ଧରେ ମୋକଦ୍ଦମା କରିବା ପାଇଁ ଯେତେବେଳେ ଅଦାଲତ ନାହିଁ, ମୋର ବା ଚାରା କଣ ? ସର୍ବୋଚ୍ଚ ବିଚାରପତି ଯଦି ଅନ୍ୟାୟ କରେ, ତେବେ ତା ବିରୁଦ୍ଧରେ ଅଭିଯୋଗର ବିଚାର କରିବ କିଏ ?)

ଜୁଲାଇ ୨୧ ତାରିଖ ରାତି ୯ ଟା

ପ୍ରିୟେ ! ···ଆଜି ପେଟର ଯନ୍ତ୍ରଣା ସାଥିରେ ଶରୀର ତାପ ବି ଟିକିଏ ବଢ଼ି ଯାଇଛି । ଭୀଷଣ କଷ୍ଟ ପାଉଛି । କିଏବା ଲେଖିବ ?···ହେଲେ ମନେ ପଡ଼େ ବଧ୍ରୁ ୭ ଦିନ ତଳର ଗୋଟିଏ ସ୍ମୃତି ।

—ଦିନେ, ବହୁତ ଦିନ ତଳେ ଏମିତି ଶାରୀରିକ ଯନ୍ତ୍ରଣା ଘେନେଇ ଆସିଥିଲି । ଆଉ ତୁମେ ତୁମରି ନରମ ପାପୁଲିର ସ୍ପର୍ଶରେ ଏ ଶରୀରର ସମସ୍ତ ବ୍ୟଥା ଦୂର କରି ଦେଇଥିଲ । ତୁମରି କୋଳରେ ମଥା ରଖି ଖୁବ୍ ସୁସ୍ଥ ଅନୁଭବ କରିଥିଲି ।

କିନ୍ତୁ···ସେଇ ଦିନର ପ୍ରିୟା, ଯାହାର ପାଇଁ ଏ ଛାତି ଫାଟି ପଡ଼ୁଛି ଏବଂ ଯାହାର ଧକ୍କା ଓ ଆଘାତ ଯୋଗୁଁ ମାନସିକ ଓ ଶାରୀରିକ ଯନ୍ତ୍ରଣାରେ ମୁଁ ଛଟପଟ ହେଉଛି, ଆଜି ନୀରବ । ପାଷାଣୀ ସାଜି ସେ ଆଜି ନିଷ୍ଠୁର···କାହିଁକି ?

ଏଇପ୍ରିୟା କଣ ସତରେ ସାଗର ତରଳ ବୋଲି ପର୍ବତ ନିଷ୍ପନ୍ଦ !

ହେଉ । ସେଇପ୍ରିୟାର ସତ ହେଉ । ହେଲେ, ସେଇ ପର୍ବତ ପାଷାଣ ବୁକୁରେ ବି ସମବେଦନାର ଅଶ୍ରୁ ବହେ । ଏଇ ସାଗର ବକ୍ଷରୁ ପାଣି ନେଇ ମୌସୁମୀ ଯେତେବେଳେ ସେଇ ନିର୍ଜୀବ ପାଷାଣ ପାହାଡ଼ ବୁକୁରେ ଧକ୍କା ଖାଏ, ଦେଖିଲ ତାର ବକ୍ଷରେ କି ଧାର ଧାର ଲୁହ ! ଅନ୍ତରର ସହସ୍ର ଫାଟ ଦେଇ କି କ୍ଷୀପ୍ରଗତିରେ ପଥର ବୁକୁରୁ ବି ଲୁହ ବହେ !

ଆଜି କିନ୍ତୁ ମୋର ଶତ ସହସ୍ର ମୌସୁମୀ ଛଟିର ଧକ୍କା ଖାଇ ସୁନ୍ଧା ପାଷାଣୀ ପ୍ରିୟାର ଟିକିଏ ବୋଲି ସ୍ପନ୍ଦନତା ନାହିଁ । ବରଂ ବ୍ୟାକୁଳ ଅଶ୍ରୁଭରା ମୌସୁମୀ ଛଟି ସବୁ ହରେଇ ବସିଛି ତାର ବକ୍ଷରେ । ଏ ଜୀବନଟା କି ଜୀବନ ଦେଖିଲ... ।

ଶୁଭଶ୍ରୀ —

ସନ୍ଧ୍ୟା ଆଉ ପଢ଼ି ପାରିଲାନି । ସେଇ ପୃଷ୍ଠା ପାଖରେ ଡାଏରୀଟି ଚେପି ଗଲା ଏବଂ ଡାଏରୀଟି ପ୍ରସାରିତ ହୋଇ ଯୋଡ଼ାଇ ଦେଲା ସମୁଦାୟ ଘଟଣାକୁ । ହୋସ୍ ଥାଇବି ନଥିଲା ଭଳି ଅନୁଭବ କଲା ସେ ।

ଆଖିରେ ତାର ଶତ ସହସ୍ର ଝର । ହାତ ଗୋଡ଼ ଶିଥୀଳ ଓ ନିର୍ଜୀବ ପ୍ରାୟ । ସେଇ ନିଷ୍ଠୁରତା ଭିତରେ ଅଶ୍ରୁର ସ୍ରୁଅ ଖୁବ୍ ପ୍ରଖର ହୋଇ ଉଠୁଥାଏ । ହୃଦୟ ସବୁ ଝାଳ । ଆବରଣ ଓଦା ହୋଇ ସାରିଲାଣି । ପ୍ରିୟା ପ୍ରତି ପ୍ରିୟର ଏତେଟା କଠୋର ଆକ୍ରମଣକୁ ନାରୀଜାତି କଣ ସହିପାରେ ?

ହଠାତ୍ ଗୋଟିଏ ସିଦ୍ଧାନ୍ତ ତା ବିବେକ ତଳେ ଆଶ୍ରୟ ନେଲା— ନା ସେ ଆଉ ପଢି ପାରିବନି । ମାପ୍ପା ପାଖକୁ ଯାଇ ତାର ଅସମର୍ଥତା ଜଣାଇ ଦେବ ।

ଏମିତି ଭାବିବା ଭିତରେ, ତା ପ୍ରିୟ ପାଇଁ କାନ୍ଦ ଉଠିଲାବି । ଏଇସବୁ ପଢିଲେ ଯେ କୌଣସି ନାରୀ ଯେ ଭାଙ୍ଗି ପଡ଼ିବ ଏଥିରେ ସନ୍ଦେହ ନାହିଁ । ସେଥିରେ ପୁଣି ସନ୍ଧ୍ୟା ତା ବାଦ୍ ଯିବ କିପରି ? ଡାଏରୀର ପ୍ରତିଟା ଅକ୍ଷରରେ ଅପରନ୍ତ ପ୍ରେମ କଲବଲ ହେଉଛି । ପ୍ରତ୍ୟେକ ନାରୀର ଲୋଭ ଓ ସହାନୁଭୂତି ଆସିବା ସ୍ୱାଭାବିକ ।

ନାରୀ ଚାହେଁ ପ୍ରେମ । ପୁରୁଷର ପ୍ରେମକୁହିଁ ନାରୀ ଭଲପାଏ । ପୁରୁଷ କିନ୍ତୁ ଭଲ ପାଏ ନାରୀକୁ—ନାରୀର ସୌନ୍ଦର୍ଯ୍ୟ ଯୌବନ ଓ ସଦ୍‌ଗୁଣକୁ । ତେଣୁ ପ୍ରେମିକକୁ ଇଂରେଜୀରେ କୁହାଯାଏ ଲଭେର୍ । ଆଉ ପ୍ରେମିକାକୁ କୁହାଯାଏ ବିଲଭ୍‌ଡ୍ । ନାରୀ କେବଳ ଆଶ୍ରୟ ଚାହେଁ ପୁରୁଷର ପ୍ରେମ ତଳେ । ପ୍ରେମରେ ତାର ଶାନ୍ତି । ପ୍ରେମରେ ତାର ମୁକ୍ତି ।

ତେଣୁ, ଡ୍ରାଏଭରରେ ଏ ଯେଉଁ ଅଜସ୍ର ପ୍ରେମ ଭରି ରହିଛି; ଗାଳି ଭରି ରହିଛି ତାହା ନୁହଁ, ଯେଉଁ ବ୍ୟାକୁଳତା ଓ ଆନ୍ତରିକତା ପଡ଼ି ରହି ଯାଉଛି, ତାକୁ କେଉଁ ସ୍ତ୍ରୀ ବା ସହି ପାରିବ ? ନାରୀ ଜାତିଟା ପ୍ରେମ ପାଇଁ ବ୍ୟାକୁଳ । ସ୍ୱାର୍ଥପର ବି । ଯେ କୌଣସି ନାରୀ ପ୍ରତି ଆକ୍ଷେପ କରି ଘୃଣା କଲେ ସମସ୍ତ ନାରୀ ଜାତିଟା ରାଗିଉଠନ୍ତି । ଅନ୍ତର ଭିତରେ ରକ୍ତ ଗୁଳିଲ ଗୈରିବାନ୍ତି । ଆଉ ଯଦି କୌଣସି ନାରୀ ପ୍ରତି ଆନ୍ତରିକ ସ୍ନେହ, ପ୍ରେମ ଓ ବ୍ୟାକୁଳତା ଦେଖନ୍ତି, ତେବେ ନିଜଠାରେ ଅଭାବ ଆବିଷ୍କାର କରି ହିଂସ୍ରକ ହୋଇ ପଡନ୍ତି । ଖାଲି ସେତିକି ନୁହଁ, କୌଣସି ଆନ୍ତରିକ ପ୍ରେମ ପ୍ରତି କୌଣସି ନାରୀର ଅବହେଳା ବା ପ୍ରତ୍ୟାଖ୍ୟାନ ଦେଖିଲେ, ସମସ୍ତ ନାରୀ ଜାତିଟା ବିମୁଖ ହୋଇ ଉଠନ୍ତି ।

ସନ୍ଧ୍ୟା ବା ବାଦ୍‌ଯିବ କିପରି । ସେଇ ରକ୍ତ ମାଂସର ପ୍ରବୃତ୍ତି ନେଇ ତାର ଜନ୍ମ । ସେ ବି ନାରୀ—ଆଉ ପ୍ରେମ୍ପସୀ ବି । ତେଣୁ ପ୍ରତିକ୍ରିୟା ସୃଷ୍ଟି ହେବା ସ୍ୱାଭାବିକ ।

ତାର ଜୀବନରେ ଯେ କୌଣସି ଅବହେଳିତ ପ୍ରିୟର ଆର୍ତ୍ତନାଦ ଖୁବ୍ ପ୍ରତିକ୍ରିୟା ସୃଷ୍ଟି କରେ । ତେଣୁ ଡ୍ରାଏଭର ପ୍ରତି ଶବ୍ଦରେ ସେ ଅଣନିଶ୍ୱାସୀ ହୋଇ ଉଠିଲା । କିନ୍ତୁ ନିରୁପାୟ । ନାରୀ ପାଇଁ ପରିସ୍ଥିତିର ପ୍ରତିବନ୍ଧକ ଅତି ନିଷ୍ଠୁର ଓ ନିର୍ମମ ।

ସନ୍ଧ୍ୟାର ଅନ୍ତର ଭିତରେ ଶତ ଆବାହନ ଜାଗି ଉଠିଲା ତାର ପ୍ରିୟ ଅଶୋକବାବୁଙ୍କ ପ୍ରତି । ଅନ୍ତରର କୋହ ଅସମ୍ଭାଳ ହୋଇ ପଡିଲା । ଶରୀରଟି ବରଫ ଭଳି ଘନୀଭୂତ ହୋଇ ଶେଷରେ ଅନିଚ୍ଛା ପ୍ରସୂତ ନିଦ୍ରା ବି ନିର୍ଜ୍ଜିବ ପ୍ରାୟ ହୋଇଗଲା । ଗୋଟାଏ ମୃତ ଶରୀରରେ ଟିକିଏ ଜୀବନ ଥିଲା ଭଳି ଅନୁଭବ କରୁ କରୁ ଭାବିଲା, କଣ କରିବ ? ରାତି ବହୁତ ବେଶୀ ହେଲଣି । ମାମୁଁ ବୋଧହୁଏ ରକ୍ତ ଦେଇ ଖୁବ୍ ଦୁର୍ବଳ ଅନୁଭବ କରୁଥିବେ । ସେଇ

ଅବସ୍ଥାରେ ବି ସେ ଅପେକ୍ଷା କରିଥିବ ଅପା କିଛି ଗୋଟାଏ ତଥ୍ୟ ଆଣି ପାରିବ—ଯେପରିକି ତା ଭାଇ ଜୀବନ ପାଇ ଉଠିବ । କିନ୍ତୁ ସନ୍ଧ୍ୟା ନିରୁପାୟ । ଡ୍ରାଏସଟି ପଡ଼ି ତାର ଅନ୍ତର ପ୍ରିୟ ଅଶୋକବାବୁଙ୍କୁହିଁ ଝୁରିବାରେ ଲାଗିଛି । ତାର ଇଚ୍ଛା ହେଉଥାଏ ଅଶୋକବାବୁଙ୍କ ପାଖକୁ ସେଇ ଘଡିରେହିଁ ଛୁଟିଯିବ । ଆଉ ମାଗିବ ଅଜସ୍ର କ୍ଷମା ।

ଏତିକି ବେଳେ ଜଣେ ନର୍ସ ଆସି କହିଲେ, "ଅପା ଶୋଇଯାଆନ୍ତୁ । ଅନିଦ୍ରା ରହିବା ତୁମ ପକ୍ଷେ ଭଲ ନୁହେଁ । ଲାଇଟ୍ ଅଫ୍ କରି ଦେଉଛି ।"

ସନ୍ଧ୍ୟା କିଛି ଉତ୍ତର ଦେଇ ପାରିଲାନି । ଭାବିଲା, ସମସ୍ତେ ତାକୁ ଅପା ବୋଲି ସମ୍ବୋଧନ କଲେଣି । ସମସ୍ତଙ୍କଠାରୁ ସେ ବୟସରେ ବଡ । ବୟସରେ ସାନ ହୋଇ ସ୍ନେହ, ପ୍ରେମ, ମମତା ପାଇବା ତାର ଭାଗ୍ୟରେ କଣ ଆଉ ନାହିଁ ? ବୟସରେ ସାନ ହୋଇ, ଆଦେଶ ଓ ନିର୍ଦ୍ଦେଶ ପାଇ ତାର ଆନ୍ତରିକତା ପ୍ରକାଶ କରିବାର ସୁଯୋଗ କଣ ଆଉ ନାହିଁ ?

ଏମିତି ଭାବି ଭାବି କରି ଲେଉଟାଇ ଚେଷ୍ଟା କଲା ତକିଆରେ ମୁହଁ ମାଡ଼ି ଶୋଇବାକୁ ।

ଡ୍ରାଏସ ଉପରେ ତାର ଗୁଣ୍ଡ ଖୁବ୍ ଜୋର୍‌ରେ ଚୁପି ଦେଇ ଶରୀର ଭିତରେ ସୃଷ୍ଟି କଲା ଗୋଟାଏ ନୂତନ ଶିହରଣ । ଖାଲି ଶିହରଣ ନୁହଁ ଜାଗରଣ ବି । ସତେ ଯେପରି ତାର ଗୁ ସମତଳ ହୋଇ ଯାଇଛି । ଶରୀର ସାରା ଦେଖା ଦେଲା ଉତ୍ତେଜନା । ପିଲାଙ୍କ ଭଳି କାନ୍ଦି ଉଠିଲା । ନିଜ ଭିତରେ ଆବିଷ୍କାର କଲା – ଗୋଟିଏ ସଜୀବ ଡ୍ରାଏସ ।

ନର୍ସ ଜଣକ ପୁଣି ପ୍ରଶ୍ନ କଲେ, "ଅପା କଣ ଲାଗୁଛି ?" ଏତିକି କହି ସନ୍ଧ୍ୟା ପାଖକୁ ଆସିବାକୁ ଉଦ୍ୟତ ହେଲେ ।

ସନ୍ଧ୍ୟା ଚମକି ଉଠିଲା । ଭାବିଲା, ଏକଣ ? ଗୁଣ୍ଡର ଡ୍ରାଏସଟା ପଛି ଏତେ ତଳକୁ ଖସି ଆସି ଧସି ପଡ଼ି ଯାଉଛି !

ନିଜକୁ ସଂଯତ କରି ନେଲା ସେ । ମୁହଁ ପୋଛୁଥିବା ତାହାନାରେ ଲୁହ ପୋଛି ନେଇ ମଥା ଟେକିଲା । ଡ଼ାଏରୀଟିକୁ ଖୁବ୍ ସାବଧାନତା ସହ ଲୁଚାଇ ନେଲା ଗୁପ୍ତ ଭାବେ । ତାପରେ କହିଲା, "ସିଷ୍ଟର୍, ମାପ୍ପା ବାବୁଙ୍କୁ ଟିକିଏ ଦେଖା କରି ପାରିବି ?"

—"ଏଇନେ ?"

—"ହଁ ଏଇନେ ।"

—"ନା···ସମ୍ଭବ ନୁହଁ । ମୁଁ ତାରି ପାଖରୁ ଫେରୁଛି । ସେ ବି ତୁମ କଥା କହୁଥିଲା ।"

—"ମୋ କଥା ? କଣ କହୁଥିଲା ?" ସନ୍ଧ୍ୟା ଶତ ଆଶଙ୍କା ଭରି ପ୍ରଶ୍ନ କଲା ।

—"ନା···ମ । ସେମିତି କିଛି ନୁହଁ । କହୁଥିଲା ଆପଣଙ୍କ ଯତ୍ନ ନେବାକୁ । ତା ବାହାରେ ତାର ଜଣେ ଅତ୍ମୀୟଙ୍କୁ ରକ୍ତ ଦେଇ ଦେଇ ହଠାତ୍ ଦୁର୍ବଳ ହୋଇ ପଡ଼ିଲା । ଅଧାରେ ରକ୍ତ ଦେବା ବନ୍ଦ କରି ତାକୁ ବିଶ୍ରାମ ଦିଆ ହେଉଛି, ଡ଼ାକ୍ତର ଜଗି ରହିଛନ୍ତି । କଥାହେବା ପାଇଁ ମନା ।"

ସନ୍ଧ୍ୟା ସବୁ ଶୁଣି ସାରି ନିର୍ବିକାରଭାବେ ବସି ରହିଲା । ଅସଂଯତ ଓ ଅସମ୍ଭାଳ ଭାବନାରେ ଅତି ବିବ୍ରତ ହୋଇ ପଡ଼ୁଥାଏ ସେ ।

ବ୍ୟାକୁଳତା ଭରି ପୁଣି ପ୍ରଶ୍ନ କଲା, "ଆଚ୍ଛା ରୋଗୀ ଜଣକର ଅବସ୍ଥା କିପରି ?"

—"ଅବସ୍ଥା ସେତେ ଭଲ ନୁହଁ"

—"ଆଜ···ମାପ୍ପାର ଭଉଜ···?"

—"ମାନେ···? ଆତ୍ମୀୟଙ୍କ ସ୍ତ୍ରୀ··· !"

—"ହଁ ।"

—"ସେ କଣ ମାପ୍ପାର ଭଉଜ ହୁଅନ୍ତି ?"

—"ହଁ ।"

—"ତା ହେଲେ ସେ ଆତ୍ମୀୟଜଣକ ମାପ୍ପାର ଭାଇ···!" ଆଶ୍ଚର୍ଯ୍ୟାନ୍ୱିତ ହୋଇ ପ୍ରଶ୍ନ କଲେ ନର୍ସ ।

—"ତୁମେ···ଏତେ ଆଶ୍ଚର୍ଯ୍ୟ ହେଉଛ ଯେ !"

—"ଆପଣ ବୋଧେ ଠିକ୍ ଜାଣନ୍ତିନ । ରୋଗୀ ଜଣକ ମାଷ୍ଟର ଭଲ ନୁହଁନ୍ତି । ଖୁବ୍ ଆତ୍ମୀୟ ମାତ୍ର । ତାହାର ଦୁନିଆକୁ ଫାଙ୍କିବାପାଇଁ ହଇ କୁହେ ।"

—"ସେ ଯାହା ହେଉ—କହିଲେ ଭଉଜଙ୍କ ଅବସ୍ଥା କପରି ?"

—"ସେ ବହୁତ କଥା । ଏଇ ଓ୍ୱାର୍ଡରେ ସେ ବି ଭର୍ତ୍ତି ହୋଇଛନ୍ତି । କେବିନ୍‌ରେ ଅଛନ୍ତି । ସ୍ୱାମୀ ଅପେକ୍ଷା ବରଂ ସ୍ତ୍ରୀଙ୍କର ଅବସ୍ଥା ଆହୁରି ସଙ୍କଟାପନ୍ନ । ପ୍ରଫେସର୍ ବର୍ତ୍ତମାନ ରୋଗିଣୀଙ୍କ ପାଇଁ ବ୍ୟସ୍ତ ।"

—"ମାନେ···ଏତେ ସିରିୟସ୍ !"

—"ହଁ···। ଆଠମାସରେ ଏବର୍ସନ ହୋଇଗଲା । ଅପରେସନ୍ ହେବ ।"

ଏତିକବେଳେ ଓ୍ୱାର୍ଡର ଜଣେ ରୋଗିଣୀ ଯନ୍ତ୍ରଣା ସହି ନପାରି ପାଟିକରି ଉଠିଲେ । ନର୍ସ ଜଣକ ଚାଲିଗଲେ ତାଙ୍କରି ପାଖକୁ । ସନ୍ଧ୍ୟା ତକିଆ ଉପରେ ମୁହଁ ମାଡ଼ି ବହୁତ କଣ ଭାବିବାରେ ଲାଗିଲା ।

ନାରୀ ବାହାରେ ଖୁବ୍ ଶକ୍ତ । କିନ୍ତୁ ସେଇ ଶକ୍ତତା କୋମଳତାର ବହିଃପ୍ରକାଶ । ଥରେ ତରଳିଲେ ସେ ଅଥୟ ହୋଇ ପଡ଼େ । ସନ୍ଧ୍ୟା ଠିକ୍ ସେଇଯା ହୋଇ ପଡ଼ିଲା । ଅତି ବ୍ୟାକୁଳ ଭାବେ ଦୌଡ଼ିଗଲା ମାଷ୍ଟ୍ରା ପାଖକୁ । ପାଗଳୀଙ୍କ ଭଳି— ।

କିନ୍ତୁ ଫିମେଲ୍ ଓ୍ୱାର୍ଡ । ସେଥିରେ ପୁଣି ରାତି । ତେଣୁ ଦରଓ୍ୱାନ୍‌ର ପ୍ରତିରୋଧରେ ଫେରି ଆସିଲା । ଅନ୍ଧକାରରେ ଦରଓ୍ୱାନ ବୁଝିବ କପରି ? ସେଇ ଯନ୍ତ୍ରଣାଦାୟକ ଖଟିଆ ଉପରେ ଗଡ଼ିଯାଇ ପୁଣି ଭାବିବାରେ ଲାଗିଲା ।

ନିଦ ହେଲାନି, ଡ଼ାଏଗୀଟା ଶେଜ ଉପରେ ପଡ଼ି ସେମିତି ବିକଳ ଭାବେ ଛଟ ପଟ ହେଉଥାଏ ।

ଏକା ନିଶ୍ୱାସରେ ଡ଼ାଏରୀଟାକୁ ଧରି ପୃଷ୍ଠାଗୁଡ଼ିକୁ ଓଲଟାଇବାରେ ଲାଗିଲି । ଭାବିଲି, ଏ ରାତିରେ ସକାଳ ଆଣିବାକୁ ହେଲେ ଡ଼ାଏରୀଟା ଚଢ଼ିବା ଦରକାର । ନିଦ ନଯାଉଥିବେଲେ ହେଉନ ଅନ୍ତତଃ ଡ଼ାଏରୀଟା ପଢ଼ି ସାରିହେବ ।

ନିରୁପାୟ ହୋଇ ଡ଼ାଏରୀଟାକୁ ମେଲି ବସିଲି । ଓ୍ୱାର୍ଡ଼ଟି ନିଶବ୍ଦ । ନିର୍ଜନତା ଓ ନୀରବତାର ଗର୍ଜନ ଭିତରେ ପୁଣି ଆରମ୍ଭ ହେଲି ସନ୍ଧ୍ୟାର ଡ଼ାଏରୀ ପଢ଼ା, ଯେଉଁଠି ଛାଡ଼ିଥିଲି, ସେଇଠୁ ଆରମ୍ଭ କଲି ।

ଜୁଲାଇ ୨୨ ତାରିଖ ରାତି ୭ ଟା

ହେ ପ୍ରିୟେ,

ଏ ମାନସିକ ଯନ୍ତ୍ରଣା ପାଇଁ ସିନା ତୁମରି ଆନ୍ତରିକତା ଦରକାର । ହେଲେ, ଏ ଶାରୀରିକ ଯନ୍ତ୍ରଣାକୁତ ଛଳନାରେ ତୁମରି କରର ପରଶ ଦେଇ ଦୂର କରି ପାରିଥାଆନ୍ତ ।

ହଉ··· । ଏବେ ଭଲପାଇ ତୁମରି ପରଶ ଆଶା କରିବାଟା ମୋର ଭୁଲ ହୋଇ ରହୁ ।

ଆଜି କିଛି ଭଲ ଲାଗୁନି । ଜୀବନଟା ଖୁବ୍ ଲମ୍ବା ବୋଧ ହେଉଛି । ହେଇ···କେତେ ଜଣ ସାଙ୍ଗ ଆସିଲେଣି । ତାଙ୍କ ସହ ସଙ୍ଗୀତ ପ୍ରତିଯୋଗିତା ଦେଖିଯିବା ପାଇଁ ପ୍ରତିଶ୍ରୁତି ଦେଇଛି । ତେଣୁ ଆଉ କିଛି ଲେଖିପାରୁନି ଆଜି । ପରେ ଲେଖିବି ।

ରାତି ଘ ୧୧-୩୦ ମିନିଟ

ପ୍ରିୟେ ! ଫେରିଲି । ବହୁତ ଖୁସୀ ଖବର ଆଣିଛି । କିନ୍ତୁ ଆଖିରେ ବେଜାଏ ଲୁହ ।

ସଙ୍ଗୀତ ସମ୍ମିଳନୀରେ ଅନେକ ବନ୍ଧୁଙ୍କ ଅନୁରୋଧରେ ମୋତେ ଖଣ୍ଡିଏ ଗୀତ ଗାଇବାକୁ ପଡ଼ିଲା । ମୋର ସର୍ବଶେଷ ଗୀତଟି—"କୋଟି

ନିରାଶାର ଅବଗୁଣ୍ଠନେ କଏ ଗୋ ଲୁଚିଛ ତୁମେ···" ଗାଇଲି, କଣ କହିବି ? କି ପ୍ରଶଂସା ! ହଲ୍‌ଟି ସାରା ପ୍ରଶଂସା ଓ କରତାଳିରେ ଭରପୂର ହୋଇଗଲା । ମୁଁ କିନ୍ତୁ ଗୀତ ଶେଷ ବେଳକୁ ବେହୋସ୍··· ।

ଏଇନେ କେତେ ଜଣ ସାଙ୍ଗ ଆସି ଗ୍ଲୁଡ଼୍ ଦେଇଗଲେ । ସାମନାରେ ପ୍ରଥମ ପୁରସ୍କାରଟି ହସୁଛି । ପେଟରେ କଲିକ୍ ଯନ୍ତ୍ରଣା ଜଣକ ହୋଇ ପଡୁଛି ।

ହେଲେ, ମୋ ଆଖିରେ ଏତେ ଲୁହ କାହିଁକି ଜାଣ ? ଗୀତଟି ତୁମ ପାଇଁ ଲେଖିଥିଲି । ତୁମର ଅବହେଳା ଓ ଧକ୍କାରେ ଯେଉଁ ଦୁଃଖ ଘନୀଭୂତ ହୋଇଥିଲା, ତାକୁ ରୂପ ଦେବାକୁ ଯାଇ ଏତେବଡ଼ ପ୍ରଶଂସିତ ଗୀତ ଲେଖିଥିଲି । ସୁର ଦେଇଛି ମୁଁ···ଆଜି ଗାଇଲି ବି ମୁଁ । ତେଣୁ କେତେ ଚମତ୍କାର ହୋଇ ନଥିବ କହିଲ । ସତରେ ଖୁବ୍ ଚମତ୍କାର ।

କେବଳ ଦୁଃଖ ରହିଗଲା— ତୁମକୁ ଶୁଣାଇ ପାରିଲିନି । ସେ ଦିନ କେତେ ଅନୁନୟ ବିନୟ ହୋଇ ତୁମକୁ ୧୦ ମିନିଟ ସମୟ ମାଗିଲି ସେଇ ଗୀତଟି ଗାଇ ଶୁଣାଇବା ପାଇଁ । ତୁମେ ସେ ବ୍ୟାକୁଳତା ବୁଝିଲନି । ଅତି ନିଷ୍ଠୁର ଭାବେ ପ୍ରତ୍ୟାଖ୍ୟାନ କଲ । ଫେରି ଆସିଲି ।

ତେବେ ତୁମର ମନେ ଥିବ—ଦିନେ ମୁଁ ତୁମକୁ ନିଘୋଳାରେ ପାଠ ପଢ଼ାଇଲା ବେଳେ କହିଥିଲି, "ତୁମକୁ ଏପରି ଗୋଟିଏ ଗୀତ ଉପହାର ଦେବି, ଯାହାରିକ ଶବ୍ଦ, ଭାଷା, ଭାବ, ସୁର, ତାଳ ଓ ଲୟ ମିଶି ଏତେବଡ଼ ଦୁନିଆର ଶ୍ରେଷ୍ଠ ଗୀତ ହେବ, (ମନେ ଅଛି ?) ଆଜି ଦେଖ—ମୋର ପ୍ରତିଜ୍ଞା ପ୍ରତିଶ୍ରୁତି ରଖିଛି ।

ଆଜିର ଏ ପୁରସ୍କାର ତୁମର । ଏ ବିଜୟ ତୁମର । ଏ ଗୌରବ ବି ତୁମର । ତୁମରି ଅଭାବରେ ଯେଉଁ ସର୍ବଶ୍ରେଷ୍ଠ ବେଦନା ଘନୀଭୂତ ହୋଇଥିଲା, ତାକୁହିଁ ରୂପ ଦେଇ ଏତେ ବଡ଼ ସର୍ବଶ୍ରେଷ୍ଠ ଗୀତ ଲେଖିଥିଲି । ତେଣୁ ଏ ଗୀତର ସ୍ରଷ୍ଟା ତୁମେ--ନାୟିକା ବି ତୁମେ ।

ସତରେ, ମୁଁ ତୁମକୁ କେତେ ଭଲ ନପାଏ ମ···!! ମୋର ଏକମାତ୍ର ଆଶା— ମୋ ପ୍ରିୟା, ମୋ କବିତା, ଆଜି ମୁଁ···ଆକାଶର ଧ୍ରୁବତାରା ପାଖେ ଧ୍ରୁବ ହୋଇ ରହିଥିବୁ ।

ଆଉ ଲେଖି ପାରୁନି । ଗେଟ୍ ପାଖରେ ରିକ୍ସାଟିଏ ଲାଗିଲାଣି । ବୋଧହୁଏ ମୋ ସ୍ତ୍ରୀ, ତାପା ଘରୁ ମୋ ସ୍ୱାସ୍ଥ୍ୟହାନି କଥା ଶୁଣି, ଅତି ବ୍ୟଗ୍ର ହୋଇ ଚାଲି ଆସିଛି । ତାର ଦ୍ରୁତ ପଦଚାଳନା ସ୍ପଷ୍ଟ ଜଣାଇ ଦେଉଛି ତାର ବ୍ୟଗ୍ରତା, ଆନ୍ତରିକତା ଓ ବ୍ୟାକୁଳତା । ହଉ··· । ତୁମ ପାଖରେ ହୃତ୍‌ପିଣ୍ଡଟିକୁ ରଖି ଫୁସ୍ ଫୁସ୍‌ଟିକୁ ନେଇ ଯାଉଛି ଆଜି ପାଇଁ··· । ଗୁଡ୍‌ବାଏ ।

ଜୁଲାଇ ୨୪ ତାରିଖ, ରାତି ୧୦ ଟା

ଆଜି ଟିକିଏ ସୁସ୍ଥ ଅନୁଭବ କରୁଛି । ସତରେ ସ୍ୱାମୀର ଅସୁସ୍ଥତାରେ ସ୍ତ୍ରୀର କି ବ୍ୟାକୁଳତା ! ନାରୀର ପ୍ରକୃତି ଆନ୍ତରିକ ସେବାରେ କେତେ ମହୋଷଧି ଭରି ନ ରହିଛି ।

ଯାହା ହେଉ···ଶରୀରରେ ଆଜି ତାପ ନାହିଁ । କିନ୍ତୁ କିଳିକ୍ ଆଗଭଳି ରହିଛି । କିଛି ଖାଇ ହେଉନି । ଦୁଧ ଛଡ଼ା ଅନ୍ୟ କିଛି ଖାଇବାକୁ ମନା । ସମୟେ ସମୟେ କାନ୍ତ ହେଉଛି । ବହୁତ ଦୁର୍ବଳ ଅନୁଭବ କରୁଛି । ଗୁଡ଼······ ମୋ କଥା ଲେଖି ଲାଭ କଣ ?

ସେଦିନର ଗୀତଟି ମନେ ମନେ ବହୁତ ଗାଉଛି । ଆଖିରୁ ଲୁହ ବି ବହୁଛି । ସଖୀ ! ବହୁତ ଦୁଃଖଲାଗେ—ତୁମ ପାଇଁ ଲେଖି ତୁମକୁ ଶୁଣାଇ ପାରିଲିନି ।

ହଉ···ତୁମ ପାଖେ ମୋ ଗୀତିକା ଗୁଚ୍ଛ ଅଶୁଣା ରହୁ । ଦୁଃଖ ନାହିଁ । ମୋ ପ୍ରିୟା ପାଇଁ—ମୁଁ ନିଜେ ଲେଖି ନିଜେ ଗାଇ ନିଜେ ଶୁଣି ନିଜେଶାନ୍ତ ପାଇବି । ସେଇ ଆତ୍ମଗର୍ବ ନେଇ ଅନ୍ତତଃ ଏ ଦୁନିଆରୁ ବିଦାୟ ନେଇ ପାରିବି ।

ହେଲେ, କବିତାରେ ଗୋଟିଏ ଶବ୍ଦ ଖଞ୍ଜିଲା ବେଳେ ଏ ଆଖିରେ କେତେ ଯେ ଲୁହର ସୁଅ ଛୁଟେ, ତାକୁ ଅନ୍ତତଃ ଦେଖିଯାଅ··· ।

ସତରେ ଭଲ ପାଇବା ଉପରେ କେନ୍ଦ୍ର କରି ମୁଁ କେତେ ଦୁର୍ବଳ, ରୁଗ୍‌ଣ ଓ ସର୍ବହରା ହୋଇ ପଡ଼ୁଛି ! ଥରେ ଥରେ ଭାବେ—କେତେ

ବୋକାଟିଏ ମ ମୁଁ ? ଜଣେ ଆଉ ଭଲ ପାଇଲାନ ବୋଲି—ଧକ୍କା ଦେଲି ବୋଲି—ନିଷ୍ଠୁର ଓ ନିର୍ମମ ସାଜି ଧକ୍କା ଦେଲା ଓ ଅବହେଳା କଲା ବୋଲି ମୁଁ ସର୍ବସ୍ୱ ଜଳାଞ୍ଜଳି ଦେଇ ତାର ସ୍ମୃତିକୁ ଜପାମାଳି କରି ଏତେଟା ରୁଗ୍ଣ ହୋଇଗଲି । ଧେତ୍ କି ମୂର୍ଖ ମୁଁ ।

କିନ୍ତୁ ହେ ମୋର ପ୍ରିୟତମା ! ଏଇ ଅନୁତାପ ଭିତରେବି କୋମଳତାର ଭାବନା ଅଶ୍ରୁ ଢାଳେ । ପର ମୁହୂର୍ତ୍ତରେ ଭାବେ, ମୁଁ ଭଲ ପାଏଣି ! ସେଥିରେ କଣ ଅଛି । ମନୁଷ୍ୟ ଦୁର୍ବଳ ହୁଏ ପ୍ରେମ ନିକଟରେ । ପୁରୁଷର ତ୍ୟାଗ, ସାଧନା, କଷ୍ଟ ଓ ସହିଷ୍ଣୁତା କେବଳ ତାର ପ୍ରିୟା ପାଇଁ । ଯେଉଁ ପ୍ରେମରୁ ମନୁଷ୍ୟ ଜନ୍ମ ସେଇ ପ୍ରେମରେ ତାର ମୃତ୍ୟୁ । ଜୀବନର ପରିସମାପ୍ତି । ପ୍ରିୟା ଯଦି ନାହିଁ, ତେବେ ସୁଖ-ସମ୍ଭୋଗ-ବିଳାସ ଲୁଣନର ମୂଲ୍ୟ ବା କଣ ? ସର୍ବୋପରି ଏ ଜୀବନରେ ବଞ୍ଚି ରହିବାର ତାତ୍ପର୍ଯ୍ୟ ବା କଣ ?

ତେଣୁ ପ୍ରିୟା ପାଇଁ ମୋର ଯାହା କିଛିଟା କ୍ଷତି ହେଲେ ବି ସେଥିରେ ମୋର ଆନନ୍ଦ-ଶାନ୍ତି-ତୃପ୍ତି ।

ମୋ ପ୍ରିୟା କେତେ ଭଲ ! କେତେ ଶାନ୍ତ ! କେତେ ତୃପ୍ତ ! କେତେ କମନୀୟ ! କେତେ ରମଣୀୟ !···ମୋର ଦୁର୍ଭାଗ୍ୟକୁ ସିନା ଅନନ୍ତ ନାକ୍ଷତ୍ରିକ ଜଗତର କକ୍ଷପଥ ଛାଡ଼ି ଚାଲି ଯାଇଛି ।

ପ୍ରିୟେ ! ଶରୀରଟା ଖୁବ୍ ଯୁବା ବୟସରୁ ରୁଗ୍ଣ ହୋଇ ପଡ଼ିଲା ଓ ସଞ୍ଜ ନ ଆସୁଁ ରାତି ଆସିଗଲା । ତେଣୁ ଆଜି କାଲି ଟିକିଏ ମାନସିକ ଭଗ୍ନତା ଅନୁଭବ କରୁଛି । ସମୟେ ସମୟେ ସବୁ ପାଶୋରି ଯାଉଛି । ପାଗଳଙ୍କ ଭଳି ଲାଗୁଛି । ଚିକିତ୍ସା ପାଇଁ ଯିବାକୁ ପଡ଼ିବ । ଚିଠି ଦେଲେ ଡାକ୍ତରଖାନାରେ କଣ ଟିକିଏ ଦେଖା ଦେବନି !

ଜୁଲାଇ ୨୫ ତାରିଖ ରାତି ୧୦ ଟା, ପୁରୀ-ହାଓଡ଼ା ଏକସ୍‌ପ୍ରେସ୍

ସଖୀ ! ମୁଁ କଏ ଜାଣ ?

ମୁଁ ଗୋଟାଏ ଅଶାନ୍ତ ଉପଗ୍ରହ । ତୁମର ଖୁବ୍ ସୁନ୍ଦର ସବୁଜ ଧରଣୀର ଚାରି ପଟେ ଘୂରି ବୁଲୁଛି ଓ ବୁଲୁଥିବି । କେଉଁଦିନ ଏ ଉପଗ୍ରହ, ବାୟୁମଣ୍ଡଳ ସହିତ ଘସି ହୋଇ, ଜଳି ପଡ଼ି ଛାରଖାର ହୋଇଯିବ କଏ ଜାଣେ ?

ରାତ୍ରି ଅଭିମୁଖେ ମୋର ଯାତ୍ରା ଚାଲିଛି । ସତରେ ବାହାରେ କି ସୁନ୍ଦର ଜହ୍ନ ଆଲୁଅ ମ ! ଭାରି ସୁନ୍ଦର । ବାହାରକୁ ହାତ ବାହାରି କରି ପୁଳା ପୁଳା ସୁଷମା ଆଣି ହୃଦୟରେ ନିଜେ ନିଜେ ବୋଳି ହେଉଛି । ପ୍ରିୟେ···ଥରେ ମୋର ମୁହଁ ନିକଟରେ ମୁହଁ ଲଗାଇ 'ପ୍ରିୟ' ବୋଲି ଡ଼ାକନ୍ତନି ! !

ରାତି ଘ ୧୧-୪୫ ମିନିଟ

ମୁଁ ତୁମକୁ ଏଇ ଅବସ୍ଥାରେ ବି ଭଲ ପାଏ ମ । ଖୁବ୍ ଭଲପାଏ । କିନ୍ତୁ···ତୁମପାଇଁ କାହିଁକି ଏ ବ୍ୟଥା ସହୁଛି ଜାଣ ? ତୁମେ ଭଲ ପାଇଲନି ବୋଲି ନୁହଁ—କିମ୍ବା ତୁମେ ଜିଣିଗଲ ବୋଲି ନୁହଁ । କେବଳ ଜୀବନରେ ଠକ ହୋଇଗଲି ବୋଲି ଖୁବ୍ ବାଧେ । ଖୁବ୍ ଧିକ୍‌କାର ଆସେ ଏ ଜୀବନ ପ୍ରତି ।

ଜୁଲାଇ ୨୮ ତାରିଖ, ରାତି ଘ ୧୧-୪୦ ମିନିଟ

ସୁଦୂର ରାଞ୍ଚିରୁ ଲେଖୁଛି ।

କାଲିକି ମୋତେ ପାଗଳ ଡ଼ାକ୍ତରଖାନାରେ ଭର୍ତ୍ତି ହେବାକୁ ପଡ଼ିବ । କଣ କରିବି ? ସମସ୍ତେ କହୁଛନ୍ତି ମୋର ମସ୍ତିଷ୍କ ବିକୃତ ହୋଇଯାଇଛି ।

ମୁଁ କିନ୍ତୁ ଜାଣେ—ମୁଁ ଠିକ୍ ଅଛି । କାହିଁ···ତୁମକୁ ତ ଭୁଲିନି ! ତେବେ ମସ୍ତିଷ୍କ ବିକୃତ ହେଲା କିପରି ? ଭଲ ମଣିଷକୁ ବି ଦୁନିଆ କହୁଛି ପାଗଳ । କେହି ମୋ କଥା ବୁଝୁ ନାହାନ୍ତି । ଏମିତିକି ମୋ ସ୍ତ୍ରୀ ବି ମୋତେ

'ପାଗଳ ହୋଇ ଯାଉଛ' ବୋଲି କହୁଛୁ । ବିତୃଷ୍ଣ କରୁଛୁ ବୁଝୁନି । ମୋ ପାଇଁ ସେ ବି ପାଗଳୀ ହୋଇ ଗଲାଣି । ପ୍ରେମର ରୋଗ କଣ ଔଷଧରେ ଭଲ ହୁଏ ? ହଉ··· । ତାର ମନରେ କାହିଁକି କଷ୍ଟ ଦେବି ।

ମୋ ପାଇଁ ତାର ତ୍ୟାଗ ଅକଥନୀୟ । ତେଣୁ ତାର ପାଇଁ ମୋର କିଛି ତ୍ୟାଗ କରିବା ଦରକାର ବି । ତାର କଥା ମାନି ଆଜି ଭଲ ମଣିଷ ହୋଇ ସୁଦ୍ଧା ପାଗଳଙ୍କ ସହ ପାଗଳ ହୋଇ ରହିବାକୁ ରାଜି ହୋଇଛି ।

ଡାକ୍ତର କହୁଛନ୍ତି—ବିଜୁଳି ସ୍ରୋତର ତାଡ଼ନା ଏ ମସ୍ତିଷ୍କରେ ଦେଲେ, ଅସଂଯତ ଓ ଅସଂଲଗ୍ନ ସ୍ନାୟୁଗୁଡ଼ିକ ସଜାଡ଼ି ହୋଇଯିବ । ଆଉ ମୋର ପୂର୍ବାବସ୍ଥାକୁ ମୁଁ ଫେରିଯିବି ।

ହଉ··· । ଆଜିର ଅଭିମାନ ଟିକିକ ଲେଖି ଯାଉଛି । ଡାକ୍ତରଖାନାରେ ହୁଏତ ଲେଖିବାର ସୁଯୋଗ ମିଳିବନି ।

ହେ ମୋର ଅଭୁଲା ପ୍ରିୟା··· ! ସତେ କ'ଣ ତୁମେ ସେଇ ଦିନର ପ୍ରେମିକା ! ଯେ ଠିକ୍ ଜାଣିଥିଲା, ମୁଁ ତାକୁ ମୁହୂର୍ତ୍ତେବି ଛାଡ଼ି ରହି ପାରିବିନି । ଆଉ ସେଇଥିପାଇଁ ମୋର ପାଶେ ପାଶେ ବିଭିନ୍ନ ଆଳ ଦେଖାଇ ଘୁରି ବୁଲୁଥିଲା ! ଯେ ମୋର ଅଧରର ବିରହ ନ ସହିପାରି ତାର ଅସ୍ଥିର ଅଧରକୁ ଆଣି ଯୋଡ଼ି ଦେଉଥିଲା ! ଯେ ମୋର ପ୍ରତ୍ୟେକ ଲୋମ ଓ ସ୍ନାୟୁର ବ୍ୟାକୁଳତା ସହି ନପାରି ତାର ବିପଦ ପୂର୍ଣ୍ଣ ନଗ୍ନ ଶରୀରଟିକୁ ଏ କୋଳରେ ଆଉଜାଇ ଦେଉଥିଲା ! ଏ ଆଖିର ଆଶାକୁ ବ୍ୟର୍ଥ ନ କରି ତାର କଜ୍ଜଳ ଢଳାଆ ଆଖି ଦୁଇଟିକୁ ଯୁଗ ଯୁଗ ଧରି ଯୋଡ଼ି ରଖୁଥିଲା । ଯେ ମୋର ସୁଖ ନିଦ୍ରା ପାଇଁ ତାର ଆଲୋକ ଚଇଟିକୁ ଏ ବୁକୁ ତଳେ ରଖି ଅର୍ଦ୍ଧ ରାତିରେ ବିଦାୟ ନେଉଥିଲା ! ଯେ ମୁହୂର୍ତ୍ତେ ଅନୁପସ୍ଥିତ ରହିବା ପାଇଁ ଏ ପ୍ରିୟଠାରୁ ମାଗୁଥିଲା ଅନୁମତି !

ତୁମେ କଣ ସେଇ ପ୍ରିୟା ? ସେଇ ପ୍ରିୟତମା ? ସେଇ ପ୍ରେମିକା ? ସେଇ ପ୍ରଣୟୀ ? ସେଇ ସଖୀ ? ସେଇ ବାନ୍ଧବୀ ?

ବିଶ୍ୱାସ ହୁଏ ନା··· ।

ଯେହେତୁ ସେଇ ପ୍ରିୟା ଆଜ ମୋର ଦୁଃଖ, କଷ୍ଟ, ବିରହ, ଅଶାନ୍ତି, ହାନ୍ତସନ୍ତ, ଛଟପଟ, କଲବଲ ଓ ଯନ୍ତ୍ରଣା ଦେଖି ନୀରବ ନିଷ୍ପନ୍ଦ ନିଶ୍ଚଳ ନିର୍ଜୀବ ହୋଇ ରହିଛି ।

ବାଃ···କି ଚମତ୍କାର ମୋ ଭଲ ପାଇବା ! ଆଉ କି ଆଶ୍ଚର୍ଯ୍ୟ ମୋ ପ୍ରିୟା ! ଆବାହନ ଯେତିକି ଦୁଃଖ, ବିସର୍ଜନ ସେତିକି ଦାରୁଣ ।

ଆଜି ଏତିକିରେ ଲେଖି ସାରୁଛି । ପୁଣି ବଞ୍ଚିଥିଲେ ଏ ଡ଼ାଏରୀରେ ତୁମ ସହ ଦେଖା ହେବ ।

ସନ୍ଧ୍ୟା ଆଉ ପଢ଼ି ପାରିଲାନି । ଖାଲି ବିରହଜନିତ ଦୁଃଖ ଓ ଦାରୁଣ ଯନ୍ତ୍ରଣାର ମର୍ମନ୍ତୁଦ ଛବି । ଏଇ ଡ଼ାଏରୀ ଖଣ୍ଡିକ ପଢ଼ିବା ତାପକ୍ଷରେ ଦୁର୍ଭାଗ୍ୟର ନମୁନା । ବୁକୁତଳେ, ତାର ପ୍ରିୟ ଅଶୋକବାବୁଙ୍କ ଶୁଷ୍କ ନୀରସ ମୁଖମଣ୍ଡଳରୁ ଅଭିମାନ ଭାସିଆସିଲା, ସତେ ଯେପରି ତାର ହାଡ଼ ମାଂସ କାଟି ବାହାରିଗଲାଭଳି ଅନୁଭବ କଲା ସେ । ସେ କାହିଁକି, ଯେ କୌଣସି ପ୍ରେୟସୀ ପଢ଼ିଲେ ତାରିଭଳି ହେବା ସ୍ୱାଭାବିକ ।

ଆଉ ପଢ଼ିବାର ସାହସ ତାର ହେଲାନି । ମଣିଷ ହୋଇ ଆନ ମଣିଷର ଦୁଃଖ କିଏ ସହି ପାରିବ ? ନା···ପାରିବନି । ସେମିତି ସନ୍ଧ୍ୟା ବି ପାରିଲାନି । ଖୁବ୍ ନରମି ଗଲା । ସେଇ ନିଚ୍ଛମତାର ଦୁର୍ଭାଗ୍ୟ ଭିତରେ ତାର ପ୍ରିୟ ଅଶୋକବାବୁଙ୍କଠାରେ ମନେ ମନେ ବହୁତ କ୍ଷମା ମାଗିଲା ।

କିନ୍ତୁ···ସୃଷ୍ଟିର ନିୟମ—ଯେ ଶକ୍ତ ସେ ତର ହନ ଶକ୍ତ । ତେଣୁ ଠିକ୍ କଲା—ଡ଼ାଏରୀଟି ପଢ଼ି ନିଜକୁ ଆଉ ନରମ କରିବନି, ବରଂ ପଢ଼ିବନି, ମାଆକୁ ସେମିତି ଫେରାଇ ଦେବ । ତା ପ୍ରିୟ ନିକଟରେ ଯେମିତି ଶକ୍ତ ହୋଇଛି ସେମିତି

ଶକ୍ତ ହେବ । ଆହୁରି କଠିନ ହେବ । ଆଉ ପାଷାଣୀ ହେବାର ଯଥେଷ୍ଟ ଯୁକ୍ତି ବାଢ଼ିବ ଦୁନିଆ ସମ୍ମୁଖରେ । ଥରେ ନରମ ହୋଇଗଲେ ଶୀତ ଦିନର କଅଁଳ ଖରା ବି ତାକୁ ଅସ୍ତବ୍ୟସ୍ତ କରି ଦେବ । ସଂଗ୍ରାମରେ ସେ କେବେ ପରାଜୟ ସ୍ୱୀକାର କରିବନି । ବିଜୟ ପାଇଁ ଚେଷ୍ଟା କରି ପରାଜୟ ପାଇଲେ ବି ସେଥିରେ ବିଜୟ ଅଛି, ଗୌରବ ଅଛି, ବୀରତ୍ୱ ଅଛି । କିନ୍ତୁ ଆତ୍ମସମର୍ପଣ କରି ପରାଜୟ ସ୍ୱୀକାର କରିବାଠୁଁ ଆଉ ଭୀରୁତା, କାପୁରୁଷତା ଓ ଲଜ୍ୟା କିଛି ନାହିଁ ।

ଠିକ୍ କଲା, ଆଉ ଡ଼ାଏରୀ ପଢ଼ିବନି, ତାର ସଂଗ୍ରାମ ପଥରେ ଡ଼ାଏରୀର ପ୍ରତିଟା ଶବ୍ଦ ସୃଷ୍ଟି କରିବ ଘୋର ପ୍ରତିବନ୍ଧକ । ନାରୀ ଜନ୍ମ ନେଇ ସେ ନାରୀର ସୁଖ ପାଇଁ ଲଢ଼ିବ । ତାର ଅଶୋକବାବୁଙ୍କ ପ୍ରତି ସେ ଅବହେଳା କରିଛି ସତ । ହେଲେ, ଏ ଡାଏରୀର ଦର୍ଶନରେ ପ୍ରଭାବିତ ହୋଇ ମୁହୂର୍ତ୍ତକ ପାଇଁ ଯଦି ସେ ଆନ୍ତରିକ ପରିଚୟ ଦେଖାଇ ଦିଏ, ତେବେ କି ପ୍ରଳୟ ନ ଘଟିବ !

ସେ ନିଷ୍ଠୁର ହେବା ପୂର୍ବରୁ ମନକୁ ମନ ବହୁତ ପ୍ରଶ୍ନ କରିଛି । ପ୍ରଶ୍ନଠାରୁ ଉତ୍ତର ବଳି ପଡ଼ିବା ଯୋଗୁଁ ସେ ସଂଗ୍ରାମର ସମ୍ମୁଖୀନ ହୋଇଛି । ତେଣୁ ଡ଼ାଏରୀ ପଢ଼ିବା ଯୋଗୁଁ ଯେଉଁ ଦୁର୍ବଳତା ଓ ପାପ ତାକୁ ଛୁଇଁଛି, ତାକୁ ସେ ମୋଟେ ପ୍ରଶ୍ରୟ ଦେବନି ।

ଶେଜ ଉପରୁ ଉଠି ବସିଲା । ପଣତରେ ମୁହଁଟିକୁ ପୋଛି ନେଇ ଦୁର୍ବଳତାଟିକକୁ ଦୂରେଇବାକୁ ଚେଷ୍ଟା କଲା ।

ଏମିତି କେତେଟା ମୁହୂର୍ତ୍ତ ବିତିଛି କି ନାହିଁ, ଭାବନାଟା ଆଉ ଟିକିଏ ବଢ଼ିଗଲା । ନିଜ ଭିତରେ ଉତ୍ତର ସଜାଡ଼ୁ ସଜାଡ଼ୁ ଭାବିଲା—ଯଦି କେହି ତାକୁ ତାରି ନିଷ୍ଠୁରତାର ଯଥାର୍ଥତା ଉପରେ ପ୍ରଶ୍ନ କରେ । ତେବେ ସେ ସଫେଇ ଦେବ ସେ କଣ ଅସତୀ ହୋଇ ଅଶୋକବାବୁଙ୍କ ମଧୁଶଯ୍ୟା ରାତିରେ ସତୀତ୍ୱର ଦୀପ ଲିଭାଇ ଥାଆନ୍ତା ? ଯଦି ବା ଅଶୋକବାବୁଙ୍କୁ ଦେଇଥାଆନ୍ତା ତାର ଅସତୀତ୍ୱର ପରିଚୟ, ତେବେ ସେଇ ପାପର ଲେଲିହାନ ଶିଖାରୁ କି ଭୟଙ୍କର ନିଆଁ ଉଦ୍‌ଭବ ହୋଇଥାଆନ୍ତା ! ତେଣୁ ତାର ଭୁଲ ରହିଲା କେଉଁଠି ?

ପାଖ ବେଡ଼୍ ଉପରେ ହସୁଥିବା ଶିଶିଟି ଦେଖି ପୁଣି ତାର ଭାବନା ମୋଡ଼ ନେଲା । ଭାବିଲା ଏଇଟା କଣ ? ଏବଂ ତା ଏସବୁର ଭାଷା ସହିତ ଏଇ ଶିଶିର ସଂପର୍କ ବା କଣ ଥାଇପାରେ ? ତେବେ କଣ ଏଥିରେ ବିଷ ଅଛି ? ନା ଜୀବନର ସୂତ୍ର ରହିଛି !

ଅତି ରହସ୍ୟପୂର୍ଣ୍ଣ ମନେ ହେଲା ତାକୁ । ତାଏସବୁ ସହିତ ଶିଶିର ସମ୍ପର୍କ ଆବିଷ୍କାର କରିବାପାଇଁ ପ୍ରବଳ ଆଗ୍ରହ ବଢ଼ିଲା ତାର । ଭାବିଲା, ଯଦି କିଛିଟା ତଥ୍ୟ ଆବିଷ୍କାର କରିପାରନ୍ତା ତେବେ ମାମୁଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷି ହୁଅନ୍ତା । ମାମୁ ନିଶ୍ଚୟ ତା ଭାଇ ଭାଉଜଙ୍କ ଏଇ ଦଶାରେ କି ବ୍ୟଥିତ ନ ହେଉଥିବ !

ଏତିକିବେଳେ ବିଜୁଳି ବତିଟି ଲିଭିଗଲା । ସନ୍ଧ୍ୟାର ଭାବନା ବି ଅଟକି ଗଲା । ବାହାରକୁ ଚାହିଁଲା । ସବୁ ଅନ୍ଧାର । ଆଲୁଅ ଭିତରେ ହଠାତ୍ ଅନ୍ଧାର ମାଡ଼ି ଆସିବାଟା ପ୍ରତ୍ୟେକଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି କରିବା ସ୍ୱାଭାବିକ । ମନୁଷ୍ୟ ଆଲୁଅରେ ଶୋଇ ଅନ୍ଧାରରେ ଉଠିଲେ ଯେମିତି ଅନୁଭବ କରେ, ତାଠାରୁ ବି ଏ ଭିନ୍ନ । ଏଇଠି ପ୍ରତିଟା କ୍ରିୟା ହଠାତ୍ ବନ୍ଦ ହୋଇଯାଏ ।

ଅନ୍ଧାର ଭିତରେ ଘନ ଅନ୍ଧାର ମାଡ଼ି ଆସିଲେ ଜଣା ପଡ଼େନି । କିନ୍ତୁ ଦୀପ୍ତିମାନ ଆଲୋକ ହଠାତ୍ ଲିଭିଗଲେ ମନୁଷ୍ୟ ଚମକି ଉଠେ । ସନ୍ଧ୍ୟା ସେମିତି ଚମକି ଉଠିଲା । ସେ ଅନୁଭବ କଲା—ଯେପରି ପୃଥିବୀ ବା ସୃଷ୍ଟି ଆରମ୍ଭରୁ ଘୂରୁ ଘୂରୁ ହଠାତ୍ ଅଟକିଯାଇ ଅଚଳ ହୋଇ ପଡ଼ିଲା ।

ପାଖଦେଇ ଗୋଟିଏ ଜୋତାର ଠପ୍ ଠପ୍ ଶବ୍ଦ ଦ୍ରୁତ ହୋଇ ଉଠିଲା । ଟର୍ଚ୍ଚ ଖଣ୍ଡିଏ ଧରି ନର୍ସ ଜଣକ ଧାଇଁ ଆସୁଥାନ୍ତି । ଶେଷରେ ଭିତରି ରୁମ୍‌ରେ ଜୋତା ଶବ୍ଦ ନିଶ୍ଚଳ ହେବାର କିଛି କ୍ଷଣ ପରେ, ପ୍ରତ୍ୟାଗମନ ଶବ୍ଦ ଶୁଭିଲା । ସନ୍ଧ୍ୟା ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲା, "ସିଷ୍ଟର୍ କ'ଣ ହେଲା ?" ଖର ନିଶ୍ୱାସ ଭିତରେ ଉତ୍ତର ଆସିଲା, "ଅପରେସନ ଥିଏଟରରେ ଲାଇଟ ଅଫ୍ ହୋଇଗଲା । ହିଆସିଲି ପାଇଁ ଆସିଥିଲି ।"

ସନ୍ଧ୍ୟାର ମନେ ପଡ଼ିଲା କିଛି ସମୟ ତଳେ କଲବଲ ହେଉଥିବା ନୂଆ ରୋଗିଣୀ ଜଣେ ସେ ପାଖ ଓ୍ୱାର୍ଡରେ ଭର୍ତ୍ତି ହୋଇଥିଲା । ବୋଧହୁଏ ତାର ହିଁ ଅପରେସନ ବେଳେ ଲାଇଟ୍ ଅଫ୍ ହୋଇଗଲା । ସନ୍ଧ୍ୟାର ପାଟିରୁ ସହାନୁଭୂତିର କେତୋଟି ଶବ୍ଦ ବାହାରିଲା, "ଆହା ଭଗବାନଙ୍କ କି ନିଷ୍ଠୁର ପରୀକ୍ଷା ।"

ମନେ ମନେ, ପର ଦୁଃଖରେ ଦୁଃଖିନୀ ସନ୍ଧ୍ୟା, ଭଗବାନଙ୍କୁ ଡ଼ାକିଲା । ତାପରେ ଅନ୍ଧାର ଭିତରେ ଚେଷ୍ଟା କଲା, ଶୁଖିଲା ଲୁହର ଅଠାରେ, ଆଖି ଦୁଇଟିକୁ ବୁଜି ଦେବା ପାଇଁ ।

ବ୍ୟର୍ଥ ହେଲା ତାର ଚେଷ୍ଟା । ଶୋଇ ପାରିଲାନି । "ଅପରେସନ୍ ମଝିରେ ଆଲୁଅ ଲିଭିଯିବା କି ସାଙ୍ଘାତିକ !" ଏଇଆ କଳ୍ପନା କରି ଅଥୟ ହୋଇ ପଡ଼ିଲା । ବାହାରକୁ ଉଠିଗଲା । ଚାରିଆଡ଼େ ଅନ୍ଧାର, ନୀରବ ନିର୍ଜନ ଅନ୍ଧାର ଭିତରେ ଜୀବନ ଓ ଯୌବନକୁ ଭୟରେ ଲୁଚାଇଲା ଭଳି; ସେ ଶଙ୍କି ଶଙ୍କି ବାରଣ୍ଡାକୁ ଗଲା । କିଟି କିଟି ଅନ୍ଧାର ଭିତରେ ଅନ୍ୟ ଗୋଟିଏ ସ୍ତ୍ରୀ ସହିତ ଧକ୍କା ଖାଇ, ପାଟିକରି ଉଠିଲା, "କିଏ ସେ ! କିଏ ସେ !"

—"ପାଟି କରନି ଅପା ମୁଁ ମାୟା ।"

—"ମାୟା !" ଆଶ୍ଚର୍ଯ୍ୟ ହେଲା ସନ୍ଧ୍ୟା, ପୁଣି ଉଦ୍‌ବେଗ ହୋଇ ପଚାରିଲା "ଭାଇଙ୍କ ଅବସ୍ଥା କିପରି ?"

—"ଶୁଣିଥିଲି—ଯେମିତି ସେମିତି । ଉନ୍ନତି ନାହିଁ କି ଅବନତି ନାହିଁ । ପୁଣି ରକ୍ତ ଦେଇ ହେଲାନି । ହେଲେ ଅପା ଭାଉଜ ଖୁବ୍ ସିରିୟସ୍ । ଏବର୍‌ସନ୍ କେସ୍ । ଏଇ ୧୮ ନମ୍ବର କେ୍‌ବିନ୍ ତାଙ୍କର । ଆଜି ରାତିଟା ତୁମେ ଟିକିଏ ତାଙ୍କ ପାଖେ ଜଗି ରହନ୍ତନି । ସକାଳୁ ମୋତେ ଭଲ ଲାଗିଯିବ । ମୁଁ ଆସିବି, ପ୍ରଶାନ୍ତବାବୁ ଭାଇଙ୍କ ପାଖରେ ଅଛନ୍ତି । ବୋଧହୁଏ ଭାଉଜଙ୍କ ବାପା, ମାଁ ଭୋର ଗାଡ଼ିରେ ଆସି ପହଞ୍ଚିବେ । ଅନ୍ତତଃ ସେ ଯାଏ ତୁମେ ଟିକିଏ ପାଖରେ ରହିଥିବ ଅପା ।"

—"ମୁଁ !" ଅବାକ୍ ହୋଇ ସନ୍ଧ୍ୟା ପଚାରିଲା ।

—"ହଁ ଅପା ଏତକ କର । ସବୁ ଭସି ଯାଉଛି । ମୁଁ ଚାଲିଲି, ଅନ୍ଧାର ଭିତରେ ଲୁଚି ଲୁଚି ଆସିଛି । ମୋତେ ଉଠିବାକୁ ମନା । ଭାଇଙ୍କ ଝିଅଟି ବି କାନ୍ଦି କାନ୍ଦି ଏଇନେ ଶୋଇଛି । ......... ହଁ ଡ଼ାଏରୀଟା ପଢିଲ ?"

—"ନା ... ସାରି ପାରିନ ।"

—"ମୁଁ ଜାଣେ ଅପା । ଏକା ଥରେ କେହି ସାରି ପାରିବେନ । ହଉ, କାହିଁକି ପଢ଼ି ନିଜକୁ ଅନିଦ୍ରା କରିବ ? ବରଂ ରଖିଥାଅ, ଭାଉଜଙ୍କୁ ଫେରାଇ ଦେବା । ହୋମ୍‌କୁ ଆସିବା ସଙ୍ଗେ ସଙ୍ଗେ ଡାଏରୀଟିକୁ କେବଳ ସେ ଖୋଜିବେ ।"

ଏତିକି କହି ଦେଇ ମାୟା ଦଉଡ଼ି ଦଉଡ଼ି ଚାଲିଗଲା । ସନ୍ଧ୍ୟା ସେମିତି ଠିଆ ହୋଇଥାଏ । ଭାବିଲା, "ଅନ୍ଧାରର ଝଡ଼ ଭିତରେ କେତୋଟି ଜୀବନର କି ସାଂଘାତିକ ବିପ୍ଳବ ! ମୃତ୍ୟୁ ସହିତ ଡ଼ାକ୍ତରଙ୍କର ପ୍ରାଣ ମୂର୍ଚ୍ଛା ସଂଗ୍ରାମ ଏବଂ ପ୍ରେମ ସହିତ ଅବହେଳାର ଭୂମୁଳ ଧ୍ୱଂସାକାଣ୍ଡ । ତାର ପ୍ରବଳ ଇଚ୍ଛାଥିଲା ମାୟା ସାଥିରେ ଯାଇ ତା ଭାଇଙ୍କୁ ଦେଖି ଆସିବାକୁ । କିନ୍ତୁ କିଛି କହି ପାରିଲାନ । ମାୟା ଚାଲିଗଲା । ସନ୍ଧ୍ୟାର ପ୍ରାଣ ବି ଖୁବ୍ କାନ୍ଦି ଉଠିଲା ।

ପୁଣି ଭାବିଲା, "ଏ ସମୟରେ ଏ ଧରାର କୌଣସି ଏକ କଣରେ ହୁଏତ ମିଳନର ମୌସୁମୀ ବହୁଥିବ—କେଉଁ କଣରେ ହୁଏତ ନୂଆ ଜନ୍ମର ଜହ୍ନିଫୁଲଟା ହସୁଥିବ—ଆଉ କେଉଁ କଣରେ ଦିନର ଆଲୁଅ ଖୁନ୍ଦ ହୋଇ ଯାଇଥିବ । କିନ୍ତୁ ଏଇଠି ଅନ୍ଧାର, ବିରହ ଓ ମୃତ୍ୟୁର ଅଶାନ୍ତ ଝଡ଼ । ଭଗବାନ ତୁମର କି ଚମତ୍କାର ଲୀଳା !

କେତେବେଳ ଯାଏ ଏମିତି ଭାବୁଛି, ହଠାତ୍ ଆଲୁଅଟା ଜଳି ଉଠିଲା । ଅନ୍ଧାରରେ ବିସ୍ତୀର୍ଣ୍ଣ ହୋଇଥିବା ଆଖି ଆଲୁଅରେ ସଙ୍କୁଚିତ ହୋଇଗଲା । ଚାରିଆଡ଼କୁ ସନ୍ଧ୍ୟା ଚାହିଁଲା । ଆଲୁଅର ଧଳା ପରଦାରେ ଅନ୍ଧାରର କଳା ଲୁଚି ଯାଇଛି ।

ନର୍ସ ଜଣକ ବିମର୍ଷ ବଦନରେ କ୍ଳାନ୍ତ ଶରୀର ନେଇ ଫେରୁ ଥାଆନ୍ତି । ସନ୍ଧ୍ୟା ପଚାରିଲା, "ସିଷ୍ଟର ! ଅପରେସନ କଣ ସରିଲା !"

—"ଅପରେସନ ସରିଛି," ନର୍ସ ଜଣକ ଦେଖାଉଥିବା ଭାବେ କହି ଦେଇ ଚାଲିଗଲେ ।

ସୁଧା ଛୁଟିଗଲା ୧୮ ନମ୍ବର କେବିନକୁ । ରୋଗିଣୀଙ୍କ ଧଳା ସାରି ଆଚ୍ଛାଦିତ । ଜଣେ ନର୍ସ ଓ ଜଣେ ଧାଈ ଠିଆ ହୋଇ ଥାଆନ୍ତି । ନର୍ସ ଜଣକ ରକ୍ତ.ବୋତଲ ଲାଗିଥିବା ଷ୍ଟାଣ୍ଡ ନିକଟରେ ଠିଆ ହୋଇ କଣ ଦେଖୁଥାଆନ୍ତି । ପାଖରେ ଅକ୍‌ସିଜେନ ସିଲଣ୍ଡର । ରୋଗିଣୀଙ୍କ ମୁହଁରେ ଯୁକ୍ତ (+) ଚିହ୍ନିତ ଦୁଇଟା ପ୍ଲାଷ୍ଟର ଲାଗିଥାଏ । ଅତି କରୁଣ ଛବି ।

କିଛି ସମୟ ପରେ ସୁଧାକୁ ଦେଖି ଜଣେ ନର୍ସ ପଚାରିଲେ, "ଆପଣ ୭୨ ନମ୍ବର ବେଡ଼ରେ ପେସେଣ୍ଟ ?"

—"ହଁ ।"

—"ମାଷ୍ଟ୍ରୀ ବିଦା କହିଛନ୍ତି ଟିକଏ ଜଗି ରହିବା ପାଇଁ ।"

—"ଆଚ୍ଛା ...... ହଉ" କହି ଖଟିଆ ପାଖର ଚୌକିରେ ସୁଧା ବସିଲା । ସମସ୍ତେ ଚାଲିଗଲେ ।

ରୁମ୍ ଭିତରେ ସୁଧା ଏକୁଟିଆ । ଭାରି ଡର ମାଡ଼ିଲା ତାକୁ । ଯେମିତି ସେ ଘରଟା ତା ଉପରେ ମାଡ଼ି ବସୁଛି ।

ମନେ ପଡ଼ିଲା, ମାଷ୍ଟ୍ରୀ କହିଥିଲା ତା ଭଉଜ ଖୁବ୍ ସୁନ୍ଦର । ତେଣୁ ରୋଗିଣୀଙ୍କ ଆଡ଼େ ଦୃଷ୍ଟି ନିକ୍ଷେପ କଲା । ଅନ୍ତଃ ଦୃଷ୍ଟିରେ ରୋଗିଣୀଙ୍କ ମୁହଁରୁ ସମସ୍ତ କ୍ଲାନ୍ତି, କ୍ଲେଶ ଆଚ୍ଛାଦନ ଦୂର କରି, କଳ୍ପନା କରିବାରେ ଲାଗିଲା କେତେ ସୁନ୍ଦର ହୋଇଥିବେ । ଶେଷରେ ଲୋଭ ସମ୍ଭାଳି ନପାରି ଚୌକିଟିକୁ ଖଟିଆର ଖୁବ୍ ନିକଟକୁ ଟାଣି ଆଣି ଏକ ଲୟରେ ଚାହିଁ ରହିଲା ମୃତବତ୍ ଶରୀର ଆଡ଼େ ।

ଭାବନାକୁ ଫେରାଇ ଆଣିଲା । ଆଖିରେ ଅନିଦ୍ରାର ଭୀଷଣ ଯନ୍ତ୍ରଣା ଅନୁଭବ କରୁଥାଏ । ତେଣୁ ଠିକ୍ କଲା ହାତରେ ଧରିଥିବା ଡାଏରୀଟିକୁ ପଢ଼ିସାରି ଦେବ । ରୋଗିଣୀଙ୍କ ହୋସ୍ ଆସିଲା ପରେ ଡାଏରୀଟି ଦେଇଦେବ । ନିର୍ଜନତାରେ ସମୟ କାଟିବା ପାଇଁ ଡାଏରୀ ଖଣ୍ଡିକ ତା ନିକଟରେ ଖୁବ୍ ଉପାଦେୟ ।

ମନ ନିଯୋଗ କରି ମେଲି ବସିଲି ଡ଼ାଏରୀ ଖଣ୍ଡିକ । ଅଟକ ଯାଇଥିବା ପୃଷ୍ଠାଠାରୁ ଆରମ୍ଭ କଲି । ଅଗଷ୍ଟ ୨ ତାରିଖ ପରଠାରୁ ଗୁଡ଼ାଏ ଅଲେଖା ପୃଷ୍ଠା ଡେଇଁ ଆରମ୍ଭ ହୋଇଛି—

ସେପ୍‌ଟେମ୍ବର ୫ ତାରିଖ ସନ୍ଧ୍ୟା ୭ ଟା ।

ଏ ଭିତରେ ବହୁତ ଦିନ ବିତି ଗଲାଣି । ମାନସିକ ଅଧଃପତନ ରୋଗରେ ବହୁତ ଦିନ ଡ଼ାକ୍ତରଖାନାରେ ରହିବା ପରେ ଆଜି ଭଲ ହୋଇ ଫେରୁଛି । ଉଦ୍‌ବେଗ ଜନିତ (State of Anxicty) ରୋଗରେ ରୋଗାକ୍ରାନ୍ତ ଥିଲି । ସେ ଯାହା ହେଉ, ବଞ୍ଚିଥିବା ଯାଏଁ ସୁସ୍ଥ ସବଳ ମନ ନେଇ ବଞ୍ଚି ରହିବାକୁ ସୁଯୋଗ ମିଳିଲା । କିନ୍ତୁ ପେଟର ଯନ୍ତ୍ରଣା ସେମିତି ରହିଛି ।

ଖବର ନେଇ ବୁଝିଲି—ତୁମର ପରିଚୟ, ମାନସିକ ଭଗ୍ନତା ଭିତରେ ବି ମୁଁ କାହାକୁ ଦେଇନି । ଖୁବ୍ ଖୁସି ହେଲି ।

ଏ ମାନସ ପଟରେ ଲାଗିଥିବା ଆସ୍ତର ନିର୍ମଳ ହୋଇନି । ଆଜି ଯାଏଁ ଲେଖି ଯାଇଥିବା ଡ଼ାଏରୀଟିକୁ ପଢ଼ି, ତୁମକୁ ମନ ଭିତରେ ଖୋଜି ପାଇଲି । ତଥାପି ତୁମର ରୂପଟି ମାନସ ଭିତରକୁ ଏ ଯାଏଁ ଆସିନି । ସତେ ମ ······ ତମର ରୂପଟି କେମିତିକି ? ଭାରି ସୁନ୍ଦର ଖୁବ୍ ଚମତ୍କାର ହୋଇଥିବ ନିଶ୍ଚେ । ହଉ ତୁମକୁ ଥରେ ତୁମରି ଅଲକ୍ଷ୍ୟରେ ଦେଖି ଦେଇ ଆସିଲେ ମନଟା ଶାନ୍ତି ପାଇବ । ଏବେ ବି ତୁମର ଅନୁଭୂତି ଟିକକ ଶରୀରର ପ୍ରତିଟା ସ୍ନାୟୁରେ କମ୍ପନ ଆଣୁଛି ।

ଯଦି ତୁମ ଅଲକ୍ଷ୍ୟରେ ତୁମକୁ ଦେଖିବାକୁ ଯାଇ ତୁମ ଦୃଷ୍ଟି ଭିତରକୁ ମୁଁ ଚାଲିଯାଏ ତେବେ ପଛୁଆ ଖୋଜ ଥୋଇ ଫେରି ଆସିବି ।

ପ୍ରିୟେ ! ତୁମ ଓ ମୋ ଭିତରେ ଗୋଟିଏ ବିରାଟ ତଫାତ୍ ଆଜି ମନେ ପଡ଼ୁଛି । ତୁମେ ଯେତେଥର ମୋ ଅନୁରୋଧରେ ବିଜୁଳି ସମୟତକ ପାଇଁ ଦେଖା ଦିଅ, ଫେରି ଯିବାଟା ନେଇ ଆସ; ଆଉ ମୁଁ ଯେତେବେଳେ ଫେରେ ପୁଣି ଲେଉଟି ଯିବାଟାକୁ ନେଇ ଫେରେ । ଏ ହେଉଛି ମୋ ପ୍ରେମ ଆଉ ତୁମ ଭଲ ପାଇବା ଭିତରେ ବିରାଟ ପାର୍ଥକ୍ୟ ।

ସେପ୍ଟେମ୍ବର ୮ ତାରିଖ ରାତି ୧୦-୩୦ ମିନିଟ ।

ଭାବିଥିଲି ତୁମର ଅଲକ୍ଷ୍ୟରେ ତୁମକୁ ଦେଖି ଫେରି ଆସିବି । କିନ୍ତୁ ହେଲାନି । ପାରିଲିନି । ଅଲକ୍ଷ୍ୟରେ ତୁମକୁ ଦେଖିବା ବହୁତ କଷ୍ଟ । ତେଣୁ ତୁମକୁ ତୁମ ଆଖି ଆଗରେ ଦେଖିବା ସୁଯୋଗକୁ ଗ୍ରହଣ କଲି । ତୁମଠାରୁ ବିଦାୟ ନେଇ ଆସି ଏଇନେ ପହଞ୍ଚିଛି । ସମସ୍ତେ ଶୋଇଛନ୍ତି, ତେଣୁ ବହୁତ ଦିନ ପରେ ମନର ଆଲ୍‌ହାଦିତ ଦ୍ୱାରା ସମସ୍ତ ସ୍ନାୟୁରେ ତୁମରି ସ୍ପନ୍ଦନ ଦେଇ ଆଜି ଲେଖୁଛି । ଭୁଲ ଥିଲେ କ୍ଷମା ଦେବ ।

ହୃଦୟରେ କୋଟି ଆବେଗ ଓ ବ୍ୟାକୁଳତା ନେଇ ଯାଇଥିଲି । ହେଲେ ପ୍ରିୟେ ତୁମ ସହ ଦେଖା କରିବା ପୂର୍ବରୁ ତୁମ ଦୁଆର ନିକଟରୁ ବହୁବାର ଫେରିଲି । ଗୁଣ୍ଡିଟା ଖାଲି ପଡୁଥାଏ—ଉଠୁଥାଏ ।

ଶେଷରେ ପୂର୍ଣ୍ଣୀବାତ୍ୟା ମଝିରେ ତୁମକୁ ଦେଖା କରିବାକୁ ଚେଷ୍ଟାକଲି । କିନ୍ତୁ ପ୍ରିୟେ ! ମୋର ଏ ପ୍ରେମ, ମୋର ଏ ମନ, ଏ ବ୍ୟାକୁଳତା ତୁମେ ବୁଝି ପାରିଲନି । ତୁମେ ଦେଖା ଦେବା ପାଇଁ ଆସିଲାବେଳେ ତୁମର ପାଦେ ପାଦେ ଅବହେଳା ଛିଟିକୁ ଥାଏ । ତୁମର ପ୍ରତି ପାହୁଣ୍ଡରେ ତାଚ୍ଛଲ୍ୟ ହସର ସୁଷମା ଖସୁଥାଏ । ତୁମର ଏ ରୂପଟିକୁ ଏ ଆଖି ଆଗରେ ସଜାଇବା ପୂର୍ବରୁ ତୁମେ ହସି ହସି ଆରମ୍ଭ କଲ, "ହଉ ଆପଣ ଯାଆନ୍ତୁ । ନମସ୍କାର ।"

ତା ପରେ ଝଡ ବେଗରେ ତୁମେ ଚାଲିଗଲ । ଖାଲି ଛାଡ଼ିଗଲ ତୁମର ଗୁରୁ ଗମ୍ଭୀର କେତୋଟି ଖୋଜ । ତାକୁ ଚାହିଁ ଚାହିଁ ଶେଷରେ ଫେରିଲି ।

ଏତେ ପରେ ବି ଭାବିଲି, ମୋ ପ୍ରିୟା ବାତାୟନ ପଥ ଦେଇ ଅନ୍ତତଃ ତାର ଆଖିର ଆଲୋକ ଟିକିଏ ଦେବ । ସେତିକି ବି ହେଲାନି । କେବେତ ହୋଇନି ଏବେ ବା କିପରି ହେବ !

ସତରେ ପ୍ରିୟେ, ହଜେ କେବେ ଫେରି ଗଲାବେଳକୁ ଥରଟିଏ ଫେରି ଚାହିଁଲନି ? ତୁମ ପଛରେ ଏ ପ୍ରିୟ କି ଉଦାସ ଚାହିଁଲା ଥିଲା, ଥରେ ଫେରି ଚାହିଁ ସାନ୍ତ୍ୱନା ଦିଅନ୍ତ ନି ! ଏ ପ୍ରିୟ ଏହାଠାରୁ ଆଉ ସର୍ବନାଶ କଣ ଚାହିଁ ପାରେ ?

ରାତ୍ର ୨ ଟା।

ହୁଁ ··· କଣ୍ଟୁଲ ଫେରିଯାଅ । ହେଲେ ଯିବ କେମିତି ? କାହିଁ ତୁମେତ ଏ ହୃଦୟରୁ ଗଲନି । ମୁଁ ବା କେମିତି ନିଜକୁ ଅଲଗା କରି ଫେରି ଆସି ଥାଆନ୍ତି ?

ଚିରଦିନ ପାଇଁ ମୁଁ ଫେରିଯିବା ଯଦି ତୁମର ଆନ୍ତରିକ ଇଚ୍ଛା, ତେବେ ମୋ ହୃଦୟ, ମନ, ପ୍ରେମ ଓ ନିଦ୍ରା ଫେରାଇ ଦିଅ । ପ୍ରେମର ରଜ୍ଜୁ କାଟିଦେଇ ଏ ଦେହରେ ଟିକିଏ ରକତ ଆଉ ମୁଠାଏ ମାଉଁସ ବୋଳି ଦେଇ ମୋ ରାସ୍ତାରେ ମୋତେ ଛାଡ଼ିଦିଅ । ନ ହେଲେ ମୁଁ କେମିତି ଯିବି କଣ୍ଟୁଲ ? ତୁମେ କ'ଣ ମୋ ମନ ଓ ହୃଦୟ କଥା କିଛି ଜାଣନି ? ସବୁବେଳେ ବାରି ବାରି—ଅନବରତ ଖାଲି କୁହ, "ଫେରିଯାଅ" "ଫେରିଯାଅ" ।

ସଖୀ ! 'ଯାଚ କଲ୍ୟାଣ ମାଗି ଓଳିକି' ଭଲ ଭଲ ପାଇବାର ଫଳ କଣ ଏଇୟା ? "ଫେରିଯାଅ" କହି ତୁମେ ହସି ହସି ଚାଲିଯାଅ । କିନ୍ତୁ ଏ ପ୍ରିୟର ମନର କଥା, ଅନ୍ତରର ଭାଷା ଓ ଅଶ୍ରୁର ଉଷ୍ଣତା ପ୍ରତି ଦେବେତ ନଜର ଦେଲନି ! ଛାଡ଼ ··· ! ଧିକ୍ ··· ଏ ମୋର ପ୍ରେମ ······ ।

ରାତ ବହୁତ ଗମ୍ଭୀର ହେଲାଣି । ଆହୁରି ଗମ୍ଭୀର ହେଲେ ଦିନ ଉପରକୁ ବାଟଟା ଉଠି ପାରିବନି । ତେଣୁ ବିଦାୟ ନେଉଛି । ଥୋଡ଼ାଏ ଲୁହ ଚାଲିଗଲା ପରେ ଟିକିଏ ଶାନ୍ତ ଲାଗୁଛି । ଯାଉଛି ଶୋଇବ ।

ହେ ମୋର ପ୍ରିୟା

ସେପ୍ଟେମ୍ବର ୯ ରାତ୍ର ୧୨ ଟା ।

ପେଟରେ ବହୁତ କଷ୍ଟ ଲାଗୁଛି । ପେଟରେ ବହୁତ ଯନ୍ତ୍ରଣା । ଦୁନିଆରେ ହୁଏତ ମୋ ପାଇଁ ଔଷଧ ବାହାରିନି । କଣ କରିବ ? କିଛି ଖାଇ ପାରୁନି । ଆଜି ଟିକିଏ ଖାଇଦେଲି ବୋଲି ପେଟର ଯନ୍ତ୍ରଣା ଅସହ୍ୟ ହୋଇ ପଡ଼ୁଛି । ଔଷଧ କିଛି କାମ ଦେଉନି । ହେ ମୋର ପ୍ରିୟା ! ମୋ ମରଣ କେଉଁଠି ? କି ଜୀବନ ହେଲା ପେଟକୁ ମୁଠାଏ ଖାଇ ପାରିଲିନି । ଆଖିରେ ଟିକିଏ ନିଦ୍ରା ବି ଆସିଲାନି ।

ଓଃ ...... ବହୁତ ଯନ୍ତ୍ରଣା । କିଛି ଔଷଧ ଅଛି କହିବ ପାରିବ ? ଆଜି କିଛି ଲେଖି ପାରୁନି ପରେ ଲେଖିବି ?

ସେପ୍‌ଟେମ୍ବର ୧୨ ରାତି ୧୦-୩୦

ଆଜି ମୁଁ ପୁରୀରେ । Sea View ହୋଟେଲରେ ଥାଇ ଲେଖୁଛି । ମୁଁ ପୁରୀ କାହିଁକି ଆସିଛି ହୁଏତ କେହି ଜାଣିନ୍ତିନି । ମୁଁ ଆସିନି ତୀର୍ଥ ପାଇଁ କିମ୍ବା ସୌଖିନତା ପାଇଁ । କେବଳ ଆସିଛି, ବିଗତ ଦିନ ଉପରେ ଥରେ ଦୃଷ୍ଟି ଦେବା ପାଇଁ । କାଲି ସକାଳୁ ଚାଲିଯିବି, ହେଲେ ଅନୁଭୂତି ଟିକିଏ ଲେଖି ଯାଉଛି ।

ଆଜି ସେମିତି ଗୋଟିଏ ଜହ୍ନ ରାତି । ଠିକ୍ ସେଇ ବିଗତ ଖୋଜ ଉପରେ ପାଦ ରଖି ସାଗର କୂଳରେ ବହୁତ ବେଳଯାଏ ଠିଆ ହୋଇ ପ୍ରେମର ଆଦାନ ପ୍ରଦାନ, ଦାନ ପ୍ରତିଦାନ ବ୍ୟକ୍ତ କରିଥିଲେ । ତୁମେ ଝୁଙ୍କି ପଡ଼ିଥିଲ ମୋ ଉପରେ । ଫେନିଳ ଲହରୀ ପାଦ ଦୁଇଟିକୁ ଟାଣି ନେଇଗଲାବେଳେ ତୁମେ ମୋତେ ଆଶ୍ରା କରିଥିଲ । ନୁହେଁ ? ଆଜି କିନ୍ତୁ ସାଗରଟା ଭଙ୍ଗାରେ ବ୍ୟାକୁଳ ହେଉଛି । ଯେତେ ନିକଟକୁ ଗଲେ ଲହରୀଗୁଡ଼ିକ ଆହୁରି ଦୂରେଇ ଯାଉଛି । କେବଳ ଛୁଡ଼ି ଯାଉଛି ବେଳା ଭୂଇଁ ଉପରେ ବିଗତ ଜୁଆରର ଉଚ୍ଛଳା ଓ ଉତ୍ଫୁଲ୍ଲ ଚୁମ୍ବନର ଚିହ୍ନ ।

ଆହା — କି ଦୁଃଖ ! ବିରହଟା କି ମର୍ମନ୍ତୁଦ ! କେତେ ଟୋପା ଲୁହ ଭିତରୁ ଟୋପାଏ ଲୁହ ରଖି ନେଲି ତୁମକୁ ମୋ ମୃତ୍ୟୁ ପରେ ଉପହାର ଦେବା ପାଇଁ । ଆଜି ସାଗରଟା ସବୁରେ ଶୂନ୍ ଶାନ୍ । ପବନ କି ନିଶ୍ଚଳ । ଭୀଷଣ ଗରମ । ହୁଏତ ପୁରୀରେ ଏପରି ଗରମ ଖୁବ୍ କ୍ୱଚିତ ଦେଖାଯାଏ ।

ସବୁ ସହିଲି—ସାଗରର ପ୍ରତିଟା ଚାଞ୍ଚଲ୍ୟ ଓ ଆକାଶର ପ୍ରତିଟା ଉପହାସ । କିନ୍ତୁ ପ୍ରିୟେ, ଯେତେବେଳେ ତୁମର ବିଗତ ସ୍ମୃତି ସହ ଧକ୍କା ଖାଇଲି, ଅସହ୍ୟ ଅନୁଭବ କଲି । ତେଣୁ ଫେରିଆସି ହୋଟେଲରେ ବସି ଲେଖୁଛି ।

ଏଠୁ ବି ସାଗରଟା ଦିଶୁଛି । ଜ୍ୟୋତ୍ସ୍ନା ଛୁଇଁ ହେଉଛି । ତୁମର ପ୍ରଶ୍ନଟା ବି ବାର ହେଉଛି । ସତରେ କି ବିରାଟ ପ୍ରଶ୍ନ ନ କଲ—"ସାଗରରେ ଲହରୀ କାହିଁକି ହୁଏ ?"

୧୪ ସେପ୍ଟେମ୍ବର ଦିନ ୧ ଘଣ୍ଟା

ଆଜି ମୁଁ ଖଣ୍ଡଗିରି ବୁଲୁରୁ ଲେଖୁଛି ।

ସବୁ ବୁଲି ବୁଲି ତୁମକୁ ଖୋଜିଲି । ଅର୍ଥାତ୍ ତୁମର ସ୍ମୃତି ଯେତେ ଯାଗାରେ ଅଛି ସବୁ ଦେଖିଲି । ପ୍ରତ୍ୟେକ ଯାଗାରୁ ମୋର ଗନ୍ଧ ଟିକିଏ ଫେରାଇ ଆଣିଲି । ଏଣିକି ତୁମେ ନିରାପଦରେ ସୁବାସିତ ହୋଇ ରୁହ ।

ବହୁତ କ୍ଳାନ୍ତ ଲାଗିଲା । ଫେରିଆସି ସେଇ ଜଙ୍ଗଲିଆ ଘରେ ବସି ଲେଖୁଛି । ବଡ଼ ଦୁର୍ବଳ ଲାଗୁଛି । ଏ ଯାଏ କିଛି ଖାଇନି । ପ୍ରିୟେ ! ମୋର ରୁଗ୍ଣ ଚେହେରାରୁ ଜାଣି ପାରୁନ—ମୁଁ ତୁମକୁ କେତେ ଭଲ ପାଏ !

ମେଘ ଆସିଲାଣି । ଯାଉଛି--ସେଇ କୁଡ଼ିଆକୁ ବି ଟିକିଏ ଯିବାକୁ ହେବ । ସେଇଠି, ତୁମ ଅଙ୍ଗୁଳି ଉପରେ ମୋ ଅଙ୍ଗୁଳି ପରଶରେ ଉଦ୍‌ଭବିତ ଉଷ୍ମତା ଟିକିଏ ରହି ଯାଉଛି । ତାକୁ ଫେରାଇ ଆଣିବାକୁ ପଡ଼ିବ । ହଉ ବସାକୁ ଗଲେ ଲେଖିବି ।

ରାତି ୭ ଟା

ବସାକୁ ଫେରିଲି । ଅତ୍ୟଧିକ ଦୁଃଖରେ ଅନ୍ତରଟା ଫାଟି ପଡୁଛି । ମୋର ଅଭିଯାନ କଣ ସତରେ ସଫଳ ହେବ ? ସବୁଠାରୁ କଣ ମୁଁ ତୁମ ପାଖରୁ ନିଜକୁ ଅଲଗା କରି ଆଣି ପାରିବି ? ଦୁନିଆଟା ଏତେ ବଡ଼—ଆଉ ମୁଁ ଏତେଟା ଛୋଟ ! କଣ ପାରିବି ?

ବହୁତ କ୍ଳାନ୍ତ ଲାଗିଲାଣି, ଯାଉଛି ଶୋଇବି ।

୧୫ ସେପ୍‌ଟେମ୍ବର ରାତି ୧୦ ଟା

ପ୍ରିୟେ ! ଆଉ କେତେ ଦିନ ବା ମୁଁ ବଞ୍ଚିବି ! ତି ଦିନର ଜୀବନ । କାଲି ଆଜି ଆଜି । କାଲି ବିତିଗଲା—ଏବେ ଆଜିର ଶେଷ ପ୍ରହର ରାତି ଚାଲିଛି । ଆଉ କିଛି ଟା ସମୟ ପରେ ରାତିଟା ବି ସରିଯିବ । ଏ ଦୁଃଖ ଟିକକ ରହିଯିବ ଅକୁହା ହୋଇ । ତେଣୁ ଖୁବ୍ ତରବରରେ ଲେଖି ଯାଉଛି । କେତେ ଯେ ଲମ୍ବା ହେବ, କିଏ ଜାଣେ ? ପ୍ରଭୁ ! ଏଇଟା ମୋ ଶେଷ ଲେଖା ହୁଅନ୍ତାକି !!

୧୭ ସେପ୍‌ଟେମ୍ବର ରାତି ୭ ଟା

ଆଜି ଲିଙ୍ଗରାଜ ମନ୍ଦିର ଯାଇଥିଲି । ସେଠୁ ମୋର ଶପଥ ଓ ଅନୁରୋଧ ଟିକକ ଫେରାଇ ଆଣିଛି । ଛଳନା ପାଇଁ ତୁମର ଶପଥ କିନ୍ତୁ ରହୁ । ହଁ, ଆଜି ଗୋଟିଏ କଥା ବି ଲିଙ୍ଗରାଜଙ୍କୁ ଅନୁରୋଧ କରି ଆସିଛି । ଆମ ଦିହିଁଙ୍କ ଗୁପ୍ତ ପ୍ରେମର ପାପ ପାଇଁ ଯେତେକ ଅଭିଶାପ ଓ ଶାସ୍ତି ମୋତେ ଦିଅନ୍ତୁ । ଆଉ ପ୍ରେମର ପବିତ୍ରତା ରକ୍ଷା କରିବା ପାଇଁ ଯେତେକ ବର ଓ ଆଶୀର୍ବାଦ ତୁମକୁ ଦିଅନ୍ତୁ । ଲୁହ ମୋର ହେଉ ଓ ହସ ତୁମର ଆଶ୍ରୟ ନେଉ ।

ବିଶ୍ୱାସ କର ଯୁଗ ଯୁଗ ଧରି ବଞ୍ଚିରହି ଭଲ ପାଇବାର ପ୍ରତିଶ୍ରୁତି ଫେରାଇ ଆଣିଛି । ଏଣିକି ତୁମେ ନିଷ୍କଳଙ୍କ ଓ ନିଷ୍କଣ୍ଟକ ହୁଅ ।

୧୮ ସେପ୍‌ଟେମ୍ବର ରାତି ୯ ଟା

ରାସ୍ତାରେ ଗାଡ଼ି ନେଇ ଆସୁ ଆସୁ ବାଟ ଭୁଲି ବହୁତ ଦୂର ଆସି ଗଲିଣି । ବର୍ତ୍ତମାନ ମୁଁ ସେଇ ଗଛମୂଳେ ଠିଆ ହୋଇଛି । ଯେଉଁଠିକି ଗୋଟାଏ ବଦାମ୍ବର ଅଶ୍ରୁ ଏ ଯାଏଁ ଲିଭିନି । ଥୋଡ଼ାଏ ଅଶ୍ରୁଭିଜା କାଦୁଅ ନେଇ ଯାଉଛି । ମୁ ମଲା ପରେ ମୋର ସମାଧିରେ ପଲସ୍ତରା ହୋଇ ରହିଥିବ ।

୧୯ ସେପ୍‌ଟେମ୍ବର ରାତ୍ର ୧୦ ଟା

ପ୍ରିୟେ ! ବହୁବାର ମୃତ୍ୟୁ ଫେରାଇ ଦେଲିଣି । ହେଲେ ଏ ଶେଷ ସଂଗ୍ରାମରେ ମୁଁ ଏକୁଟିଆ କଣ ପାରିବ ?

ସଂଗ୍ରାମରେ ମୋ ହାତରୁ ଅସି ଖସି ଗଲେ କିଏ ପୁଣି ଧରାଇ ଦେବ ? ଆଖିରୁ ଲୁହ ବହିଲେ କିଏ ପୋଛି ଦେବ ? ଏ କ୍ଷତ ବିକ୍ଷତ ଶରୀରଟିକୁ କିଏ ପଙ୍ଖା କରିବ ?

ହେ ମୋର Sweet heart ! ମୌସୁମୀ ବହିଲେ ଆକାଶ ଝୁରାଏ । ବିରହ ବହିଲେ ଆଖି ଝୁରାଏ । ଆଉ ମରଣ ବହିଲେ ଏ ପ୍ରେମ କଣ ହେବ କହିଲ ! !

ଦେଖୁଛ—ପାଦତଳର ଏ ପୃଥିବୀଟା ଆହ୍ନିକ ଗତିରେ କେତେ ଜୋରରେ ଘୁ ରୁଛି ! ହେଇ……ବାର୍ଷିକ ଗତିର କକ୍ଷରୁ ବି ଖସି ଯିବାକୁ ବସିଛି । ଛିଟିକି ଯାଇ ଶୂନ୍ୟରେ ମୁଁ କେମିତି ଠିଆ ହେବି କହିଲ । ଏ ଲୁହକୁ ମୁଁ ରଖିବି କେଉଁଠି ? ତୁମ ଅଞ୍ଚଳଟା ଟିକିଏ ପାରି ଦିଅନ୍ତନି ! ଏ ଲୁହ ଯଦି ଶୂନ୍ୟ ଭିତରେ ଖସି ଖସି କୌଣସି ଗ୍ରହରେ ଧକ୍‌କା ଖାଏ, ତେବେ ପରିଣାମ କଣ ହେବ କହିଲ ? ହଉ ତୁମ ଦୟା……ଆଉ ମୋ ଭାଗ୍ୟ ।

୧୯ ସେପ୍‌ଟେମ୍ବର ରାତ୍ର ୧୨ ଟା

ଆଚ୍ଛା କହିଲ, ତୁମକୁ ଭୁଲିବା ମୋ ପକ୍ଷେ କଣ ଉଚିତ ହେବ ? ତୁମେ ଯଦି ମୋ ଭଲ ଭଲ ପାଇଥାଆନ୍ତ, ଆଉ ମୋ ଭଲ ତରଳ ହୃଦୟ ନେଇ ଜନ୍ମ ହୋଇଥାଆନ୍ତ, ତେବେ ତୁମେ କଣ କହି ପାରିଥାଆନ୍ତ— "ମୋତେ ଭୁଲି ଯାଆନ୍ତୁ" × × × "ସବୁବେଳେ ମୋତେ କାହିଁକି ଏତେ ଭଲ ପାଉଛ ମ ?"

ପ୍ରିୟେ ! ମୋର ଏତେ ବଡ଼ ଓ ମହତ୍‌ ଭଲ ପାଇବାଟାକୁ ଗୋଇଠା ମାରି ତୁମେ ଏଇଆ କହି ପାରିଲ ! ! ମୋର ଏତେ ପ୍ରେମର ପ୍ରେମିକା କଣ ତୁମେ ?

୨୦ ସେପ୍‌ଟେମ୍ବର ରାତି ୧୧ ଟା

ବୁଲି ବୁଲି ବହୁଦିନ ପରେ ଆଜି ଫେରୁଛି । ଏଇ କେତୋଟା ଦିନ କି ସୁଖ ଯେ ମୋତେ ଦେଇଛି, ତା ଲେଖି ହେବନି । ଖାଲି ଭାବି ହେବ । ଯାହା ହେଉ ସବୁ ଯାଗାରୁ, ସବୁ ବାୟୁମଣ୍ଡଳରୁ ମୋର ଗନ୍ଧ ଟିକିକ ଫେରାଇ ଆଣି ପାରିଲି ।

ପ୍ରକୃତରେ ସଖୀ, ବଡ଼ ଦୁଃଖ ଲାଗିଲା—ଯେତେବେଳେ ସବୁ ବୁଲି ବୁଲି ଶେଷରେ କୌଣସି ପ୍ରେମ କାହାଣୀକୁ ଆଖି ଆଗରେ ଦେଖିବା ପାଇଁ ସିନେମା ଗଲି ; ଇସ୍···ତାହାର ଦୁନିଆରେ କି ଆନ୍ତରିକ ପ୍ରେମର ସୁଅ ! ! ମନେ ପଡ଼ିଲା, ତୁମେ ଏମିତି ଦିନେ ମୋ ପାଖରେ ବସି ଆନ୍ତରିକ ପ୍ରେମ କାହାଣୀ ଓ ଅନୁଭୂତି ଦେଖୁ ଦେଖୁ ମୋ ଆଡ଼େ ନଇଁ ଯାଇ ତୁମର ପତ୍ନୀକୁ ଅବହେଳା ଓ ବଦଳି ପାଇଁ କ୍ଷମା ମାଗିଥିଲ । ତାପରେ ନିର୍ଜନ କୁଟୀର ଭିତରେ ଯଥେଷ୍ଟ ଭୁଲ ପାଇଁ ଅଜସ୍ର କ୍ଷମା ଭିକ୍ଷା କଲ—ତୁମର ଅନ୍ତରର ପ୍ରେମ ଓ ଭଲ ପାଇବାକୁ ଆଖିରେ ବୁଝାଇବା ପାଇଁ ଯଥେଷ୍ଟ ଚେଷ୍ଟା କରିଥିଲ—ବରିହରେ ଗମ୍ଭୀର ହୋଇ ଯାଇଥିବା ଗୁନ୍ଥି ଭିତରେ ଜନିଆ ଫୁଲଟିଏ ରଖି (ମନେ ଅଛି ?) ନିସାଶକ୍ତ ଆଖିରେ ମୋତେ ନିବିଡ଼ ଭାବେ ଭିଡ଼ି ଧରିଥିଲ ।

ନା···ପ୍ରିୟେ ଆଉ ଏ ଜୀବନରେ ସେତିକି ଗୃହୁଁନି । (ଦେଖୁଛ ଆଖିରେ କେତେ ଲୁହ) । ଆଉ ସେ ପୀୟୂଷ ଚଳ୍ଲୀ ତୃପ୍ତ ହୋଇ ମୋର ଏ ଦୁଃଖର କାହାଣୀ ଶୁଣନା—ନିସ୍ୱାର୍ଥ ପ୍ରେମ ଦେଇ ମୋତେ ଅମାପ୍ତିକ କରନା—ନା···ନା···ଆଉ ତୁମର ଶରୀରର ଉଷ୍ମତା ମୋ ଦେହରେ ଭୋଗ ପ୍ରବୃତ୍ତିକୁ ଜଗାଅ ନା । (ହାତରୁ କଲମ ଖସି ପଡ଼ୁଛି ପ୍ରିୟେ ! ଏସବୁ କଣ ମିଛ ?)

ପେଟର ଯନ୍ତ୍ରଣା, ସୁରର ନିଶାକୁ ଢେଇଁ ଖୁବ୍ ଜୋରରେ ଧକ୍କା ଦେଉଛି । ଶାରୀରିକ ଓ ମାନସିକ ଅସୁସ୍ଥତାରେ ଆଜି ଅଜସ୍ର ଲୁହ ବୋହି ଯାଉଛି । କାଳେ ଏ ଡ଼ାଇରୀ ଉପରେ ପଡ଼ିଯିବ ଭାବି କରୁଛି । ରଖି ନେଉଛି ଏଇ ଶିଶିରେ । ମୋର ଭଲ ପାଇବାର ପଣ୍ଡଚପ୍ସ କେବଳ ଏଇ ଶିଶି ।

ପ୍ରିୟେ, ମୋର ଅଶ୍ରୁ ଖୁବ୍ ପବିତ୍ର । ଗଙ୍ଗା, ଯମୁନା, ସରସ୍ୱତୀଠାରୁ ବି ପବିତ୍ର ଓ ସଂଗମଠାରୁ ଆହୁରି ତୃପ୍ତ । ଯଦି କେବେ ମୋର ଏ ଅଶ୍ରୁ ଟିକିକ ପବିତ୍ର ଗଙ୍ଗାଇ ନୀଳ ଜଳରେ ମିଶାଇ ଦେଇ ପାରନ୍ତା ତେବେ ଅନ୍ତତଃ ମୋ ପରେ ପ୍ରେତାତ୍ମାଟା ଅଶ୍ରୁ ମୁକ୍ତ ହୁଅନ୍ତା ।

ସବିରି ଗଣ୍ଠିରଟା ଛୁଇଁ ଚନ୍ଦ୍ର। ଢଳି ଗଲାଣି । ଆଜିର ଜାଗର ସ୍ୱପ୍ନ ଏତିକିରେ ଥାଉ ।

୨୧ ସେପ୍‌ଟେମ୍ବର ରାତି ୧୦ଟା

ଓଃ.........ଏବେ ବି ମନେ ପଡ଼େ ତୁମର ସେଇ ଚୁମ୍ବନ । ସତରେ ହେ ମୋର ପ୍ରିୟା ! ତୁମେ ସେତେବେଳେ କି ସୁନ୍ଦର ଥିଲ ମ ! ସଦ୍ୟ ପ୍ରସ୍ଫୁଟିତ କୁସୁମର ନରମତା, କୋମଳତା, ଦରଦତା, ଆନ୍ତରିକତା, ବ୍ୟାକୁଳତା, ଆଉ ତା ସାଥିରେ କମନୀୟତା ଭରି ରହିଥିଲା ତୁମଠାରେ । ତୁମର ସେଇ ନିଗାଢ଼ ଚାହାଣି—ଅମାୟିକ ସ୍ନେହ—ତରଳ ପ୍ରେମ ଓ ଶାନ୍ତ ସୁଧାର ମନ......ବାଃ କି ଚମତ୍କାର ଥିଲମ ! ! ନ ହେଲେ କି ଏମିତି ଗୋଟିଏ ଶକ୍ତ ଯୁବକର ଲୌହ ହୃଦୟକୁ ତରଳାଇ ପାରିଥାଆନ୍ତ ! ?

(ହାୟରେ ଭଗବାନ ! ମୋର ଏ ଯେଉଁ ନିସ୍ୱାର୍ଥ, ନିର୍ମଳ, ପ୍ରଗାଢ଼ ପବିତ୍ର ପ୍ରେମ—ତାର ପାଇଁ କଣ ଉପଯୁକ୍ତ ପ୍ରେମିକା ସୃଷ୍ଟି କରିପାରିଲନି ? ଧେତ୍ ! କି ଭଗବାନ ହେ ତୁମେ ! ଯେଉଁଠି ମୋ ପ୍ରେମ ପାଇଁ ପ୍ରେମିକା ସୃଷ୍ଟି କରି ପାରିଲନି, କି ସ୍ରଷ୍ଟା ହେ ତୁମେ ! ଛି ମୁହଁ ପୋଡ଼ୁ ତୁମର । )

୨୯ ସେପ୍‌ଟେମ୍ବର ରାତି ୧୨ଟା

ନାରୀ ଚାହେଁ ପ୍ରେମ । ଅଜସ୍ର ପ୍ରେମରେ ତାର ଆସେ ଶାନ୍ତି—ତୃପ୍ତି । ହେଲେ, ତୁମେ ନାରୀ ହୋଇ ଗୋଟିଏ ପୁରୁଷର ଏତେ ପ୍ରେମ ଓ ଭଲ ପାଇବାକୁ ଘୃଣା କଲ ? ପାଦରେ ଦଳି ଚାଲିଗଲ ? ତୁମେ କି ନାରୀ ହୋଇଛ ହେ ? ତୁମେ କି ଯୁବତୀ ସାଜିଛ ? ଛିଃ.....ତୁ ମ ନାରୀ ! !

୧ ଅକ୍ଟୋବର ରାତ୍ର ୭ଟା।

କେତେବା ବସି ଭାବବ ! କେତେବା ବସି ଲେଖିବ ? ଆଜ ଗୋଟିଏ ପୂନିଅ । ବାହାରେ ଜହ୍ନ ଆଲୁଅ, ଭିତରେ ଘନ ଅନ୍ଧାର । ମନେ ପଡ଼େ ତୁମେ ଦିନେ କହିଥିଲ—"ପ୍ରତିଦାନ ଦେଇ ପାରିବନି ।"

ହଉ । ପ୍ରତିଦାନର ଆଶା ଭୁଲ୍ । ମୁଁ ମାନୁଛି । ଏ ଦାନର କେବେ ହେଲେ ପ୍ରତିଦାନ ନଥାଇ । କିନ୍ତୁ ପ୍ରତିଦାନର ଦାନ ମୋ ପାଖରେ ଅଛି । ଯଦି କେବେ ତୁମର ଦରକାର ହୁଏ, ନେଇ ପାର । ଆଜ ଏତିକିରେ ବିଦାୟ ।

(ପ୍ରଭୁ ! ତୁମର ସିନା ଦିନ ରାତିର ଦାନ ପ୍ରତିଦାନ ଧ୍ରୁବତାରାର ସତ୍ୟକୁ କେନ୍ଦ୍ର କରି ଘୂରୁଛି । ହେଲେ ଏ ସୃଷ୍ଟି ବକ୍ଷରେ ଚିର ଶାଶ୍ୱତ ସନାତନ ପ୍ରେମ ଉପରେ କି ଯେ ଅତ୍ୟାଚାର ଚାଲିଛି ଦେଖି ପାରୁନ ? )

୫ ଅକ୍ଟୋବର ରାତ୍ର ୯ଟା।

ମନେ ପଡ଼େ—

ଥରେ ଲେଖିଥିଲ "········ତୁମର ଚିଠିରେ ଖୁବ୍ ବ୍ୟାକୁଳତା ଓ ଆନ୍ତରିକତା ଭରି ଦେଇଛ । ହେଲେ ଲାଭ କଣ ?········"

ପ୍ରିୟେ ! ଉତ୍ତର କଣ ଦେଇପାରିବ ବୋଲି ଆଶା କରୁଛ ? ପାରିବନି । ପ୍ରିୟା ପ୍ରତି ପ୍ରିୟର ଆନ୍ତରିକତାର ମୂଲ୍ୟ କେବେ ନାହିଁ । ଏଇଟା ନିଶ୍ଚିତ ସତ । ହେଲେ ଅଦ୍ଭୁତ ଦିନ ତଳର ଗୋଟିଏ ସ୍ମୃତି ମନେ ପଡ଼େ—

ସେଇ ଦିନର କଥା । ବିଜୁଳି ପଙ୍ଖାତଳେ ତୁମର ଗନ୍ଧଭରା ମଳୟ ଯେତେବେଳେ ଏ ହୃଦୟରେ ବୋଳି ହୋଇଯାଉଥିଲା, ତୁମେ ତୁମର ପଣତ କାନିରେ ମୋର ସମସ୍ତ ଶରୀରଟାକୁ ଘୋଡ଼ାଇ ଦେଇଥିଲ—ଏଇଟା କଣ ମିଛ ? ଯଦି ସତ ହୋଇଥାଏ, ତେବେ ହେ ମୋର ପ୍ରଣୟି, ତୁମର

ସେ ଦିନର ବ୍ୟାକୁଳତା ଓ ଆନ୍ତରିକତା ମୋ ଉପରେ ଅଜାଡ଼ି ଦେବାଟା କଣ ଉଚିତ୍ ହୋଇ ?? ସେତେବେଳକୁ ତୁମେ ଅର୍ଥ କରୁଥିବା ସମସ୍ୟା ଓ ସମାଧାନ କ'ଣ ହୋଇ ନଥିଲା ??

ଆଉ ଦିନେ ବି—

ଇଂରେଜୀରେ ଅନୁବାଦ କରି କହିଥିଲ I love you as 'Q' loves 'U' ।" (ବୋଧହୁଏ ଅନ୍ତରର ଏଇ ଭାଷା ପ୍ରକାଶ କରିବା ତୁମର ପ୍ରଥମ ଓ ଶେଷ । ଆଜି ସେଦିନଠୁ କେବେହେଲେ ତୁମରି ଅଧର ଏଇ ପଦକ କଥା ଏହାର ଅନୁବାଦ ସ୍ପର୍ଶ କରିନି ।) ଆଚ୍ଛା କହିଲ—ଆଜି ଯଦି ମୋର ଶତ ବ୍ୟାକୁଳତା ଓ ଆନ୍ତରିକତା ଭରା ଶରୀରଟା ଦୁର୍ଗନ୍ଧମୟ ଓ ଘୃଣ୍ୟ ହୋଇ ପଡ଼ିଲା, ତେବେ ସେଇ ଦିନ ସେଇ ପଦକ କହି ଖୁବ୍ ବ୍ୟାକୁଳ ଭାବେ ଏ ଶରୀର ସ୍ପର୍ଶ କରିବା କଣ ଠିକ୍ ହୋଇ ?

୭ ଅକ୍ଟୋବର ରାତି ୮ଟା

ଆଜି ପୁଣି ଥରେ ତୁମ ସହ ଦେଖା କଲି । ବୋଧହୁଏ ଶେଷଦେଖା କିନ୍ତୁ ତୁମେ କଣ୍ଠରେ ଶତ ରୁକ୍ଷତା ଓ ଗମ୍ଭୀରତା ଢାଳି କହିଲ, "କାହିଁ ମୋର ତ କିଛି ପରିବର୍ତ୍ତନ ହୋଇ ଭଲ ମୋତେ ଲାଗୁନି । ମୁଁ ତ ଆପଣଙ୍କୁ ଭୁଲିନି । ଆପଣଙ୍କ ଭାବିବା ଭୁଲ । କିଏ କହିଲା ମୁଁ ଆପଣଙ୍କୁ ଭଲ ପାଏନି ବୋଲି ? × × × । ଏଠି ହୋଇ ପାରିନି । × × × ହେଇନଥିଲା । × × × ଚେଷ୍ଟା କରିବି—ଯଦି ପାରିବି କେବେ ହୋଇ ପାରେ ।"

ହଁ ଦାବୀ କରି ବସିଛି—ତୁମେ ଏବେବି ମୋତେ ଭଲ ପାଅ ବୋଲି । ଠିକ୍ ଯେପରି ମନୁଷ୍ୟ ଭୁଲ କହୁଛି ବୋଲି ଜାଣି ସୁଦ୍ଧା ଯୁକ୍ତି କରେ ଠିକ୍ ଓ ଉଚିତ କହୁଛି ବୋଲି । ହଉ······ମୁଁ ହାରିଲି । ଜାଣି ଅଜାଣି ପାଖରେ କେହି ପାରିବେନି । ଚେଇଁ ଶୋଇଲେ କେହି ଉଠାଇ ପାରିବେନି ।

ରାତ ୧୨ଟା।

ଦିନେ କାଗଜ ଉପରେ ମୋ ନାମଟି ଲେଖି କହିଥିଲ, "କି ବଢ଼ିଆ ନାଁଟିଏ ହୋଇଚି ମ !" କିନ୍ତୁ ହେ ସଖି, ହେ ମୋର ପ୍ରିୟତମା, ସେ ଦିନ ମୋ ନାଁଟିକୁ ହିଁ ଭଲ ପାଇଥିଲ—ମୋତେ ନୁହଁ। ନୁହେଁ ? ହଉ। ଯଦି ମୋ ନାଁଟିକୁ ଭଲ ପାଇଥିଲ, ମୋତେ ନୁହଁ, ତେବେ ଅନ୍ତତଃ ଏତିକି କର—ଦିନେ ନା ଦିନେ ତ ତୁମେ 'ମା' ହେବ, ସେତିକିବେଳେ ତୁମ ପୁଅକୁ ମୋ ନାଁଟି ଦେଇ ପାରିବ ? ଅନ୍ତତଃ ମୋ ନାଁଟି ତୁମର ବାତ୍ସଲ୍ୟ ସ୍ନେହର ସମ୍ବୋଧନ ହୋଇ ରହୁ। (ଦେଖୁଛ ଆଖିରେ କେତେ ଲୁହ ! )

ଏତିକି ପଢ଼ିସାରି ତା ପରଠୁ କେତେକ ଅଲେଖା କାଗଜଗୁଡ଼ିକ ଓଲଟାଇବାରେ ସନ୍ଧ୍ୟା ଲାଗିଲା। ଏ ଭିତରେ ରୋଗିଣୀଙ୍କ କଥା ଏକ୍‌ବାରେ ଭୁଲି ଯାଇଥାଏ। ଥରେ ବି ଆଖି ଫେରାଇ ଚାହିଁ ପାରିନି ଖଟିଆ ଆଡ଼େ। ପ୍ରେମର ଦର୍ଶନ, ପ୍ରେମର ବୈଚିତ୍ର୍ୟ ଓ ପ୍ରେମର ଅଭିଯୋଗଗୁଡ଼ିକରେ ନିଜକୁ ହଜାଇ ଦେଇଥାଏ।

ପଣତ କାନରେ ଲୁହ ଟିକିକ ପୋଛି ନେଉ ନେଉ, ନର୍ସ ଜଣକ ପଶି ଆସିଲେ, ଔଷଧ ଭରି ସିରିଞ୍ଜ୍ ଧରିଥାଆନ୍ତି।

କରୁଣ ଦୃଷ୍ଟିରେ ସନ୍ଧ୍ୟା ଚାହିଁଥାଏ ରୋଗିଣିଙ୍କୁ। ଇନ୍‌ଜେକ୍‌ସନ ଦିଆ ସରିଲା। ସ୍ପିରିଟ୍‌ର ଉତ୍କଟ ଗନ୍ଧ ଭରି ଗଲା ଘର ଭିତରଟା। ଅତି ବ୍ୟାକୁଳ ଭାବେ ସନ୍ଧ୍ୟା ପଚାରିଲା, "ସିଷ୍ଟର୍! କେତେବେଳେ ସେନ୍‌ସ ଫେରିବ ?" —"ହୋଇ ଆଉ ଅଧଘଣ୍ଟାଏ ଭିତରେ। କିନ୍ତୁ ପ୍ରଫେସର କହୁଥିଲେ, ତାଙ୍କୁ ଅଚେତା ଅବସ୍ଥାରେହିଁ ରଖିବାକୁ ପଡ଼ିବ।"

ସନ୍ଧ୍ୟା ନୀରବ ରହିଲା।

କଥାର ସୁଅ ବଦଳାଇ ନର୍ସ ଜଣକ କହିଲେ, "ଏଇଟା କି ବହି କି ?"

—"ଗୋଟିଏ ଉପନ୍ୟାସ।"

—"ହଉ ପଢ଼ି ସରନ୍ତୁ—ମୁଁ ନେବି।"

—"ଏଇଟା ପ୍ରକୃତରେ ଉପନ୍ୟାସ ନୁହେଁ ମ।"

—"ଆଉ କଣ ? ବରଂ ମୋଟା ବହିଟିଏ ହୋଇଚି !"

—"ଡ୍ରାଏଣ୍ଡ," ନମ୍ର ଗଳାରେ ସତ କଥା ଟିକକ କହିଲା ସନ୍ଧ୍ୟା ।

—"ଆପଣଙ୍କର ?" ପୁଣି ପ୍ରଶ୍ନ କଲେ ନର୍ସ ଜଣକ ।

—"ମୋ ଡ୍ରାଏଣ୍ଡ କାହିଁକି ହେବନ ; ମୁଁ କେବେ ଡ୍ରାଏଣ୍ଡ ଲେଖେନି ।"

—"ଅନ୍ୟର ଡ୍ରାଏଣ୍ଡ କେମିତି ପଢ଼ୁଛନ୍ତି ? ଆଚ୍ଛା ମେଲ ନା ଫିମେଲ୍ ?" ସନ୍ଧ୍ୟା ଗମ୍ଭୀରତା ବୋଳି କହିଲା,—"ମେଲ୍"

—"ତା ହେଲେ ନିଶ୍ଚୟ ଭଲ ଲାଗୁଥିବ ନୁହେ"—କହି ନର୍ସ ଜଣକ ଟିକଏ ହସିଲେ ।

—"ଡ୍ରାଏଣ୍ଡ କଣ ପଢ଼ିବାକୁ କାହାକୁ ଭଲ ଲାଗେ ?"

—"ତେବେ ପଢ଼ୁଛନ୍ତି କାହିଁକି ?"

—"ସମୟ କାଟିବା ପାଇଁ" ।

—"ହଉ ଚଳନ୍ତୁ । ପେସେଣ୍ଟଙ୍କ ହୋସ୍ ଆସିଲେ ମୋତେ ଖବର ଦେବେ" କହି ନର୍ସ ଜଣକ ତାଙ୍କର କର୍ମତତ୍ପର ଜୀବନ ଭିତରକୁ ଚାଲିଗଲେ ।

ପୁଣି ଘର ଭିତରେ ସନ୍ଧ୍ୟା ଏକା । ତାକୁ ଆଉ ମୋଟେ ଭଲ ଲାଗୁ ନଥାଏ । ଯେଉଁ ପ୍ରେମକୁ ଯୌବନ ଭିତରୁ ଅଲଗା କରି ଦେବାକୁ ସେ ବସିଛି, ସେଇ ପ୍ରେମ ଦୁନିଆରେ ସବୁଠି ଦେଖିବାକୁ ସେ ପାଉଛି । ଏଇଆ କେବଳ ତାର ଅବିବାହିତା ଜୀବନର ପ୍ରତିବନ୍ଧକ, ଏଣେ ପ୍ରବୃତ୍ତିର ସ୍ରୋତ ବେଳକୁ ବେଳ ଶକ୍ତ ହେଉଛି । ଭାବିଲା—

ପ୍ରେମ କଣ ଏ ଦେହର ଗୁଡ଼ ପିପାସା ? ଜୀବନରେ କଣ ପ୍ରେମକୁ ଦୂରେଇ ହେବନି ?

ସତରେ ଅବିବାହିତା ଜୀବନରେ ପ୍ରେମର ଶିହରଣ କି ଦାରୁଣ ଯନ୍ତ୍ରଣା ଦିଏ ?

ପର୍ଣ୍ଣ ନିଶ୍ୱାସଟିଏ ଛାଡ଼ି ପୁଣି ଚୌକି ଉପରେ ବସିପଡ଼ିଲା । ଆଖି ଆଗରେ ତାର ଅତି ପ୍ରିୟ, ଅଶୋକ ବାବୁଙ୍କ ଅଭିମାନଭରା ଛବିଟି ଠିଆ ହେଉଥାଏ । ଆଖି ବୁଜି ଦେଲେ ମଧ୍ୟ ସେଇ ଅଶୋକବାବୁଙ୍କୁ ହିଁ ଦେଖେ । ତାର ଇଚ୍ଛା ହେଉଥାଏ ସତରେ ହିଁ ଛୁଟି ଯାଆନ୍ତା ଅଶୋକ ବାବୁଙ୍କ ଅନ୍ୱେଷଣରେ ଏବଂ

ତାଙ୍କୁ ପାଇଲା ପରେ ପାଦ ଦୁଇଟା ଧରି ବହୁତ ଅନୁତାପ କରନ୍ତା । କ୍ଷମା ବି ମାଗନ୍ତା ।

କିନ୍ତୁ ପରିଣାମ କଣ ହେବ ?

ଯେତେ ଚେଷ୍ଟା କଲେବି ସମାଧାନ ମିଳେନା । ସମସ୍ତ ଏତେ ଗଡ଼ି ଯାଇଛି ଯେ ନା ଭୁଲି ହେଉଛି ନା ଭଲ ପାଇବା ଭିତରେ ପରିସ୍ଥିତିକୁ ବେଖାତିର କରି ହେଉଛି । ଏମିତି ଭାବି ଭାବି ସାମନା ଖଟିଆ ଆଡ଼େ ପୁଣି ଗୁହାଁଲା । ଅତି ବିକଳ ଆର୍ତ୍ତନାଦ ଧ୍ୱନିତୁଳ୍ୟଥାଏ ଚେତନାଶୂନ୍ୟ ଶରୀର ସ୍ୱରପଟେ । ଖୁବ୍ ଚରଳ ଯାଇ ସନ୍ଧ୍ୟା ପୁଣି ଭାବି ବସିଲା, "ସାମନାର ମୁମୂର୍ଷୁ ଜୀବନଟି, ଦୁଇ ଦୁଇଟା ମୃତ୍ୟୁ ସହିତ ଯୁଦ୍ଧ କରି କି କ୍ଲାନ୍ତ ନ ହୋଇ ପଡ଼ୁଛି ! ସ୍ୱାମୀର ଜୀବନ ପାଇଁ ସଂଗ୍ରାମ କରିବାକୁ ଶରୀରର ପ୍ରତିଟି ସ୍ନାୟୁ କି ଉଦ୍ବେଳ ବିକଳ ହେଉ ନଥିବ !"

ଆଉ ଭାବି ପାରିଲା ନାହିଁ । ଆଖିରେ ଲୁହ ଝୁରି ହେଇ ଗଲା । ଭଗବାନଙ୍କ ଉପରେ ଶତ ଅଭିଶାପ ଢାଳି ନିଶ୍ୱାସଟିଏ ମାରିଲା । ତାରି ଯେପରି ଇଚ୍ଛା ହେଉଥାଏ, ନିଜର ସୁସ୍ଥ ଜୀବନଟା ଦେଇ ସମ୍ମୁଖ ସଂଜ୍ଞାହୀନ ଶରୀରଟିକୁ ଉଠାଇ ଦିଅନ୍ତା । କିନ୍ତୁ ନିରୁପାୟ ! କଥାରେ ଅଛି "Life is not transferable" । ହାତ ଘଡ଼ିକୁ ଗୁହାଁଲା । ରାତି ୪ ବାଜିଲାଣି । ଶୀତଦିନର ରାତି ସରେନା ।

ସନ୍ଧ୍ୟାର ମାନସିକ ଅଶାନ୍ତ ଭାବଗତି ପଢ଼ିବାଠାରୁ ଖୁବ୍ ବଢ଼ି ଯାଇଥାଏ । ଏପରି ସେ କେବେ ଅନୁଭବ କରି ନଥିଲା । ଏଇ ଅନୁଭୂତି ଯେ ଭବିଷ୍ୟତ ଜୀବନ ଉପରେ କି ଗୁପ ଦେବ, ଏଇଆ ଭାବି ସେ ବିଶେଷ ଚିନ୍ତିତ ହେଉଥାଏ । କେତେକ କଣ ଭାବନା ଭିତରେ ସେ ଏତକ ବି ଭାବିବାରେ ବାଦ୍ ଦେଇନି, "ପ୍ରେମରୁହିଁ ମିଳେ ଶାନ୍ତି ଓ ପ୍ରେମରୁହିଁ ଜାତ ଅଶାନ୍ତି । ଜୀବନରୁ ସୃଷ୍ଟି ହୁଏ ପ୍ରେମ ଓ ପ୍ରେମରୁ ସୃଷ୍ଟି ଅନେକ ଜୀବନ । ପ୍ରେମରୁ ଜାତ ଅହିଂସା ଓ ଅହିଂସାରୁ ସୃଷ୍ଟି ମୈତ୍ରୀ । ମନୁଷ୍ୟ ପ୍ରେମ କରି ଶିଖିବା ଉଚିତ୍ । ପ୍ରେମର ବନ୍ୟାରେ ସାରା ଦୁନିଆକୁ ବୁଡ଼ାଇ ଦେବା ଉଚିତ୍ । କେବଳ ଯେ ଯୌବନରେ ପ୍ରେମ ଦରକାର ତା ନୁହେଁ । ପ୍ରତି କର୍ମକ୍ଷେତ୍ରରେ—ଶାସନରେ—ରାଜନୀତିରେ—ସବୁଠି ପ୍ରେମର ଆବଶ୍ୟକତା ଖୁବ୍ ବେଶି । ସ୍ୱାର୍ଥଶୂନ୍ୟ ପ୍ରେମରେ—କି ସୁଖ ! କି ଶାନ୍ତି ! କି ମୈତ୍ରୀ ! କି ସମୃଦ୍ଧ ଉନ୍ନତି ! !"

ସନ୍ଧ୍ୟା ବହୁତ ବ୍ୟସ୍ତବ୍ୟସ୍ତ ହେଇ ପଡ଼ିଲା । ସେ ଯାଏଁ ମନେ ମନେ ଅଶୋକ ବାବୁଙ୍କୁ ଖୁବ୍ ଭଲ ପାଇ ମଧ୍ୟ, ତାଙ୍କର ମଙ୍ଗଳ ପାଇଁ କେବେ ହେଲେ ତାଙ୍କରି ଆଗରେ ବି ତାର ଦୁର୍ବଳତାକୁ ପ୍ରକାଶ କରି ନଥିଲା । କିନ୍ତୁ ଡାଏରି ପଢ଼ିବା ପରଠାରୁ ବୈପ୍ଳବିକ ପରିବର୍ତ୍ତନ ଘଟିଲା ତା ଜୀବନରେ । ସେ ଚାହିଁଲା ଯାଇ ମିଶିଯିବ ଅଶୋକବାବୁଙ୍କ ଦେହରେ । ଏକ ପ୍ରାଣ, ଏକ ମନ ହେଇ ରହିବ । ହେଲେ ସତ ପାରିଲେ କିନା !

ଜାଗର ଆଖିର ନିଷ୍କ୍ରିୟତା ପ୍ରତି ବିରକ୍ତ ହୋଇ ଭାବିଲା, 'ହୁଏତ ଶୋଇଗଲେ ନିଜକୁ କିଛିଟା ସମୟ ପାଇଁ ହଜାଇ ଦେଇ ପାରିବ । କିନ୍ତୁ ଭାବିବନି । କୌଣସି ବିପ୍ଳବ ଓ ସଂଗ୍ରାମରେ ଭାଗ ନେବନି । ସେ ଯେମିତି ଦୃଢ଼ ହେଇ ଜୀବନ କଟାଉଥିଲା ସେମିତି କାଟିବ । ସେ ଯେଉଁ ନୀତି, ନିୟମ, ଶୃଙ୍ଖଳା ନେଇ ଦିନଗୁଡ଼ିକୁ ଡେଇଁ ଡେଇଁ ଚାଲୁଥିଲା ସେମିତି ଚାଲିବ । କାହା ପାଇଁ ସେ ଦୁଃଖିନୀ ହେବନି । ନାରୀ ହେଉଛି ଶକ୍ତି । ତେଣୁ ସେ ଖୁବ୍ ଶକ୍ତ ହେବ ।—

ତେବେ ଅଶୋକ ବାବୁ ? ! ତାଙ୍କୁ କଣ ଛାଡ଼ି ପାରିବ ? ତାଙ୍କ ପ୍ରତି ସେ କଣ ନିଷ୍ଠୁର ହେଇପାରିବ ? ନା···ନା···ସେ ପାରିବନି । ଦାର୍ଶନିକ, ସାତ୍ତ୍ୱିକ, ସଚ୍ଚା ପ୍ରେମିକ ଓ ସତ୍ ଚରିତ୍ର ଅଶୋକ ବାବୁଙ୍କୁ ସେ କେବେ ଦୂରେଇ ଦେବନି ! ସବୁବେଳେ, ଇହଲୋକ ଓ ପରଲୋକରେ ତାଙ୍କର ହେଇ ସ୍ତ୍ରୀ ରହିବ । କିନ୍ତୁ କଣ ବା କରିବ ସେ ? କେମିତି ବା ପରିଚୟ ଦେବ ? ଦୁନିଆର ପ୍ରତିଟା ଧୂଳି, ପ୍ରତିଟା ପବନ ବି ତାର ପିଚ୍ଛା ଧରିବ । ସବୁ ସହ୍ୟ ହେବ, କିନ୍ତୁ ଅବିବାହିତା ହେଇ ବାହାର ତାଚ୍ଛଲ୍ୟ, ଅପବାଦ ଓ ଉପହାସକୁ ସହିବା ବହୁତ କଷ୍ଟ । ତା ବାହାରେ·····ଅଶୋକ ବାବୁଙ୍କ ଆଗରେ ପରିଚୟ ଦେଇ ଲାଭ କଣ ? ଏତେ ଅଭିମାନ, ଗୁମାନକୁ କ'ଣ ସେ ଭାଙ୍ଗି ପାରିବ ? କେତେ ବୁଝାଇବ, କେତେ ଅନୁରୋଧ କରିବ, କେତେ ଭୁଲ ମାଗିବ, ହେଲେ ଝଞ୍ଜା ଓ ଝଡ଼ରେ ଯେଉଁ ଧୂଳିଟିକକ ଏ ଧରା ବକ୍ଷରୁ ହଜିଯାଇଛି ସେ କଣ ଫେରି ଆସିବ ?

ବେଳକୁ ବେଳ ଆହୁରି ନରମ ହେଇ ପଡ଼ିଲା ସନ୍ଧ୍ୟା । ଆଖିର ଲୁହ ବ୍ଲାଉଜ ଓଦା କରି ସାରିଲାଣି । ଅନୁତାପ-ଲୁହର ଉଷ୍ମତା ଅନୁଭବ କରୁ କରୁ ଖାଲି ଭାବୁଥାଏ ।

ତାପରେ ନିଜକୁ ପ୍ରଶ୍ନଷାକରି ନେଲା । ସତରେ କ'ଣ ସେ ଅଶୋକ ବାବୁଙ୍କୁ ଭୁଲି ଯାଇଚ୍ଛି ? ନା···ଭୁଲିନି, ତାଙ୍କ ପ୍ରତି ତାର ଯଥେଷ୍ଟ ପ୍ରେମ, ସ୍ନେହ ମମତା, ଆନ୍ତରିକତା, ବ୍ୟାକୁଳତା, ଭକ୍ତି ସବୁ କିଛି ଯେମିତି ଥିଲା ସେମିତି ଅଛି । ଟିକିଏ ବି କମିନି । ହେଲେ ମନୁଷ୍ୟତ ପରିସ୍ଥିତିର ଦାସ । ତେଣୁ ପରିଚୟ ଦେବାର ସୁଯୋଗ ପାଇନି । ଆଜି ଯଦିବା ପରିଚୟ ଦେବ, ଅଶୋକ ବାବୁ ଆଗଭଳି ତାକୁ ଭଲ ପାଇବେ ? ସେଇ କମନୀୟ ଶରୀରରୁ ଉଷ୍ମପ୍ରେମର ପ୍ରବାହ ତା ପାଇଁ କେବେ ବହିବ ? ଖାଲି ବହିବ ଅଭିଯୋଗ ପ୍ରବାହ ଓ ଝଗଡ ଅବହେଳା ପ୍ରତି ଆପେକ୍ଷିକ ପ୍ରଶ୍ନ । ପ୍ରେମର ସୁଧା ଆଉ ବହିବନି । "ନା···ନା ···ନା ବହିବନି", ପାଟିକରି ଖଟର ରେଲିଂ ଉପରେ ମଥାଟିକୁ ଥୋଇଦେଲା । ଦୀର୍ଘ ନିଶ୍ୱାସ ଭିତରେ "ଅଶୋକ ବାବୁ" ପଦକ ଶତ ଚୁନ୍ଧିତା ଭଙ୍ଗି ବାହାରି ପଡ଼ିଲା ପାଟିରୁ ।

ନାରୀର ଅବହେଳା ପୁରୁଷ ପ୍ରତି ସତରେ କି ସାଙ୍ଘାତିକ ! ତାର ଅନ୍ତର ଭିତରେ ଯେପରି ଗୋଟିଏ ପାପାଚାରି ଅମାବାସ୍ୟା, ଶତ ସହସ୍ର କପାଳୀର ଶିଖା ନେଇ ବୈଜ୍ଞାନିକ ଯୁଗର ଆଟମ୍‌ବୋମା, ହାଇଡ୍ରୋଜେନ ବୋମାର ଉଦ୍‌ଗିରଣ କରୁଥାଏ ।

ଏତିକିବେଳେ ହଠାତ୍ ପ୍ରଫେସର ପ୍ରଶାନ୍ତ ବାବୁ, ନର୍ସ ଓ କେତେ ଜଣ ଅଚିହ୍ନା ଭଦ୍ର ପୁରୁଷ ଓ ଭଦ୍ର ମହିଳା କେବିନ୍ ଭିତରକୁ ପଶି ଆସିଲେ । ସନ୍ଧ୍ୟା ଦୁଇରେଇ ଗଲା । ସେ କାହାକୁ ଚିହ୍ନେନା କିବା କିଏ ତାକୁ ଚିହ୍ନେନା । ତେଣୁ ବାରଣ୍ଡା ଉପରକୁ ସିଧା ଚାଲି ଆସିଲା ଏବଂ ମାୟାକୁ ଦେଖି ଅଟକି ଗଲା ଓ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ମାୟା······ତୁମେ ! କଣ ଭଲ ଲାଗିଲା ?"

—"ଛାଡ଼ ଅପା ମୋ ଭଲରୁ କ'ଣ ମିଳିବ" କହି କାନ୍ଦି ପକାଇଲା ମାୟା । ଅସରନ୍ତି ଲୁହକୁ ନିଜ ପଣତ କାନରେ ପୋଛୁ ପୋଛୁ ସନ୍ଧ୍ୟା, ଆଶ୍ୱାସନା ଭରି କହିଲା, "ଛି ମାୟା । ତୁମେ ଏମିତି ଭାଙ୍ଗି ପଡ଼ିଲେ ଚଳିବ ? ଜଳୁଥିବା ସଂସାର ଭିତରେ ତୁମେ ହିଁ ଶାନ୍ତିର ଝର । ଭକ୍ତ ଓ ଭଗବାନ ଭିତରେ ତୁମେହିଁ ଅରୁଣ ସ୍ତମ୍ଭ । ମୋ କଥା ଶୁଣ, କାନ୍ଦନି । ମୋ ରାଣ, ଧୈର୍ଯ୍ୟ ଧର । ତୁମେ କାହିଁକି ଉଠି ଆସିଲ, କହିଲ ।"

—"ମୁଁ କେମିତି ଶୋଇ ରହିବି ? ଖୁବ୍ ଅଥୟ ଲାଗୁଛି । ଭାଇଜଙ୍କ ଅବସ୍ଥା ଦେଖୁଛ ।"

ଏତକବେଳେ ଯୋରାର ବେଗ ବଢ଼ାଇ କେବିନ୍ ଭିତରୁ ଫେରି ଆସିଲେ ପ୍ରଶାନ୍ତବାବୁ । ମାୟା ଓ ସନ୍ଧ୍ୟାକୁ ଦେଖି ହଠାତ୍ ଅଟକି ଗଲେ । ଖୁବ୍ ଉଦ୍‌ବେଗ ପ୍ରକାଶ କରି କହିଲେ, "ମାୟା କେବିନ୍ ଭିତରକୁ ତୁମେ ଟିକଏ ଶୀଘ୍ର ଯାଅ । ଭାଉଜଙ୍କ ମା, ଭାଇ, ଭଉଣୀ ବଡ଼ ଅଥୟ ହୋଇ କାନ୍ଦୁଛନ୍ତି । ତୁମେ ଟିକଏ ଯାଇ ବୁଝାଅ । ମୁଁ ଭାଇଙ୍କ ପାଖକୁ ଯାଉଛି । ଶୀଘ୍ର ଯାଅ । ଭାଉଜଙ୍କ ପାଖରେ ଜଗିଥାଅ । ଅବସ୍ଥା ସିରିୟସ୍", କହି ଚାଲିଗଲେ ।

ପୁଣି କେତେଟା ଖୋଜପରେ ଅଟକି ଯାଇ କହିଲେ, "ମାୟା !! ତୁମେ ନିଜ ପ୍ରତି ହୁସିଆର ଥିବ । ବ୍ଲଡ୍ ପ୍ରେସର ତୁମରି ଖୁବ୍ କମ୍ ଅଛି ।"

ନିଶ୍ୱାସର ପ୍ରଖରତା ପ୍ରଶାନ୍ତବାବୁଙ୍କ ଉଦ୍‌ବିଗ୍ନତାକୁ ବେଶ୍ ପରିସ୍ଫୁଟ କରିଥାଏ ।

ସନ୍ଧ୍ୟା ସେମିତି ଠିଆ ହୋଇଥାଏ । ମାୟା ଓ ପ୍ରଶାନ୍ତ ବିପରୀତ ଦିଗକୁ ଚାଲିଗଲେ । କିଛି ସମୟ ପରେ ମୁହଁ ପୋତି ସନ୍ଧ୍ୟା ବି ନିଜ ଖଟିଆ ଆଡ଼େ ଆଗେଇଲା ।

ନିଜ ଖଟିଆ ପାଖରେ ପହଞ୍ଚି ଦେଖିଲା ଲାଇଟ୍‌ଟା ଅଫ୍ ହୋଇଯାଇଛି । ଦୂରରୁ ଗୋଟିଏ ବଲ୍‌ବର ଅସ୍ପଷ୍ଟ ଆଲୁଅ ତା ଶେଜ ଉପରେ ପ୍ରତିଫଳନ ସୃଷ୍ଟି କରୁଛି ।

ତାପରେ ଶୋଇବାର ଚେଷ୍ଟାକରି ସେ ନିଜକୁ ଆଉଜାଇ ଦେଲା । କିନ୍ତୁ କଥାରେ ଅଛି ଖାଇବାର ସମୟ ଗଡ଼ିଗଲେ ଭୋକ ହୁଏନା, ଶୋଇବାର ସମୟ ଗଡ଼ିଗଲେ ନିଦ ଆସେନା । ତେଣୁ କେତେ କଣ ଭାବିବା ଭିତରେ ଉଠିଯାଇ ଲାଇଟ୍ ଅନ୍ କଲା ଏବଂ ମେଲି ବସିଲା ଡାଏରୀଟି । ଗୁଡ଼ାଏ ଅଲେଖା ପୃଷ୍ଠା ପରେ ପୁଣି ଆରମ୍ଭ ହୋଇଛି—

୨୨ ନଭେମ୍ବର ରାତ୍ର ୧୧-୨୦ ମିନଟ

ପ୍ରିୟେ, ଅତି ସୁଖର କଥା—

ପେଟ ରୋଗର ଉତ୍କଟ ଯନ୍ତ୍ରଣାର ଉପଶମ ପାଇଁ ପୁଣି ଥରେ ଡାକ୍ତରଙ୍କ ଆଶ୍ରୟ ନେଇଥିଲି । ଆଜି ଡାକ୍ତରଙ୍କ ଶୁଭେଚ୍ଛା ଓ ଶୁଭାଶୀର୍ବାଦ ନେଇ ଫେରୁଛି । ଆଉ ଔଷଧର ଆବଶ୍ୟକତା ନାହିଁ । ବିଲ୍‌କୁଲ୍‌ ନାହିଁ ।

ଆଜି ମୁଁ ପରାକ୍ରମଶାଳୀ କର୍କଟ ଜୀବାଣୁ ଦ୍ୱାରା ଆକ୍ରାନ୍ତ ହୋଇ ପଡ଼ିଛି । ମୁଁ କର୍କଟ ରୋଗୀ । ହସ୍ପିଟାଲ କାନ୍ଥରୁ କିଛି ଠିକ୍‌ କରି ପାରୁନାହିଁ ।

ପ୍ରିୟେ, ଏବେ ହିଁ ମୋର ଅଭିଯାନ ସଫଳ ହୋଇଛି । ଅନ୍ତିମ ଯାତ୍ରାର ପଥ ସୁସ୍ପଷ୍ଟ ଓ ନିର୍ମଳ, ସମାଧାନ ପାଇଁ ପଥ ପରିଷ୍କାର । ଲକ୍ଷ୍ୟସ୍ଥଳରେ ପହଞ୍ଚିବା ସୁନିଶ୍ଚିତ । ଦୁଇ ଦୁଇ ଥର ସିନା ମୃତ୍ୟୁ ଫେରାଇ ଦେଇଥିଲି, ହେଲେ ଆଜି ମୃତ୍ୟୁର ପ୍ରଚଣ୍ଡ ଆକ୍ରମଣ ।

ଆଉ କଣ ଲେଖିବି ? ଟିକଟ ସିନା ମିଳିଲା, କିନ୍ତୁ ଗାଡ଼ି ଆସିବା ବହୁତ ବିଳମ୍ବ ହେବ । ଟ୍ରେନ ଆସିଲେ ବି ହଠାତ୍‌ ଜାଗା ପାଇବି କି ନାହିଁ ସନ୍ଦେହ । ହଉ, ଠିଆ ହୋଇ ଅନ୍ତତଃ ଚାଲିଯିବି । ପ୍ଲାଟଫର୍ମରେ, ସମାଧାନ ନେଇ ହସି ହସି ମୋତେ ବିଦାୟ ଦେବନି ?

ଓଃ……କି ସୁଖର ଯାତ୍ରା ! ! କେବଳ ଦୁଃଖ ଲାଗେ ତୁମକୁ ଛାଡ଼ି ଚାଲିଯିବି । ଆଉ କିଛି ଲେଖିପାରୁନି । ପରେ……… ।

୨୪ ନଭେମ୍ବର ରାତ୍ର ୭-୧୫ ମିନଟ

ପ୍ରିୟେ ! ଆଜି ଖାଲି ତୁମର ଶୁଭେଚ୍ଛା କାମନା କରୁଛି । ଆଶୀର୍ବାଦ କର ମୁଁ ଯେପରି ଶୀଘ୍ର ମୃତ୍ୟୁ କବାଟରେ ପହଞ୍ଚିଯିବି ।

ଆଜି ତ ଭଲ ହେବାର ଆଶା ଏକବାର୍ ମରିଯାଇଛି । ତେଣୁ ଏ ଶରୀରର ସ୍ଥିତି କାହିଁ ? ହେଲେ "ଶୁଭସ୍ୟ ଶୀଘ୍ରମ୍", ସବଣର ସଜମୀତ ରୂପ ଆଶୀର୍ବାଦ ହିଁ ଭିକ୍ଷାକରେ ।

ବହୁତ ଦୁଃଖ ଲାଗେ ତୁମଠାରୁ ଚିର ବିଦାୟ ନେଇ ଯାଉଛି । ତୁମରି ଶତ ଅବହେଳା ଓ ଘୃଣା ସତ୍ତ୍ୱେ ତୁମକୁ ଭଲ ପାଇବାଠୁ ବଳି ମୋର ସୁଖ କିଛି ନ ଥିଲା । ଏମିତି କି ଏ ହୃଦୟର ଦୁଃଖକୁ ତୁମ ଅନୁରୋଧ ରକ୍ଷାକରି ଆଜିଯାଏଁ ବି କାହାକୁ ଜାଣିବାକୁ ଦେଇନି । ଲୁଚି ଲୁଚି କାନ୍ଦେ ଓ ଲୁଚି ଲୁଚି ସହେ । ଏ ଯାଏଁ ଲୁଚିଛି ଏବଂ ମୁଁ ମଲା ପରେ ବି ଲୁଚିଥିବ ।

ହଁ ଯେତେବେଳେ ଚାଲି ଯାଉଛି, ଅନ୍ତତଃ ତୁମର ସମସ୍ତ ପ୍ରଶ୍ନର ଉତ୍ତର ଦେଇଦିଏ । ତୁମର ଗୁଡ଼ାଏ ପ୍ରଶ୍ନ ନିରୁତ୍ତର ହୋଇ ରହିଛି ମୋର ପାଖରେ । ଏ ଯାଏଁ ନୀରବ ରହିବାର ଏକମାତ୍ର କାରଣ ହେଉଛି—ମୋ ପାଖରେ ଏତେ ଉତ୍ତର ଅଛି ଯେ ତୁମରେ ପ୍ରଶ୍ନ ପାଇବନି । ଆଜି ମୋର ଅକାଟ୍ୟ ଯୁକ୍ତି ଓ ସୁଦୀର୍ଘ ଉତ୍ତରରେ ତୁମର ସମସ୍ତ ପ୍ରଶ୍ନକୁ ବ୍ୟର୍ଥ କରି ଦେଲେ, କାଳେ ତୁମ ମନରେ ଆଘାତ ଆସିବ ଭାବି ମୁଁ ନୀରବ ରହିଥିଲି । ନାରୀର ଯୁଗେ ଯୁଗେ ଜିତା ପଟ ରହୁ—ଏହା କାମନା କରି ବଞ୍ଚିଥିବା ଭିତରେ କହି ପାରିନି କହା ପାରିବନି । ତେଣୁ ମୁଁ ମଲାପରେ ଯଦି ପଢ଼ିବାର ଦୁର୍ଯୋଗ ପାଅ, ତେବେ ମୋ ସମାଧି ନିକଟରେ ଉତ୍ତରଗୁଡ଼ିକ ରୁଚିକରି ହେଲା କି ନାହିଁ ଜବାବ ଦେବ, ହେଲା ? ମୋର ଅନୁରୋଧ ।

ରାତି ୧୨ଟା ।

ବହୁତ ଦିନ ତଳେ, ପତ୍ରାଳି ବିପ୍ଲବ ପରେ ଶାନ୍ତିଚୁକ୍ତି ସ୍ୱାକ୍ଷର କରି ଥରେ ଗୋଟିଏ ଚିଠିରେ ଲେଖିଥିଲି, "ଜଣକ ସହିତ ଆପଣ ଯେତେବେଳେ ବାନ୍ଧି ହୋଇ ସାରିଲେଣି, ଆଉ କ'ଣ ମୋତେ ମନେ ରଖିବେ ? ପ୍ରକୃତ ଜାବିତ ତୁମରି ଭଲ । ତେଣୁ ମୋତେ କଣ ନିବିଡ଼ ବାହୁବନ୍ଧନ ଭିତରେ

ରଖି ପାରିବେ ? ବିଶ୍ୱାସ ହେଉନି । ସତରେ କ'ଣ ମୋତେ ଭୁଲି ଯିବେ ?"

ଏହାର ଉତ୍ତରରେ ମୁଁ ଏତିକି କହିପାରେ—ଜଣଙ୍କ ପାଖରେ ଏ ଶରୀରଟିକୁ ରଖିବାର ବହୁ ପୂର୍ବରୁ ତୁମକୁ ମୋର ହୃଦୟଟି ଦେଇ ସାରିଛି ।

ସେ ଯାହା ହେଉ, ମୁଁ କେବେ ଚାହିଁ ନଥିଲି ହୃତପିଣ୍ଡ ଓ ଫୁସ୍‌ଫୁସ୍‌କୁ ଅଲଗା କରି ରଖିବା ପାଇଁ । ବାର ବାର କରି ବହୁବାର ଚେଷ୍ଟା କରିଛି ଦୁଇଟିଯାକ ଏକାଠି ତୁମ ପାଖରେ ରଖିବା ପାଇଁ । କିନ୍ତୁ ତୁମେ ପହିଲି ଉଲ୍ଲାସ ବିପ୍ଳବରେ ଏତେ ବ୍ୟାପୃତ ଥିଲ ଯେ, ମୋଟେ ଶୁଣିଲନି । ତୁମର ଏକମାତ୍ର ଇଚ୍ଛାଥିଲା ମୋତେ ପରାଜୟ କରିବା । ସେଇଆ ହେଲା । ପରାଜୟ ସ୍ୱୀକାର କଲି । ତଥାପି ଅନୁରୋଧ କଲି ଏବଂ ଶେଷରେ ତୁମରି ଅଲକ୍ଷରେ ଦୁଇଟିଯାକ ତୁମ ପାଖରେ ରଖିଲି ।

ତୁମେ କିନ୍ତୁ ବହୁତ ନିଷ୍ଠୁର ହେଇ ପଡ଼ିଲ । ଏତେ ଜୋରରେ ଧକ୍‌କାଟିଏ ଦେଲ ଯେ ଫୁସ୍‌ଫୁସ୍ ଓ ହୃତ୍‌ପିଣ୍ଡ ଅଲଗା ଅଲଗା ହେଇଗଲା । ଜଖମ ହେଇଥିବା ଫୁସ୍‌ଫୁସ୍‌ଟିକୁ ରକ୍ତାକ୍ତ ଅବସ୍ଥାରେ ଫେରାଇ ଆଣିଲି । ହୃଦୟ ବା ହୃତପିଣ୍ଡକୁ ଆଣି ପାରିଲିନି, ଯେହେତୁ ତମର ପାଦତଳେ ଚାପି ହେଇ ଯାଇଥିଲା । ଶେଷରେ ବିନା ରକ୍ତ ସଞ୍ଚାଳନରେ କେବଳ ନିଶ୍ୱାସ ପ୍ରଶ୍ୱାସ ମାଧ୍ୟମରେ ବଞ୍ଚି ରହିବାକୁ ପଡ଼ିଲା । ଆଉ ବି କ୍ଷତବିକ୍ଷତ ଫୁସ୍‌ଫୁସ୍‌ର ସେବା ପାଇଁ କୌଣସି ନାରୀର ସାହାଯ୍ୟ ନେବାକୁ ହେଲା । ଖାଲି ସେଥିପାଇଁ ଯେ ମୁଁ ବାହା ହେଲି ତା ନୁହେଁ; ପ୍ରବୃତ୍ତି, ପ୍ରକୃତି ଓ ସମାଜ ନିକଟରେ ଅବାଧ୍ୟ ହେବା ଆଦୌ ସମ୍ଭବ ହେଲାନି । ଏଣେ ଭଗବାନଙ୍କ ସୃଷ୍ଟିର ସ୍ୱତଃସିଦ୍ଧ ଧର୍ମ ଓ ଶୃଙ୍ଖଳାକୁ ଛିନ୍ନ କରିବାକୁ ବି ଅକ୍ଷମ ଥିଲି । ଏତେ ବାଧ୍ୟବାଧକତା ଭିତରେ ମୁଣ୍ଡ ନୁଆଁଇବା ପୂର୍ବରୁ ମୃତ୍ୟୁର ଆଶ୍ରୟ ନେଲି । ସେବି ଫେରାଇ ଦେଲା । ଶେଷରେ ନିଃସହାୟ ଓ ଦୁର୍ବଳ ହୋଇ ସୃଷ୍ଟିର ଚିରନ୍ତନ ନୀତି ଆଗରେ ଖାଲି କାପୁରୁଷଙ୍କ ଭଳି ମୁଣ୍ଡ ନୁଆଁଇଲି; ବିବାହ କଲି ।

କିନ୍ତୁ ହୃତ୍‌ପିଣ୍ଡଟି ଚିରଦିନପାଇଁ ତୁମ ପାଖରେ ରହିଗଲା । ଏଥର ବୁଝିପାରିଲ ?

ସେତିକିରେ ବି ଇତିହାସର ଅବସାନ ହେଲାନି । ପହିଲି ବିପ୍ଳବରୁ ଫେରି ଆସି ଶାନ୍ତ କୂଳରେ ଆବଦ୍ଧ ହେଲ । ପରିଅସ୍ତ ପ୍ରେମର ସୁଧାଢାଳି ତୁମ

ନିକଟରେ ଥିବା ହୃତ୍ପିଣ୍ଡର ଯନ୍ତ୍ରଣା ଦୂର କରିପାରିଥିଲି । ଫୁସ୍ଫୁସ୍ର ସେବିକା ବି ତାର ସବୁ କଷ୍ଟ ବେଇ, ସବୁ କଷ୍ଟ ତ୍ୟାଗ କରି, ଖୁବ୍ ଆନ୍ତରିକତା ଓ କର୍ମନିଷ୍ଠା ସହ ଫୁସ୍ଫୁସ୍ର ଯନ୍ତ୍ରଣା ପୋଛି ନେଲା । କେବଳ ମୋ ଠାରୁ ସେ ପାଇଛି ହୃତ୍ପିଣ୍ଡ ଅଭାବରେ ଆଖିରୁ ଅଜସ୍ର ଲୁହ । ଆଜି ତୁମେ ଆନ୍ତରିକ ଭଲ ପାଇବାର ପ୍ରତିଦାନରେ ଦେଇଛ ଦ୍ୱିଗୁଣ ରକ୍ତାକ୍ତ ବିପ୍ଳବ ।

ବିଜ୍ଞାନ ଯୁଗରେ ସ୍ୱପ୍ନ କେବେ ମିଥ୍ୟା ହୋଇ ପାରେନା । ତେଣୁ ବିନା ରକ୍ତ ସଞ୍ଚାଳନରେ ଏ ଶରୀର ବଞ୍ଚି ନପାରି ଫେରି ଯିବାକୁ ବସିଛି ଏଇ ଧୂଳି ଧୂସରିତ ଧରାବକ୍ଷରୁ ।

ଏଥର ହେଲା ? ଆଜି କେତେ ତ୍ୟାଗ କରିଥାଆନ୍ତ କୁହ ?

ହଁ···ଭୁଲି ଯାଉଛି ଆଜି ଗୋଟିଏ କଥା । ତୁମେ ଲେଖିଥିଲ, "ପୁରୁଷ ଜାତି ଭ୍ରମର ଭଳି" । ମୁଁ ମାନୁଛି । ସମସ୍ତେ ବି ସେଇଆ କୁହନ୍ତି; ଆଜି ଯେ ମୁଁ ଅନୁଭବ ନ କରୁଛି, ତା ନୁହେ । ହେଲେ ବିଶ୍ଳେଷଣ କରିଯାଉ ।

ଯଦି ଶହ ପିପାସୀ ଭ୍ରମରର ପିପାସା ମେଣ୍ଟିବା ପାଇଁ ଫୁଲ ବକ୍ଷରେ ଅସରନ୍ତି ମଧୁ ଥାଆନ୍ତା, ତେବେ ଭ୍ରମର କଣ ଉଡ଼ି ଯାଆନ୍ତା ଅନ୍ୟ ଫୁଲକୁ ? ଯେତେବେଳେ ଭ୍ରମର ଦେଖେ, ତାର ପିପାସା ମେଣ୍ଟିବା ପୂର୍ବରୁ ଫୁଲ ପରିତୃପ୍ତତା ପାଇବାର ପୁଂକେଶରର ସମସ୍ତ ମଧୁ ଗର୍ଭକେଶର ଉପରେ ଢାଳି ଦେଇଛି ଅତୃପ୍ତ ଭ୍ରମର ଆଉ କଣ ବା କରନ୍ତା ?

ଦ୍ୱିତୀୟତଃ ତୁମେ ଭ୍ରମରର ଦୋଷ ଦେଇ ଫୁଲ କଥା ମୋଟେ ଭାବୁନା, ଥରେ ଭାବି ଦେଖିଲ । ଭ୍ରମରର ଯେମିତି ଦୋଷ ଗୋଟିଏ ଫୁଲରୁ ଅନ୍ୟ ଫୁଲକୁ ଯିବା, ସେମିତି ଫୁଲର କଣ ଓଲଟା ଦୋଷ ନାହିଁ ?

ସେ ଯାହା ହେଉ, ଏ ସବୁ ଭଗବାନଙ୍କ ସୃଷ୍ଟି । ଗୋଟିଏ ଭ୍ରମର ପାଇଁ ଯେତେବେଳେ କୋଟିଏ ଫୁଲର ସୃଷ୍ଟି, ସେତେବେଳେ ଭ୍ରମରକୁ ଅତୃପ୍ତ ପିପାସାର ପ୍ରବୃତ୍ତି ଦେବାଟା କଣ ଭଗବାନଙ୍କ ଭୁଲ ? ?

ହେଲେ, ଭ୍ରମର ସହିତ ପୁରୁଷର ତୁଳନା ଗୋଟିଏ ବ୍ୟର୍ଥ ଓ ହତାଶ ଜୀବନର ନିର୍ବୋଧତା । ମନୁଷ୍ୟ ପ୍ରବୃତ୍ତି ଭ୍ରମର ଓ ଫୁଲର ପ୍ରବୃତ୍ତିଠାରୁ ପୃଥକ୍ । ମନୁଷ୍ୟ ସୃଷ୍ଟି ଭିତରେ ଜଣକର ସୀମାବଦ୍ଧ ତୃପ୍ତି ଓ ଆଉ ଜଣକର ଅମାପ,

ଅସରନ୍ତ ଓ ଅସୀମ ପିପାସାର ଝର । ତେଣୁ ମନୁଷ୍ୟ ଜୀବନରେ ପ୍ରେମର ସମାଧାନ ମୃତ୍ୟୁରେ ହିଁ ଘଟେ । ନଚେତ୍ ଏ ଧନ୍ଦବଷଟରେ ମନୁଷ୍ୟ କେଲଫିସ୍ ଠାରୁ ଆସି ଆସି ଏଠି ଲାଗି ନଥାନ୍ତା ।

ମୋ କଥା ଯଦି ବ୍ୟକ୍ତିଗତ ଭାବେ ପଚାର, ତେବେ ମୁଁ ଏତିକି କହିପାରେ, ମୋର ଜନ୍ମଟା ଗୋଟାଏ ଭୁଲ୍ । My very birth is an error । ଗୋଟିଏ ନାରୀଠାରୁ ଧକ୍କା ଖାଇ ସୁଦ୍ଧା ତାର ପ୍ରତିଶୋଧ ନାରୀ ଜାତି ଠାରେ ଏ ଯାଏଁ ନେଇନି । ଯଦି ତୁମେ କେବେ ସନ୍ଦେହ କର—ତୁମକୁ ଭୁଲି ଯାଇଛି କିମ୍ବା ତୁମକୁ ଦୂରେଇ ଦେଇଛି ବୋଲି; ତେବେ ତୁମ ନିଜ ଛାତିରେ ହାତମାରି ଦେଖ, ମୋର ହୃତପିଣ୍ଡର ସ୍ପନ୍ଦନ ଅଛି କି ନାହିଁ ଜାଣି ପାରିବ ।

ଅଉ ଅଧିକ କଣ ଲେଖିବି ? ରାତି ବେଶୀ ହେଲାଣି ।

୩୦ ନଭେମ୍ବର ରାତି ୮-୩୦ ମିନିଟ

ତମର ଆଉ ଗୋଟିଏ ପ୍ରଶ୍ନ ମନ ପଡ଼େ—"ମଦ କାହିଁକି ଖାଅ ? ସେଥିରୁ କଣ ବା ପାଅ ?"

ପ୍ରକୃତରେ କହିବାକୁ ଗଲେ ମଦ ଖାଇଲେ ମନ, ପ୍ରାଣ ଓ ଶରୀର ନିଶାସକ୍ତ ହୁଏ । ଅର୍ଥାତ୍ ନିଜର ଆୟୁତ୍ତ ବାହାରେ ନିଜକୁ ରଖେ । ନିଜକୁ ନିଷ୍କ୍ରିୟ ହୋଇପଡ଼େ ଓ ବିବେକ ନିଜଠାରୁ ଦୂରେଇ ଯାଏ । ତାପରେ ଆସେ ମନ । ନିଶାସକ୍ତ ମନର ବେଗ ଓ ଉତ୍ସାହ ବଢ଼ିଯାଏ । ପ୍ରତ୍ୟେକ ସ୍ନାୟୁ ଆନ୍ଦୋଳିତ ହୁଏ । ରକ୍ତ ସଂଚ୍ଚାଳନ ପ୍ରଖର ହୁଏ । ମାଂସପେଶୀର ଉଷ୍ଣତା ଓ ଶକ୍ତି ଖୁବ୍ ବଢ଼ିଯାଏ । ତେଣିକି ମନୁଷ୍ୟ ଯେଉଁ ଗୋଟିଏ ଭାବନା ବା ଆଶା, ଉତ୍ତେଜନାରେ ଧାଏଁ, ସେ ଗୋଟିକ ଛଡ଼ା ଅନ୍ୟ କୌଣସି କଥାକୁ ମନ ଯାଏନା । କେବଳ ଗୋଟିଏ ସରଳ ରେଖାରେ, ମାଦକତା ସହିତ ସମାନ୍ତରାଳ ଭାବେ ମନ ଧାଏଁ । ଉତ୍ସାହ, ଆବେଗ, ଉତ୍ତେଜନା, ଦମ୍ଭ, ସାହସ ଶତ ଶତ ଗୁଣ ବଢ଼ିଯାଏ । ଭଲ-ମନ୍ଦ, ସୁନ୍ଦର-ଅସୁନ୍ଦର, ଠିକ୍-ଭୁଲ, ସୁଖ-ଦୁଃଖ,

ଗୁରୁତା-ଶୂନ୍ୟତା, ଏମିତି ସବୁ କିଛି ବିପରୀତର ସମନ୍ୱୟ ଘଟେ । ଅଧିକ କିଛି ବୁଝାଇବା ବୋଧହୁଏ ଦରକାର ନାହିଁ ।

କିନ୍ତୁ ମୁଁ କାହିଁକି ମଦଖାଏ ଜାଣ ?

ମୁଁ କେବେ ଆଗରୁ ଛୁଇଁ ନଥିଲି । ଆଉ ବି ଯଥେଷ୍ଟ ଘୃଣା କରୁଥିଲି । ତୁମେ ଯେତେବେ ପଥୁଲିବାର ଧକ୍କା ଦେଇ ବିପ୍ଳବ ତୋଳିଲ; ତୁମ ଅତ୍ୟାଗ୍ରହର ସୀମା ଟପିଲି; ସେତେବେଳେ ମୁଁ ନିଜେ ଏକାକୀ ସଂଗ୍ରାମରେ ପାରିଲିନି । ମଛଘୁଞ୍ଚା ଦେଲି । ଏଣେ ପ୍ରତିଟି କ୍ଷତ ଜାଗାରୁ ରକ୍ତ ଧାର ଧାର ବୋହିବାରେ ଲାଗିଲା । ପୁରୁଷ ହୋଇ ପଛଘୁଞ୍ଚା ଦେବାକୁ ବିବେକ ମନା କଲା । ତେଣେ ପଛଘୁଞ୍ଚା ଦେଇ ପରାଜୟଶାଳୀନୀ ନାରୀର ପିପାସା ପୂରଣ କରିବାକୁ ମନ ବାଧ କଲା । ବିବେକ ମନର ସଂଗ୍ରାମ ଭିତରେ ଶରୀରଟି ଜଳି ଉଠିଲା । ସେତେ-ବେଳେ କଣ ବା କରି ଥାଆନ୍ତି ? ଏକେତ ଆଧ୍ୟାତ୍ମିକତାର ଆଶ୍ରୟ ନେଇ ମନକୁ ଦୂରେଇ ଥାଆନ୍ତି, କିବା ମାଦକତାର ଆଶ୍ରୟ ନେଇ ବିବେକକୁ ଦୂରେଇ ଥାଆନ୍ତି । ଏତକ ଛଡ଼ା ଅନ୍ୟ ରାସ୍ତା ନଥିଲା ।

କିନ୍ତୁ, ପ୍ରଥମଟି ପାରିଲିନି । ଆଧ୍ୟାତ୍ମିକତାର ଆଶ୍ରୟ ନେବାକୁ ହେଲେ ଶରୀରରେ ଶକ୍ତି, ଦମ୍ଭ ଓ ସାହସ ଦରକାର । ସେତକ ମୋର ନଥିଲା । ତେଣୁ ଅତି ସହଜ, ଯଦିଓ ଖର୍ଚ୍ଚାନ୍ତ, ସୁରାପାନର ଆଶ୍ରୟ ନେଲି । ବିବେକ ଦୂରେଇ ଗଲା । କେବଳ ତୁମରି ରୂପଟିହିଁ ମୋ ପାଖରେ ସର୍ବସ୍ୱ ହୋଇ ରହିଲା । ଶେଷରେ ନାରୀ ସାମନାରେ ପରାଜୟ ସ୍ୱୀକାର କରିବା ମୋର ବ୍ରତ ହୋଇ ପଡ଼ିଲା । ଆଉ ଆଜି ବି ସେଇ ପରାଜୟ ସ୍ୱୀକାର କରି ଚାଲିଯାଉଛି ।

ତଥାପି ସମୟେ ସମୟେ ବିବେକ ଓ ମନର ସଂଗ୍ରାମ ଘଟେ । ସେଥିରୁ ଯେଉଁ ଲୁହ ଟିକିକ ବହେ, ସେଥିରେ ମୁଁ ଖୁବ୍ ଶାନ୍ତି ପାଏ । ଆଜି ମଦ ନଖାଇ ଥିଲେ ପେଟର ଯନ୍ତ୍ରଣାକୁ ଭୁଲି ମୋର ଅଭିଯାନ ତୋଳି ପାରି ନଥାନ୍ତି ।

ବିଶ୍ୱାସ କର । ତୁମ ରାଣ ଦେଇ କହୁଛି । ମୁଁ ଧନୀ ହେଲେ ବିଳାସ କିମ୍ବା ସୌଖୀନ କିମ୍ବା ଅନ୍ୟକିଛି ସ୍ୱାର୍ଥପାଇଁ ନିଶାର ଆଶ୍ରୟ ନେଇନି, କେବଳ ଏକାନ୍ତରେ ସୁଦୂର ଆକାଶର ନୀଳିମା ଭିତରେ ତୁମରି କଳ୍ପନାର ଛବି ସହିତ କିଛିଟା ସମୟ କଟାଇ ଶରୀର ଓ ମନକୁ ବିଶ୍ରାମ ଦିଏ । ଲୁହ ଛଡ଼ା ହସ କେବେ ଦେଖିନି, ତୁମରି ସ୍ମୃତି ଛଡ଼ା ଅନ୍ୟ କୌଣସି ବିଳାସରେ ମାତିନି ।

ତା ବାହାରେ, ଅକ୍ରମ ମୃତ୍ୟୁ ଗାଇଁ ସୁଖ ଗୋଟିଏ ସ୍ଲୋ ଉଏଜନ । ସେଇ ବାଟ ଦେଇ ସଠିକ୍ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ସୁନିଶ୍ଚିତ । ଜଙ୍କଟ ଫ୍ରିଲଟ୍‌ରେ ଶରୀରର ସମସ୍ତ ସ୍ନାୟୁ, ତନ୍ତୁ, ରକ୍ତ କଣିକା ଏବଂ ଅନ୍ତ ଓ ଯକୃତକୁ ବାର ବାର ଉତ୍ତେଜିତ କରି ଶେଷରେ ପୂର୍ଣ୍ଣ ନିଷ୍କୃତି ପାଇବା ସହଜ ହୁଏ ।

ରାତି ବେଶୀ ହେଲାଣି । ଲୁହ ଦେଇ ଦେଇ ଆଖିଟା କ୍ଲାନ୍ତ ଓ ମନଟା ଶ୍ରାନ୍ତ ହେଲାଣି । ଯାଏଁ......।

୨ ଡ଼ିସେମ୍ବର ରାତି ୧୧ଟା

ପଡ଼ୋଶୀ ଶାନ୍ତ ଚୂଳକୁ ଅବମାନନା କରି ଦ୍ୱିଖଣ୍ଡୀଦ୍ୱାର କପାଟ ଠେଲିବା ଭିତରେ ଦିନେ ତୁମେ ପ୍ରଶ୍ନ କଲ, "କାହିଁକି ସବୁବେଳେ ଏମିତି ମୁହଁ ଶୁଖାଇ ବସୁଛ ? ଏତେ ଭଜ ପଢ଼ୁଛ କାହିଁକି ? ତୁମର କଣ ଟିକିଏ ପ୍ରେରଣି ନାହିଁ ?

ସେଦିନ ଫେରିଲା ବେଳେ ବାଟରେ ଭେଜାଏ ହସିଚ । ପ୍ରିୟା ପୁଣି ବୃହେଁ ପ୍ରିୟତାରୁ ଗମ୍ଭୀରତା ! ହଉ, କେଉଁଠି ହୁଏତ ଗମ୍ଭୀରତାକୁ ଭଲପାଇ ମୋ ପାଖରେ ଅଭାବ ଆବିଷ୍କାର କରୁଛ । ନୁହେ ? ବାହାରର ବୃକଟକ୍‌ଣ ଗମ୍ଭୀରତା ଦେଖି ତୁମେ ଯଥେଷ୍ଟ ପସନ୍ଦ କରିଛ ।

ଅବଶ୍ୟ ମାନୁଛ । ସାମୟିକ ଭାବେ ପ୍ରେମ ବୃହେଁ ଗମ୍ଭୀରତା, ଠିକ୍ ଯେପରି ଉତ୍ତମ ଗଣତନ୍ତ୍ର ବୃହେଁ ସମାଜବାଦତନ୍ତ୍ରାଞ୍ଚରେ ଏକଛତ୍ରବାଦ । ହେଲେ, ଟିକିଏ ବେଶି କହାଇଗଲେ ଦେଶଟା ଛାରଖାର ହୋଇଯାଏ, ତୁମେ ଜାଣ ? ଏକଛତ୍ରବାଦରେ ବ୍ୟକ୍ତିତ୍ୱ ବଢ଼ିପାରେ, କିନ୍ତୁ ଦେଶର ସମୂହ ସ୍ୱାର୍ଥର ସମୃଦ୍ଧି ହୁଏନା । ତେଣୁ, ହେ ପ୍ରିୟେ, ଗାମ୍ଭୀର୍ଯ୍ୟ ଦେଖାଇ ମୁଁ ବ୍ୟକ୍ତିତ୍ୱ ଚାହେଁନା, ବରଂ ନରମତା ଦେଖାଇ ପ୍ରେମର ସାମ୍ୟବାଦ ଚାହେଁ । ସେଥିରେ ପ୍ରେମର ଯଥେଷ୍ଟ ଉନ୍ନତି ଘଟେ, ଶାନ୍ତି ବି ମିଳେ । ଗାମ୍ଭୀର୍ଯ୍ୟ ତଳେ ପ୍ରିୟାର ବୁକୁରେ ଯେଉଁ ଭିତରି ବିଦ୍ରୋହ ଖେଳିବ, ସେଥିରେ ପ୍ରିୟା ଆଖିରୁ କି ଅଶାନ୍ତିର ଲୁହ

ନ କହିବ ! ଶେଷରେ ଏତିକ କହି ରଖୁଛି—ମୋ ପରେ ତୁମେ ବୁଝି ପାରିବ, ପ୍ରିୟା ପାଖରେ ପ୍ରିୟର ଗାମ୍ଭୀର୍ଯ୍ୟ କ ଜଘନ୍ୟ !

ଏତିକ ମନେ ରଖିଥାଅ ପ୍ରିୟେ, କେବଳ ଛଳନା-ପ୍ରେମରେ ହିଁ ଗାମ୍ଭୀର୍ଯ୍ୟ ପ୍ରକାଶ ପାଏ ।

ବିଶେଷତଃ, ଯାହାକୁ ତୁମେ ହସିବାକୁ ଦେଇନା—ଏଣେ କାନ୍ଦିବା ଗୃହିଁନା, ସେ ମୁହଁ ଶୁଖାଇବା ଛଡ଼ା ଆଉ କଣ କରିପାରେ ?

୩ ଡ଼ିସେମ୍ବର ରାତି ୯-୨୦ ମିନଟ

ତାପରେ ଆଜ ହଠାତ ପ୍ରଶ୍ନ କଲ, "ଆପଣ କାହିଁକ ଆଶା ରଖି ମୋ ପାଖକୁ ଆସନ୍ତି ? × × × ଆଶାର ବିନାଶରେ ଶରୀରର ବିନାଶ ଘଟେ । ତେଣୁ ମୁଁ କିଛି ଆଶା ରଖେନ ।"

ବାଃ·········ଚମତ୍କାର ସଫେଇଟିଏ ଦେଲ । ଆଶା ନଥିଲେ ମଣିଷ ବଞ୍ଚିବଟି ? ବିନା ଆଶାରେ କେବେ ଭଲ ପାଇବାର ସୃଷ୍ଟି ହୋଇପାରେ ? ଆଚ୍ଛା······କହିଲ, ତୁମେ ଯେତେବେଳେ 'ମୁଁ ଭଲପାଏ' ବୋଲି କହି ଝାଉଁଳ ପଡ଼ିଥିଲ, ସେତେବେଳେ ତୁମର କଣ କିଛି ଆଶା ନଥିଲା ? ତା ବୋଲି ମୁଁ କୌଣସି ନିର୍ଦ୍ଦିଷ୍ଟ ଆଶା କଥା କହୁନ । ଯେକୌଣସି ଆଶା ନଥିଲେ ଯୁବକ ଓ ଯୁବତୀ ମଧ୍ୟରେ ଭଲ ପାଇବାର ସୃଷ୍ଟି ହୋଇ ନପାରେ ।

ତାପରେ, ଭଲ ପାଇବା ବା ସ୍ନେହ କରିବା ମାନେ କ'ଣ ? ଜଣକର ଦାବୀକୁ ମାନିନେବା ପାଇଁ ଅନ୍ୟକୁ ବାଧ୍ୟ କରିବା । ତେଣୁ ସେଇ ମନାଇ ନେବାର ଆକାଂକ୍ଷାଟା କଣ ଆଶା ନୁହେ ?

ତା ବାହାରେ·········, ତୁମେ ନାରୀ ହୋଇ—ଯୁବତୀ ହୋଇ—ରକ୍ତ ମାଂସର ଶରୀର ନେଇ, ଗୋଟିଏ ଯୁବକର ଆନ୍ତରିକ ପ୍ରେମକୁ ଧକ୍କା ଦେବା

ପଛରେ ତୁମର କିଛି ସ୍ୱାର୍ଥ ବା ଆଶା ନାହିଁ ? ତୁମେ କଣ ଚାହିଁନା, ତୁମପ୍ରତି ଭଲ ପାଇବାଟା ଆପେ ଆପେ ପ୍ରଚୁର ଭାବେ ଅଜାଡ଼ି ହୋଇ ପଡ଼ୁ ଓ ତୁମେ ବାହାର ଦୁନିଆ ନିକଟରେ ଖୁବ୍ ଭଲ, ସଚ୍ଚରିତ୍ରା, ଉଦ୍ଧୀପନାଶୂନ୍ୟ, ଅଭିଳାଷ ଶୂନ୍ୟ, ନିଷ୍କଳଙ୍କ ଯୁବତୀ ବୋଲି ପରିଚୟ ଦେଉଥିବ ? ତୁମେ କଣ ଚାହିଁନା, ବାହାରର ବାସନା, କାମନା, ପିପାସା ସବୁ କିଛି ଅନୁଭବ କରି, ସଦାସର୍ବଦା ଅନାଦୃତ ପ୍ରେମରେ ବୁଡ଼ି ରହିଥିବ ଏବଂ ଖାଲି ପରିସ୍ଥିତିର ଆଳ ଦେଖାଇ, ସମୟ ଓ ସମାଧାନର ଆଶ୍ରୟ ନେଇ, ନିଜର ପବିତ୍ରତା ଉପରେ ପ୍ରିୟ ପ୍ରତି ନିଷ୍ଠୁରତା ଓ ଅବହେଳାର ଶତ ଆଘାତ ଦେଉଥିବ ??

ନାରୀ ସିନା କୁହେ 'ପୁରୁଷ ଜାତିଟା ଭ୍ରମର ପରି', ମୁଁ କହିବି ନାରୀ ଜାତିଟା କୁସୁମ ଭଳି । କଣ ଭୁଲ ହେବ ? ନିଜର ସ୍ୱାର୍ଥ ହାସଲ ହେଲା ପରେ······। ଯାଉ; ମତ ପରିବର୍ତ୍ତନ ନକରି ମୁଁ ହାରିଲି, ଆଉ ତୁମେ ମତ ପରିବର୍ତ୍ତନ କରି ଜିତିଗଲ । ଏ ସୃଷ୍ଟିରେ ମୁଁ ଗୋଟାଏ ବ୍ୟତିକ୍ରମ । My very birth is an exception.

ହଁ ଯେତେବେଳେ ମୋ ଆଶା କଥା ଉଠାଇଛ, ମୁଁ ସତ ସତ କଥା କହି ଯାଉଛି—

ମୋର ଯଥେଷ୍ଟ ଆଶା ରହିଛି । କିନ୍ତୁ ଜାଣ କି ପ୍ରକାର ଆଶା ? ମୁଁ ଚାହେଁ,—'ମୋ ପ୍ରିୟା ଦିନର ଟିକିଏ ଧଳା ଓ ରାତିର ଟିକିଏ କଳା, ଚାନ୍ଦର ଟିକିଏ ଜୋଛନା ଓ କୁମୁଦର ଟିକିଏ ବ୍ୟାକୁଳତା, ଶିଶିରର ଶୀତଳତା ଓ ଘାସର ନରମତା, ଆକାଶର ଟିକିଏ ନିଳିମା ଓ ପାଣିର ଟିକିଏ ସ୍ୱଚ୍ଛତା, ଧ୍ରୁବତାରାର ସତ୍ୟତା ଓ ଧରାର ସହିଷ୍ଣୁତା ନେଇ ମୋର ଆଖିରୁ ଦୁଇଧାର ଲୁହ ପୋଛି ଦିଅନ୍ତାକି!' ବିଶ୍ୱାସ କର । ଏତକ ଛଡ଼ା ମୁଁ ଆଉ କିଛି ଚାହେଁନା । ଏତକ ପୂରଣ ହୋଇଥିଲେ ମୋର ସୁନାର ସଂସାରଟା ଆଜି ଜଳି ପୋଡ଼ି ଛାରଖାର ହେବାକୁ ବସି ନ ଥାନ୍ତା ।

ଆଉ ଗୋଟିଏ କଥା ଶୁଣିଲ ! ସେ ଦିନର ଜନିଆ—ଜୋସ୍ନା ରାତିରେ (ଯେଉଁ ଦିନ କି ଆଇ ଲଭ ୟୁ ଏଜ୍ 'କ୍ୟୁ' ଲଭସ୍ 'ୟୁ' ବୋଲି କହିଥିଲି । ) ଯଦି ଏଇ ପ୍ରଶ୍ନଗୁଡ଼ିକ ତୁମକୁ ମୁଁ ପଚାରିଥାଆନ୍ତି, ତୁମ ଜୀବନରେ ମରୁଭୂମିର ଉଆଁସ ଅନ୍ଧାରି ରାତି କି ଦାରୁଣ ଯନ୍ତ୍ରଣା ଦେଇ ନଥାନ୍ତା ? ଗୁଡ୍ନାଇଟ୍ ।

୬ ଡ଼ିସେମ୍ବର ଘଣ୍ଟା ୯-୨୦ ମିନଟ

ତାପରେ ଆଉ ବାପନେ କହିଲ, "ଶୁଣିଥିଲି ଏଣିକି ଆପଣ ସାନ ଭଉଣୀ ଭଳି ମୋତେ ଦେଖିବେ । × × × କାହିଁକି ଦେଖୁନ ?"

ଧନ୍ୟ ହେ ମୋର ପ୍ରେମିକା ! ତୁମେ ତୁମର ପ୍ରେମିକକୁ ଶାନ୍ତି ଦେଇ ପାରିଲ ? Thank you ।

ଯୁଗେ ଯୁଗେ ଏ ନାରୀ ଜାତିଟା ତାର ସ୍ୱାର୍ଥ ସିଦ୍ଧି ପାଇଁ ମତ ପରିବର୍ତ୍ତନ କରୁଥାଉ , ଏହାହିଁ କାମନା କରି ମୁଁ ଚାଲିଯାଉଛି । ତେବେ ଥରେ ଭାବି ଦେଖିଲ, ଯଦି ଦୁନିଆର ସମସ୍ତ ପ୍ରେମିକ ତାଙ୍କ ପ୍ରେମିକାଙ୍କୁ, ଏଇ ଉପଦେଶକୁ ଆଦର୍ଶ କରି ଭଉଣୀ ଭଳି ଦେଖିବେ, ତେବେ ଏ ସୃଷ୍ଟି ରହିବକି ? ?

ତୁମେ, ମୋର ଏ ବ୍ୟଥା, ଏ କଷ୍ଟ, ଏ ନର୍ଯ୍ୟାତନା ଓ ଏ ଯନ୍ତ୍ରଣାର ଉପଶମ ପାଇଁ ଏଇ ଉପଦେଶ ଦେଲ ? ଏତେ ତ୍ୟାଗ ଓ ସାଧନାର ଫଳ କଣ ଏଇଆ ?

ବିବାହିତା ସ୍ତ୍ରୀକୁ କୋଳରେ ଧରି, ବହୁତ ପଚାରି, ନିଷ୍ଠୁର, ନିର୍ମମ ପ୍ରିୟାର ଏଇ ଉପଦେଶରେ ବ୍ୟଥିତ ହୋଇ ଲୁହ ଦେବା କି କଷ୍ଟ ! ! ! ତୁମେ ଯେତେବେଳେ ଆନ ପୁରୁଷର ଶଯ୍ୟାଶାୟିନୀ ହେବ, ତେବେ ହୁଏତ ଅନୁମାନ କରି ପାରିବ—ପରିସ୍ଥିତିଟା କି ଭୟଙ୍କର ହୋଇ ଉଠେ ।

ଆହୁରି—

ତୁମେ ଯେତେବେଳେ ଭରା ଯୌବନର ଉଷ୍ମତା ନେଇ, ସୁନେଲି ଜୋସ୍ନାର ସୁଷମା ଭିତରେ ଆତୁର ଓ ବ୍ୟାକୁଳ ନୟନରେ ମୋର ଶୟନ କକ୍ଷକୁ ଚାହୁଁଥିଲ, ସେତେବେଳେ କଣ ତୁମ ଆଖିରେ ଓ ହୃଦୟରେ ମୁଁ ଭାଇ ହୋଇଥିଲି ? ତୁମେ ଯେତେବେଳେ ଅଶ୍ରୁ କାଳିରେ ପ୍ରେମ ପତ୍ର ଲେଖିଥିଲ, "ହେ ପ୍ରିୟ ! ଥରେ ମୋ ନିକଟରେ ଧରା ଦେଇ ଚାଲିଯାଅ । ନିର୍ଜନତାର ସୁଯୋଗ ନେଇ ଆପଣଙ୍କର ପ୍ରତିମୂର୍ତ୍ତିଟି ମୋ ଚତୁର୍ଦ୍ଦିଗରେ ଘୁରି ବୁଲି ମୋତେ ଅସ୍ତ ବ୍ୟସ୍ତ କରି ଦେଉଛି । ନିଶ୍ଚୟ ଆସିବ !" (ଲେଖି ନଥିଲ ?) ସେତେ-ବେଳେ ମୋଠାରେ କେତେ ଆଶା ରଖି ନଥିଲ ? କଣ ଭାଇଠାରୁ ଯାହା ପାଇବା କଥା ସେଇଆ ?

ଗୁଡ଼......। ଆଜ ତୁମେ ପୁରୁଷ ସଂସ୍ପର୍ଶର ପ୍ରାଚୁର୍ଯ୍ୟ ଭିତରେ ମୋ ଯୌବନଠାରେ କିଛି ଆଶା ରଖିନା । ତେଣୁ ତୁମେ ଚାହିଁ ମୁଁ ତୁମକୁ ଭଉଣୀ ଭଳି ଏଣିକି ଦେଖିବ । ନୁହିଁ ?

୯ ଡ଼ିସେମ୍ବର ରାତି ୧୧ଟା

ତୁମଠାରେ ଏମିତି ବହୁତ ପ୍ରଶ୍ନ ରହିଛି । କିନ୍ତୁ ମୋ ସମୟ ଖୁବ୍ କମ୍ । ଯେଉଁଗୋଟି ନିହାତି ଦରକାର ଓ ଗୁରୁତର, କେବଳ ସେଗୋଟିର ଉତ୍ତର ଦେଇ ଯାଉଛି । ଆଉ କେତେଟା ଦିନ ପରେ ମୋ ଉପରେ ଚାଲିବ ଛୁରୀ ଓ କଇଁଚିର ଅତ୍ୟାଚାର । ଯଦି ଅପରେସନ୍‌ରୁ ଜୀବନ ନେଇ ଫେରେ, ତେବେ ଗୋଟି ଗୋଟି କରି ସମସ୍ତ ପ୍ରଶ୍ନର ଉତ୍ତର ଦେବି ।

ତୁମେ ଶେଷରେ ଲେଖିଥିଲ, "ଭଲ ପାଇବାର ସମସ୍ୟା ଓ ସମାଧାନ ଆମ ଜୀବନରେ ଯେତେବେଳେ ହୋଇ ସାରିଛି, ଆଉ ଅଧିକ କାହିଁକି ଆଶା କରୁଛନ୍ତି ମୋଠାରୁ ? ସବୁବେଳେ ମୋର 'ପିଛା କାହିଁକି ଧରୁଛନ୍ତି ? ତୁମର ଏ ବ୍ୟାକୁଳତାର ମୂଲ୍ୟ ବା କଣ ?"

ତୁମର ଏ ପ୍ରଶ୍ନ ହିଁ ମୋ ଜୀବନ ପଥରେ ମୃତ୍ୟୁସହ ସଂଗ୍ରାମର ସୂତ୍ରପାତ କରିଛି ।

ପ୍ରିୟେ ! ଜୀବନର ଦ୍ୱିଧା ସମସ୍ୟା କି ସମାଧାନ ଅଛି । କିନ୍ତୁ ଭଲ ପାଇବାର କାହିଁ ?

ବାରମ୍ବାର ସମସ୍ୟା ଓ ସମାଧାନ ଉପରେ ଗୁରୁତ୍ୱ ଆରୋପ କରି ମୋତେ ବହୁତ ଦୁର୍ବଳ କରି ଦେଇଛ । ତୁମେ ଏତକ ଲେଖିବା ପରଠୁଁ ହିଁ ଆରମ୍ଭ ହୋଇଛି ମୋର ଅନ୍ତିମ ଅଭିଯାନ । ତୁମର ଏଇତକ ଯୁକ୍ତିପାଇଁ ଆତ୍ମହତ୍ୟା ଅପରାଧରେ ଆଇନ୍‌ର ବିରୁଦ୍ଧାଚରଣରେ ଦୋଷୀ ସାବ୍ୟସ୍ତ ହୋଇ ଦଣ୍ଡ ଭୋଗୁଛି । ତେଣୁ ମୃତ୍ୟୁ ପୂର୍ବରୁ ଏଇ ପ୍ରଶ୍ନର ବିଶ୍ଳେଷଣ କରି ଯାଉଛି ମୁଁ ।

ଆଚ୍ଛା କହିଲ ! ଭଲ ପାଇବାର ସମାଧାନ ଯଦି ଥାଆନ୍ତା, ତେବେ ଆଧୁନିକ ବିଜ୍ଞାନର ବିଚକ୍ଷଣ ସୂତ୍ର ନେଇ ଏତେ ଡ଼ାକ୍ତର ଓ ଏତେ ଔଷଧ ଥାଇ ଥାଇ, ଜନ୍ମ ଓ ମୃତ୍ୟୁର ଅଗାଧ ପ୍ରେମ ଛିଣ୍ଡି ପାରନ୍ତା ? ଘନ ଘନ ଘଡ଼ଘଡ଼ି ଓ ବଜ୍ରଚୁମ୍ବନ ପରେ ବି ପାଦତଳର ଭୂଇଁ ଓ ମୁଣ୍ଡ ଉପରର ଆକାଶ ମଧ୍ୟରେ ଏତେ ପ୍ରେମ ରହିପାରନ୍ତା ? ନିଦାଘ-ଖରାରେ ଏ ଭୂଇଁଟା ସିଝି, ପୋଡ଼ି ଛାରଖାର ହେବା ପରେ ବି ସବୁଜ ଗୁଳ୍ମ ଧରନ୍ତା ? ଆନେକର ଅଭାବରେ ଶୀତ ଦିନରେ ସମସ୍ତ ପତ୍ର ଝଡ଼ିବା ପରେ ବି ଗଛରେ ପତ୍ର ଓ ଫୁଲ ବିକଶିତ ହୁଅନ୍ତା ? ଦିନର ଶେଷରେ ଚନ୍ଦ୍ରା ଆସିଲା ପରେ ମଧ୍ୟ ସକାଳ ଆସି ମଣିଷକୁ ଉଠାନ୍ତା ? ପ୍ରେମ କେଉଁଠି ସରନି ପ୍ରିୟେ, ସରିନ । କେଉଁଠି ସମାଧାନ ହେଇନ । ପ୍ରେମର ବୃତ୍ତାକାର ଟଣା ଓଟରା ଭିତରେ ସୃଷ୍ଟିର ଉତ୍ପତ୍ତି ଓ ସ୍ଥିତି ।

ସଖି ! ତୁମେ କେଉଁଠି ପଢ଼ିଚ ? କେଉଁଠି ଶୁଣିଚ ? ପୃଥିବୀ ସୃଷ୍ଟିଠାରୁ ଆଜଯାଏ ଯେତେ ଇତିହାସ ପ୍ରକାଶ ପାଇଛି, ତାର ପୃଷ୍ଠା ପରେ ପୃଷ୍ଠା ଓଲଟାଇ ଦେଖ, କେଉଁଠି କେବେ ପ୍ରେମର ସମାଧାନ ହୋଇଛି କି ?

ହିଁ...ଏଇଆ ହେଇପାରେ, ଭଲ ପାଇବାରେ ଧକ୍‌କାଦେଇ ଜଣେ ଏହାର ସମସ୍ୟା ଓ ସମାଧାନ ହେଇ ସାରିଛି ବୋଲି ଦାବୀ କରି ପାରେ । ମେଘୁଆ ଆକାଶ ଦେଖି ସଞ୍ଜ ହେଇ ସାରିଲାଣି ବୋଲି ଭାବି ଜବରଦସ୍ତ ଶୋଇବାକୁ ଚେଷ୍ଟା କରିପାରେ । ହେଲେ ସଖୀ, ସୁନେଲି ସ୍ୱପ୍ନଗୁଡ଼ିକ କଟିବା ପରେ ଦେଖାଯିବ ଆହୁରି ସମସ୍ୟା ଅଛି । ସହିନ କିବା ସରିବନି । ଏକ ତରଫା କେବେ ସମାଧାନ ହୁଏନା । ସେମିତି ହେଇଥିଲେ, ଏତେ ବଡ଼ ତାଜମହଲ ଧରା-ବୁକୁରେ ମୁଣ୍ଡ ଟେକି ନଥାନ୍ତା ।

ମୃତ୍ୟୁ ଛଡା ସମାଧାନ କେଉଁଠି ହୁଏ ? ମୃତ୍ୟୁ ଛଡ଼ା ସମସ୍ୟା କେଉଁଠି ସରେ ? ମୃତ୍ୟୁଛଡ଼ା ଭଲ ପାଇବାର ଶେଷ ଆଉ କେଉଁଥିରେ ଅଛି ? ଭଲ ଭାବେ ବିଚାର କରି ଦେଖ ।

୧୦ ଡ଼ିସେମ୍ବର ରାତି ୧୦ଟା

ହିଁ......ତୁମେ ହୁଏତ କେବେ ସୁନେଲି ସପ୍ନ ମଝିରେ ଅଟକି ଯାଇ ଭାବିପାର, ତୁମ ପ୍ରିୟ ତୁମଠାରୁ କିଛି ଆଶାକରି ନିରାଶରେ ଫେରି ଯାଉଛି ।

ସେଇଟା ଅବଶ୍ୟ ନିର୍ବାଟ ସତ ।

ତା ବୋଲି ମୁଁ ଗ୍ୱହେଁନା ତୁମର ପରଶ; କିବା ଗ୍ୱହେଁନା ଏ ପ୍ରିୟାର ଅଶ୍ରୁଧାରକୁ ତୁମ ପଣତ କାନରେ ପୋଛିନିଅ । ଏମିତକି ତୁମର ପରଶରେ ମୋ ମରଣ ଘୁଞ୍ଚି ପାରିବାର ନିଶ୍ଚିତତା ଥିଲେ ମଧ୍ୟ ଗ୍ୱହେଁନା । ମୋ ସମସ୍ତ ସମ୍ଭାବନାଣି । ସମାଧାନ ବି ନିକଟରେ ହୋଇଯିବ । ଯେତେବେଳେ ସମସ୍ତ ଶାନ୍ତି, ତୃପ୍ତି, ଆନନ୍ଦ, ହସ, ଖୁସି, ମିଳନରୁ ମୁଁ ବଞ୍ଚିତ, ସେତେବେଳେ ନିଷ୍କ୍ରିୟ ଓ ନିଃସହାୟ ଜୀବନ ନେଇ ବଞ୍ଚି ରହିବାଟା କଣ ନ୍ୟାୟ, ଯୁକ୍ତି ଯୁକ୍ତ, ସୁନ୍ଦର ଓ ଆଇନସମ୍ମତ ହେବ ? ? ? ତେଣୁ ଆଜ ମୋ ପ୍ରିୟାର ସୁଖ, ସମ୍ଭୋଗ, ସୁନେଲ ସ୍ୱପ୍ନ ଓ ସୁଷମା ଭରା ହସ ପାଇଁ ମୁଁ ହସି ହସି ମରଣ ପଥର ଯାତ୍ରୀ ହୋଇଛି ।

ତେବେ......ମୋର ଅନ୍ତିମ ଆଶା ଟିକିଏ ଲେଖି ଯାଉଛି । କେବଳ ମୁଁ ଗ୍ୱହେଁ—ମୋ ଅଶ୍ରୁ ଟିକିକ ଗଙ୍ଗାରେ ମିଶାଇ ଦିଅନ୍ତୁ ଏବଂ ମୋ ଘରେ ଗୋଟିଏ ସମାଧି ତୋଳି ମୋର କବିତାଗୁଡ଼ିକ ତାର ଭିତରେ ରଖି ଦିଅନ୍ତୁ । ଅନ୍ତତଃ ମୁଁ ମଲାପରେ ମୋ ପ୍ରେତାତ୍ମାଟା ଶାନ୍ତିରେ ତାର ଭିତରେ ଶୋଇ ଯାଆନ୍ତା । ଅନ୍ୟସବୁ ଆଶା ମରି ମରି ଏତିକି ଲାଗି ରହିଛି ମୋର ଅନ୍ତିମ ଶଯ୍ୟା ନିକଟରେ । ସତ କହିବାକୁ ଗଲେ, ଏ ଜୀବନଦଶା ଭିତରେ ତୁମର ପରଶ ମୋଟେ ଆଉ ଗ୍ୱହେଁନା ।

ହଁ......ଆଉ ଟିକିଏ ଗ୍ୱହେଁ—ମୋ ମୃତ୍ୟୁରେ ତୁମଠୁଁ ଦୁଇଟୋପା ଲୁହ । ପ୍ରିୟେ ! ତୁମର ସେ ଦିନର ଏତେ ଆନ୍ତରିକ ପ୍ରିୟ ଏତିକି ମାତ୍ର ଗ୍ୱହେଁ, ଦେଇ ପାରିବନି ?

୨୮ ଡ଼ିସେମ୍ବର ରାତି ବାରଟାଏ

ମେଲ ସର୍ଜିକାଲ ଓ୍ୱାର୍ଡ ।

ବୋଧହୁଏ ଏ ହେବ ମୋ ଡ଼ାଏରୀର ଶେଷ ପୃଷ୍ଠା ।

ଏ ଭିତରେ ବହୁତ ଦିନ ମୁଁ ମାଇବ ଭଳି ଯାଇଥିଲି । କ'ଣ ଲେଖିବି ? ଅନବରତ ଖାଲି ଲୁହ ବହୁଛି । ଲେଖିବି କେମିତି ? ନିଦ୍ରା ଓ ଅନ୍ୟ ମନସ୍କତା ଭିତରେ ବି ଆଖି ଲାଗିଯାଇ ଯାଉଛି ।

ଯାହା ହେଉ ବୋଧହୁଏ ଏ ମୋର ଶେଷ କର୍ତ୍ତବ୍ୟ । କାଲିକା ଡାକ୍ତରଙ୍କ ଛୁରୀ ଓ କଇଁଚିର ଉତ୍ପାତ ଚାଲିବ ମୋ ଉପରେ । ମୃତ୍ୟୁ ଦେଇ ମୃତ୍ୟୁକୁ ଦୂରେଇବାପାଇଁ ଡାକ୍ତରଙ୍କ ଶେଷ ଚେଷ୍ଟା । ତେଣିକି ଭଗବାନଙ୍କ ଇଚ୍ଛା ।

ସତ କହିବାକୁ ଗଲେ, ଅପରେସନପାଇଁ ମୋର ଭୟ ନାହିଁ କିମ୍ବା ତା ପରର ଯନ୍ତ୍ରଣା ପାଇଁ ମଧ୍ୟ ମୋର ଖାତିର ନାହିଁ । କେବଳ ଆଶଙ୍କା ହୁଏ—ଯଦି ଚୈତନ୍ୟହାରକ ବାଷ୍ପ (ଜେନେରେଲ ଏନେସ୍ଥେସିଆ) ଦେଇ କିଛି ସମୟ ପାଇଁ ସଜ୍ଞାହୀନ କରି ଅପରେସନ କଲାପରେ, ମୋର ଚୈତନ୍ୟ ନ ଫେରେ ଏବଂ ସେଇ ନିଦ୍ରା ଯଦି ମହାନିଦ୍ରାରେ ପରିଣତ ହୁଏ, ତେବେ ଏ କଣ ମୋର ଶେଷ ଝିଙ୍କ ହେବ ? ଆଉ ମୋ ପ୍ରିୟା ପାଇଁ ଟିକିଏ ଭାବି ପାରିବିନି ! ଆଉ ମୋ ପ୍ରିୟା ପାଇଁ ଲୁହ ଓ ଲହୁ ଦେଇ ପାରିବିନି ! ଏଇ କଣ ମୋର ଶେଷ ମୃତ୍ୟୁ ?

ପ୍ରିୟେ ସକାଳ ହେଲେ କୁଆ ବୋବେ । ହେଲେ ଉଲ୍ଲୁକକୁ କହିଦେବ ସେ ଆଉ ଯମକୁ ଡାକିବନି । ବରଂ ବାର ବାର ମୋ ପ୍ରିୟା ପାଇଁ ମରଣ ଦେଇ ମୋର ବିବାହିତା ସ୍ତ୍ରୀ ପାଇଁ ବଞ୍ଚି ରହିବାକୁ ଚାହେଁ ।

ବଡ ଅଥୟ ଲାଗୁଛି, ଶେଷ ମୁହୂର୍ତ୍ତରେ ମୋର ଭାବନା ଓ ଆଶାର ଦିଗ ବଦଳି ଯାଇଛି । ପଥ ବଦଳି ଯାଇଛି । ଭୟ ଓ ଆଶଙ୍କାରେ ଗ୍ରସ୍ତ ଥରୁଛି । ସତରେ ମୁଁ ମରିଯିବି ?

ହୃଦୟଟା କାହିଁକି ଅତି ବିକଳ ଭାବେ କାନ୍ଦୁଛି । ଦୁଇ ଦୁଇ ଥର ମୃତ୍ୟୁକୁ ମୁଁ ହସି ହସି ଆବାହନ କରିଥିଲି ସତ, ହେଲେ ଏଇଥର କାହିଁକି ପଛଘୁଞ୍ଚା ଦେବାକୁ ଇଚ୍ଛା ହେଉଛି । ଆଜି ମୋର ଏ କି ପରିବର୍ତ୍ତିତ ଭାବନା !!! ଯେଉଁ ନାରୀ ତାର ସବୁ କିଛି ଦେଇ ସେବାକରି ଆସିଛି—ସ୍ୱାମୀର ଯଥେଷ୍ଟ ଅତ୍ୟାଚାରକୁ ହସି ହସି ସହିଛି —ସ୍ୱାମୀର ସୁଖ ଶାନ୍ତି ପାଇଁ ପ୍ରତିଟି ରକ୍ତ ବିନ୍ଦୁ ଦେଇ ଗର୍ବ ଅନୁଭବ କରିଛି— ସ୍ୱାମୀଠାରୁ ଲୁହ ଛଡା ଆଉ କିଛି ନ ପାଇ ମଧ୍ୟ ଦିନେ ବି ନିଜ ଭାଗ୍ୟକୁ ନିନ୍ଦା କରିନି, ତାକୁ ବିଧବା କରି ଏ ଦୁନିଆରେ ଛାଡି

ଯିବାପାଇଁ ମୁଁ ମୋଟେ ଚାହୁଁନ । ପ୍ରଭୁ……ତାକୁ ବିଧବା କରି କଣ ସତରେ ରଖିବ !!? ନା…ନା… । ପ୍ରଭୁ ମୋ ଜୀବନ ନେଇପାର, ମୋତେ ମୃତ୍ୟୁ ଦେଇ ପାର କିନ୍ତୁ ସତ୍ୱୀ, ସାଧ୍ୱୀ, ସ୍ୱାମୀଭକ୍ତା, ସେବାପରାୟଣା ସ୍ତ୍ରୀର ହାତରୁ କାଚ ଓ ମୁଣ୍ଡରୁ ସିନ୍ଦୂର କାଢ଼ି ନିଅନି । ଏମିତି କିଛି କ'ଣ ଗୋଟାଏ ସମାଧାନ ନାହିଁ ? ପ୍ରିୟ ବଞ୍ଚି ଥାଉ ଥାଉ ଯଦି ପ୍ରିୟା ପାଏ ସମାଧାନ, ତେବେ ଉପରୋକ୍ତ ସମାଧାନ ତୁମ ଦୁନିଆରେ କଣ ସମ୍ଭବ ନୁହେ ?

ପ୍ରଭୁ ! ତୁମର ସୃଷ୍ଟିରେ—ତୁମରି କୃପାରେ ସବୁ କିଛି ପାଇଛି । ଧନ, ଜନ, ଜୀବନ, ଯୌବନ କେଉଁଥିରେ ମୋର ଅଭାବ ନାହିଁ । ହେଲେ କେବଳ ମୋର ପ୍ରେମ ପାଇଁ ପ୍ରେମିକା, ଏତେ ସ୍ୱପ୍ନ ପାଇଁ ରାତି, କିବା ଏତେ ଖୋଜ ପାଇଁ ବସ୍ତୁ ପାଇନି । ଗୋଟାଏ ମୃତ୍ୟୁପରେ ମୁଁ ଚାହେଁ ଜୀବନ ଓ ଅସଂଖ୍ୟ ଯୁଦ୍ଧ ପରେ ମୁଁ ଚାହେଁ ଶାନ୍ତି ।

ଭଗବାନ ! ତୁମରି ଦୁନିଆରେ, ତୁମରି ସୃଷ୍ଟିରେ ଉପଯୁକ୍ତ ସମାଧାନର କେବେହେଲେ ବ୍ୟତିକ୍ରମ ଘଟିନି । ତେବେ, ଏଇଠି ତୁମେ କି ସମାଧାନ ଦେଉଛ, ତୁମକୁ ହିଁ ଜଣା । ମୁଁ କେବଳ ଭିକ୍ଷା ମାଗୁଛି, ମୋର ବିବାହିତା ସ୍ତ୍ରୀକୁ ବିଧବା ନ କରିବା ପାଇଁ ।

ରାତି ୮ ଟା

ହେ ମୋର ପ୍ରେମିକା ! ତୁମରି 'ନାଁ' ଟିକୁ ତୁମ ଅନୁରୋଧ ରକ୍ଷାକରି ଦିନେ ବି କେଉଁଠି ଲେଖିନି କିମ୍ବା ପାଟିରେ ଧରିନି । ତେଣୁ ଯଦି ଏ ଶିଖା ଜୀବନର ଶେଷ ଦୀପ୍ତି ହୁଏ, ତେବେ ମୁଁ ମଲା ପରେ ଥରେ ଏକୁଟିଆ ବସି ମୋ 'ନାଁ' ଟିକୁ ତୁମ ନାଁ ସହିତ ଯୋଡ଼ି ଦିଅନ୍ତନି ! ଏଇ ମାତ୍ର ମୋର ଅନୁରୋଧ ।

ଯଦି ଏ ମୁହୂର୍ତ୍ତଟା ଏ ଧରଣୀ ବକ୍ଷରେ ମୋର ଶେଷ ମୁହୂର୍ତ୍ତ ହୁଏ, ତେବେ ଏତିକି ଉପଦେଶ ଦେଇ ଯାଉଛି—

ହେ ମୋର ପ୍ରିୟତମା ! ଜୀବନ ସହିତ ଖେଳପାର କିନ୍ତୁ କାହାର ଯୌବନ ସହିତ ଖେଳବନ ।

ଆଜ ମୋର ପ୍ରେମର ଶେଷ ପରିଚୟ ଦେବାକୁ ଯାଇ ଏତିକ କହି ରଖୁଛି—ହେ ମୋର ପ୍ରିୟତମା ! ମୋର ପ୍ରେମରେ କେତେ ଆଶା, କେତେ ନିରାଶା; କେତେ ମିଳନ, କେତେ ବିରହ; କେତେ ପରଶ, କେତେ ବିଚ୍ଛେଦ; କେତେ ଜ୍ୟୋତ୍ସ୍ନା, କେତେ ଅନ୍ଧାର; କେତେ ସୁଷମା, କେତେ ଲୁହ; କେତେ ଜୀବନ, କେତେ ମରଣ; କେତେ ଧରଣୀ, କେତେ ଆକାଶ; କେତେ ସ୍ତବ୍ଧତା, କେତେ ଚଞ୍ଚଳତା; କେତେ ନିଦ୍ରା, କେତେ ଅନିଦ୍ରା; କେତେ ବିଳାସ, କେତେ ଦାରିଦ୍ର୍ୟ; କେତେ ସଞ୍ଜ, କେତେ ସକାଳ; କେତେ ଅଭିନନ୍ଦନ, କେତେ ଅଭିଯୋଗ; କେତେ ଆବାହନ, କେତେ ବିସର୍ଜନ; ଭରି ରହି ନଥିଲା ??? ତୁମେ ସିନା ଠିକ୍ ବୁଝି ପାରିଲନ ! ହଉ ...... । ଆଉ କେବେ, ମୋତେ ମନେ ପକାଇ, ନଷ୍ଟ ଗାରରେ ଏ ବନ୍ଧୁଦ୍ୱୟକୁ ପରିଣ ଦେବନ । ହେଲା··· ?

ଡାକର ଆସିଲାଣି । ଯାଉଛି । ଅପରେସନ ଟେବୁଲ ଉପରେ ମୋର ଶେଷ ଲୁହ କେତେ ଟୋପା ରଖିଦେଇ ଧରଣୀରୁ ବିଦାୟ ନେବି । ହେଲେ···, ବିଦାୟ ନେବା ପୂର୍ବରୁ ଏଇ ଶେଷ ମୁହୂର୍ତ୍ତରେ ବି ଆଶା କରେ, ମୋ ପ୍ରିୟା ଟିକଏ ପଛକୁ ଫେରି ଚାହାଁନ୍ତା କି ! !

ଟାଣି ଓଟାରି ନେବା ପାଇଁ ଦୂତ ଆସିଗଲେଣି । ପ୍ରିୟେ; ଟିକଏ ଭଗବାନଙ୍କୁ ମୋ ପାଇଁ ଡାକିବ ? ମୋ ସ୍ତ୍ରୀ ସଧବା ହୋଇ ରହୁ ଏବଂ ତୁମ ପାଇଁ ମୋର ଏ ଜୀବନ ଚାଲିଯାଉ । ବାସ୍······ ଏତିକ । ବିଦାୟ । ଚିର ବିଦାୟ ।

ପ୍ରିୟେ ଆଉ କଣ ଜାନୁୟାରୀ ଛଅ ତାରିଖକୁ ଛୁଇଁ ପାରିବନ ? Good bye.

× × × × ×

ଡ଼ାଏରୀ ଶେଷ ହେଲା । ଶେଷ ଅକ୍ଷର ପାଖରେ ଡ଼ାଏରୀଟି ନଇଁଗଲା ହାତରୁ । ପ୍ରତିଟି ପୃଷ୍ଠାର ପ୍ରତିକ୍ରିୟା ସୁଧାର ହୃଦୟ ଭିତରେ ତୋଳିଗଲା ସ୍ତବ୍ଧତା । ଗତିର ଉଜାଗର, ମାମ୍ମାର କରୁଣ କାହାଣୀ, ପ୍ରଳୟଙ୍କର ବିପ୍ଳବର ଦୃଶ୍ୟ, ଡ଼ାଏରୀର ମାନ ଅଭିମାନ, ନିଜର ବିଗତସ୍ମୃତି ଓ ଅନୁଭୂତି ସବୁ ଏକାଠି ମିଶି ସୁଧାକୁ ଜଡ଼ କରିଦେଲା । ପ୍ରଳୟ ଝଡ଼ ବା ଝଞ୍ଜା ପୂର୍ବରୁ ଯେପରି ନିସ୍ତବ୍ଧତା ପ୍ରକାଶ ପାଏ, ସୁଧାର ପ୍ରତିଟି ସ୍ନାୟୁ ସେପରି ନିସ୍ତବ୍ଧ ହୋଇଗଲା । ଶେଯରୁ ଉଠିବା ତା ପକ୍ଷେ ଏକ୍‌ବାର ଅସମ୍ଭବ । ସେ ଅନୁଭବ କରୁଥାଏ, ଯେପରି ଦୁଇଟି ଚୁମ୍ବକର ବିପରୀତ ସମ ଆକର୍ଷ ଭିତରେ ସେ ମରୁ ମରୁ ବଞ୍ଚୁଛି —ହସୁ ହସୁ କାନ୍ଦୁଛି ।

ଆଖି ବୁଜିଦେଲା । ହୃତ୍‌ସ୍ପନ୍ଦନ ସ୍ୱାଭାବିକ ହୋଇ ପାରିଲାନି । ବାହାରେ ଖରାଟା ଧରିତ୍ରୀକୁ ଛୁଇଁବା ପାଇଁ ଉଦ୍ୟତ ହେଲାଣି । କିନ୍ତୁ ସେ ଗଭୀର ଅନ୍ଧାର ଭିତରେ ନିଜ ପ୍ରିୟକୁ ଖୋଜୁଥାଏ । ମଥା ଉପରେ ହାତଟିକୁ ଥୋଇ ଭାବିବାକୁ ଚେଷ୍ଟା କଲା । ପାରିଲାନି । ମାନସିକ ନିଷ୍କ୍ରିୟତା ନିର୍ଜୀବ ।

ଦୀର୍ଘ ନିଶ୍ୱାସଟିଏ ମାରି ଭାବିଲା, କାହିଁକି ଡ଼ାକ୍ତରଖାନାକୁ ଆସି ତା'ର ନିଜତ୍ୱ ଓ ଦୃଢ଼ତାକୁ ଚୁରମାର କରିଦେଲା ?

ଏମିତି ଭାବିବା ଭିତରେ କେତେବେଳେ ଯେ ଆଖି ଦୁଇଟି ଭ୍ରୂଲତାକୁ ଟାଣିଆଣି ବୁଜି ହୋଇ ଯାଇଛି, ସେ ଜାଣିନି । ଦୁଇଟି ଶବ୍ଦ "ପ୍ରେ······ମ" ଭିତରେ ଏତେ ଭାଷା, ଏତେ ଦର୍ଶନ, ଏତେ ଯୁକ୍ତି, ଏତେ ପ୍ରଶ୍ନ, ଏତେ ଅଭିମାନ, ଏତେ ଅଳଙ୍କାର ଥାଇପାରେ, କଳନା କରୁ କରୁ ସେ ଶୋଇଗଲା । ଖୁବ୍ ନିଦ୍ରାରେ ଜାଗ୍ରତ ଶରୀର ଚଞ୍ଚଳ ହେଲା । ଔଷଧର ଆବଶ୍ୟକତା ନଥିବା ଯୋଗୁଁ କୌଣସି ନର୍ସ କିମ୍ବା ଧାଇ ତାକୁ ଉଠାଇବା ଦରକାର ପଡ଼ିନି । ଅଶାନ୍ତିର ଝଡ଼ ପରେ ଶାନ୍ତ ନିଦ୍ରାର ଅପରାହ୍ନ ଧାରା ବହିଷି ଯାଉଥାଏ ।

ବାହାର ଖରାଟା ଖୁବ୍ ଟାଣ ହୋଇ ପଡ଼ିଲା । ତଥାପି ସୁଧା ଉଠିନି । ଶେଷରେ "ଅପା······ଅପା" ଡାକରେ ତାର ନିଦ ଭାଙ୍ଗିଗଲା । କିନ୍ତୁ କଡ଼ ଲେଉଟାଇ ପୁଣି ଶୋଇଗଲା ।

ଡାକ ଆତୁର ଉଦ୍‌ବେଗ ହୋଇ ପଡ଼ିଲା । ସନ୍ଧ୍ୟା ବାଧ୍ୟ ହୋଇ ଉଠିଲା । ଉଜାଗର ପରେ ନିଦ୍ରା ଆଖିକୁ ନିର୍ମଳ କରି ନଥାଏ । ତେଣୁ ଆଖି ମଳି ମଳି ଖୁବ୍ ନିରୀକ୍ଷଣ କରି ସାମନାକୁ ଚାହିଁଲା । ଦେଖିଲା ବଦୁ । ତା'ର ଭାଉଜ । ଦିନର ଧସଟା ଟାଣ ଖରା ଭିତରେ ବହୁତ ଆଗେଇ ଯାଇଛି । ଆଜି ସେ ଖୁବ୍ ପଛରେ ପଡ଼ି ଯାଇଛି ।

ସନ୍ଧ୍ୟାର ଅସଂଯତ ଲୁଗାକୁ ଟାଣି ସଂଯତ କଲା ଭିତରେ ବଦୁ କହିଲା, "ଏ ଯାଏ କଣ ଶୋଇଛ ମ ଅପା । ଏତେ ଡାକିଲେ ବି ଉଠୁନା । ହଉ...... ଉଠ । ଯିବା ପରା ......।"

ସନ୍ଧ୍ୟା ଆଖି ମଳି ମଳି ପ୍ରଶ୍ନ କଲା, "ଏଁ...... କୋଉଁଠିକି ?

—"ଘରକୁ ।"

—"କାହିଁକି ?"

—"ଆଜି କଣ ଡାକ୍ତରଖାନାରେ ସବୁ ଦିନେ ଥିବ ନା କଣ ମ ? "

—"ନାଁ......ସେ । ମୋତେ ଭଲ ଲାଗୁନି ।"

—"ଭଲ ତ ଲାଗିବନି ?" ଖୁବ୍ ଶଙ୍କି ଶଙ୍କି ବଦୁ ଏତିକି କହିଲା ।

—"ମାନେ ?"

—"ତୁମ ରୋଗ ସେଇଥିପା । ଏଇନେ ପ୍ରଫେସରଙ୍କ ପାଖରୁ ଫେରୁଛି । ତୁମ ଭାଇ ଆତୁର ବସିଚନ୍ତି ।"

ଏ ଭିତରେ ସନ୍ଧ୍ୟା ଅନୁଭବ କରୁଥାଏ, ଯେପରି ଗୋଟିଏ ନୂଆ ଗ୍ରହରେ ସେ ପହଞ୍ଚିଛି । ରକେଟର କ୍ଷିପ୍ର ଗତି ଓ ଦିନ କର୍କଶ ଆବାଜ କମି ଯାଇଛି ହଠାତ୍ । ତାକୁ ସବୁ ନୂଆ ନୂଆ ଲାଗୁଥାଏ । ତେବେ ସେ ଆସିଲା କେଉଁ ଗ୍ରହରୁ ??

ବେଲ୍ଟ ମଲାଟର ପରଶ ଅନୁଭବ କରି ଡାଏରୀଟିକୁ ତକିଆ ତଳେ ରଖି-ଦେଲା । ଏତିକିବେଳେ ଭାଉଜ ପଚାରିଲେ, "ତୁମେ ନଭେଲ୍ ପଢ଼ୁଛ ଅପା ? ଡାକ୍ତର ପରା ମନା କରିଛନ୍ତି ।"

—"ମାନେ ?"

—"ତୁମ ସେଗ ଭଲ ହେବାରେ ନଭେଲ୍‌ର ପ୍ରତିକ୍ରିୟା ପ୍ରତିକୂଳ ହେବ" । ସନ୍ଧ୍ୟା ଟିକିଏ ସ୍ମିତ ହସି କହିଲା, "ମୁଁ ତ ନଭେଲ୍ ପଢୁନି । ପଢୁଛି ଉପନ୍ୟାସ । ଇଂରେଜୀ ନଭେଲ୍ ନୁହେ ।"

—"ସେ ତ ଆହୁରି ଅଶ୍ଳୀଳ ।"

—"ବୁଝୁଛି ଯେ । ଅଗଷ୍ଟା ପଢିଦେଲି । ମାଘ୍ନା ଦେଇଥିଲା·····ହଉ ବସିଥା । ମୁଁ ମାଘ୍ନା ପାଖରୁ ଆସେ ।"

—"ଆଗେ ତୁମେ ସବୁ ନିତ୍ୟକର୍ମ ସାରିଲ ।"

"ଆରେ·····ହଁ । ସତେ । ଆଚ୍ଛା·····" କହି ସନ୍ଧ୍ୟା ତତକ୍ଷଣାତ୍ ବ୍ରସ, ସାବୁନ ଓ ଶାଢ଼ୀ ଇତ୍ୟାଦି ଧରି ଚାଲିଗଲା ଗାଧୁଆ ଘରକୁ । ଚାଲିର ବେଗ ଟିକିଏ ବଢି ଯାଇଥାଏ ।

କିଛି କ୍ଷଣ ପରେ ବାଥ୍ ରୁମ୍‌ରୁ ଫେରିଲା । ସେତିକିବେଳକୁ ଦେବ ଆସି ସାରିଥାଏ । ସନ୍ଧ୍ୟା ମଧ୍ୟ ନିଜକୁ ବେଶ୍ ସଜାଇ ଫେରୁଥାଏ । ହୃଦୟର କ୍ଳାନ୍ତି, ତାର ଶୁଷ୍କ ଓ ନିରସ ବଦନରେ ଖୁବ୍ ସ୍ପଷ୍ଟ ପ୍ରକାଶ ପାଉଥାଏ । ବନ୍ଧୁ କହିଲା, "ଅପା ! ଏଇ କେତେଦିନ ହେଲା ତୁମେ ଖୁବ୍ ଅନ୍ୟମନସ୍କ ହେଉଛ । ବ୍ରସ, ସାବୁନ ଗାଧୁଆ ଘରେ ଛାଡ଼ି ଦେଇ ଆସିଲ ? ହଉ ତମେ ଥା ମୁଁ ଯାଇ ନେଇ ଆସୁଛି ।" ଏତକ କହି ବନ୍ଧୁ ଚାଲିଗଲା ଗାଧୁଆ ଘର ଅଭିମୁଖରେ ।

କୋଠ୍ ଭିତରେ ହାତ ଭର୍ତ୍ତିକରି ଭାଇ ଦେବ ଠିଆ ହେଇଥାଏ ଖଟିଆ ପାଖରେ । ବିଷର୍ଣ୍ଣ ଓ ଗମ୍ଭୀର । ସନ୍ଧ୍ୟା କିଛି ଗୋଟିଏ ମୂଲ୍ୟବାନ ଜିନିଷ ହଜାଇଲା ଭଳି ଇତସ୍ତତଃ ହେଉ ହେଉ କହିଲା, "ଦେବ····· । ବସ୍ ଠିଆ ହେଲୁ କାହିଁକି ?

—"ନା····· ଆଜି ବସିବା ପାଇଁ ସମୟ ନାହିଁ ଅପା । ଚାଲ୍‌ବି ଯିବା"

—"ଯିବା !" ଆଶ୍ଚର୍ଯ୍ୟ ହେଇ ସନ୍ଧ୍ୟା ପ୍ରଶ୍ନ କଲା ।

—"ହଁ ଘରକୁ ଯିବା । ଡାକ୍ତରଙ୍କ ସହ ମୁଁ କଥାବାର୍ତ୍ତା ସାରି ଆସିଲି । ଏଣେ ଆଜ ସାତଟାରେ ମୁଁ କଲିକତା ଯିବ ।"

—"ତେବେ ମୁଁ ତ.........."

—"ଡ଼ାକ୍ତର ଡ଼ିଷ୍ଟାର୍ଯ ସାର୍ଟିଫିକେଟ ଦେଇ ସାରିଲେଣି ।"

—"ହଉ, ତୁ ଚାଲି ଯା । ମୁଁ ଯିବଡ଼... । ଟିକଏ ସ୍କୁଲ ଦେଇ ଯିବି"

—"ନା...ଅପା । ଡ଼ାକ୍ତର ମନା କରୁଛନ୍ତି । ଏପେଣ୍ଡିସାଇଟିସ୍ ଅପରେସନ୍ ପରେ ଅନ୍ତତଃ ଆଉ ଦୁଇମାସ ରେଷ୍ଟ୍ ଦରକାର । ତା ବାଦାରେ ସ୍କୁଲତ ଛୁଟି ହେଇ ଗଲାଣି" ।

—"ଛୁଟି ହେଇ ଗଲାଣି ? ତେବେ ତୁ ଚାଲିଯା । ମୁଁ ସନ୍ଧ୍ୟା ଟ୍ରେନ୍‌ରେ ଘରକୁ ଯିବ" ।

—"କାରରେ ବର୍ତ୍ତମାନ ଚାଲି ଗଲେ... ?" ଦେବ ପ୍ରସ୍ତାବ ଦେଲା ।

—ଟିକଏ ଚଡ଼ିଲା ପରି ହେଇ ସନ୍ଧ୍ୟା କହିଲା, "କଣ ମ କହୁଚୁ ! ଏଇ ସାଙ୍ଗେ ସାଙ୍ଗେ କେମିତି ଯିବ ? କାହା ସହିତ ଦେଖା ନକରି ଚାଲିଯିବି ? ଅନ୍ତତଃ ମାମୁଁ ସହିତ ଟିକଏ ଦେଖା କରି ଯିବଡ଼" ।

ଗ୍ଲେଟ ପିଲାଟି ଭଳି ଦେବ ଚୁନ ରହିଲା ।

ଏତକବେଳେ ବବୁ ପହଞ୍ଚିଗଲା । ତାକୁ ଚାହିଁ ଦେବ କହିଲା, "ବବୁ... ମୁଁ ଯାଉଚୁ । ତୁମେ ଅପାଙ୍କ ସାଥିରେ ପରେ ଆସିବ । କାର୍‌ଟା ପଠାଇଦେବି" ।

ବବୁ ଆଶ୍ଚର୍ଯ୍ୟ ହେଇ ପ୍ରଶ୍ନ କଲା, "କଣମ ? ପୁଣି କଣ ହଠାତ୍ ପ୍ରୋଗ୍ରାମ୍ ବଦଳି ଗଲା ! ନା ...ସମସ୍ତେ ଏଇନେ ଚାଲିଯିବା । ଟିକଏ ଆଉ ଅପେକ୍ଷା କର...... । ସବୁ ସଜଡ଼ା ସଜଡ଼ି କରି ଦେଉଚୁ । ଖାଲି ବେଡ଼ିଂ ଟିଏତ ।" ଏତକ କହି ବବୁ ବନ୍ଧା ବନ୍ଧିରେ ଲାଗିଗଲା ।

ସନ୍ଧ୍ୟା, କେଶକୁ ସଜାଡ଼ୁ ସଜାଡ଼ୁ କହିଲା, "ଆଚ୍ଛା.....ମୁଁ ଏଇନେ ଆସୁଚୁ । ମାମୁଁ ଏଇ ପାଖ ଓ୍ୱାର୍ଡରେ ଅଛୁ । ଟିକଏ ଦେଖା କରି ଆସିବ" ।

ବନ୍ଦୁ କହିଲା, "ସନ୍ଧ୍ୟାରେ କିବା କାଲି ସକାଳୁ ପୁଣି ଆସିବା । ଅନେକ କିଛି କହିବାକୁ ଅଛି । ସେତେବେଳକୁ ଦେଖା କରିବାନି ?

ସନ୍ଧ୍ୟା ଖୁବ୍ ଗମ୍ଭୀର ହୋଇ ବସି ରହିଲା । ତାର ଗମ୍ଭୀରତାକୁ ଲକ୍ଷ୍ୟ କରି ଦେବ ଚୁପ୍ ହୋଇ ଠିଆ ହୋଇଥାଏ । ଏତିକିବେଳେ ପ୍ରଫେସର୍ ଓ୍ୱାର୍ଡ୍ ପରିଦର୍ଶନରେ ଆସିଲେ । ସାଥିରେ କେତେଜଣ ମେଡ଼ିକାଲ ଛାତ୍ର ଥାଆନ୍ତି । ସନ୍ଧ୍ୟାକୁ ଦେଖି ପ୍ରଫେସର୍ ପ୍ରଶ୍ନକଲେ "How do you feel ?"

ନମସ୍କାରଟିଏ ହୋଇ ସନ୍ଧ୍ୟା ଉତ୍ତର ଦେଲା, "O.K...Sir ।"

ତାପରେ, ଛାତ୍ରମାନଙ୍କୁ ବୁଝାଇବା ଉଦ୍ଦେଶ୍ୟରେ ଅନେକ କିଛି ବିଶ୍ଳେଷଣ କରିଗଲେ ପ୍ରଫେସର୍ । ଛାତ୍ରମାନେ ଧୀର ସ୍ଥିର ହୋଇ ଶୁଣୁଥାଆନ୍ତି । ସେଥିରେ ସନ୍ଧ୍ୟାର କିଛି ଜାଣିବାର ନଥାଏ । ଖାଲି ଏତିକି ସେ ବୁଝିଥିଲା— ପ୍ରଫେସର୍ ପ୍ରତିପାଦିତ କରୁଥାଆନ୍ତି, ସନ୍ଧ୍ୟାର ସେନ୍ସଲେସ୍ ହେବା ସହିତ ଅସ୍ତ୍ରୋପଚାରର କୌଣସି ସମ୍ପର୍କ ନାହିଁ । ତାପରେ ଅସ୍ତ୍ରୋପଚାର ଜାଗାଟିକୁ ପ୍ରଫେସର୍ ଥରେ ଦେଖି ନେଲେ । ତାଙ୍କ ପାଟିରୁ ବାହାରି ପଡ଼ିଲା, "Wound is O.K ।"

ଦେବକୁ ଡ଼ାକି ପୁଣି କହି ଚାଲିଲେ, "ବୁଝିଲେ ଦେବବାବୁ । ଆଉ ବ୍ୟସ୍ତ ହେବାର କିଛି ନାହିଁ । Wound ଟି ଶୁଖି ଗଲାଣି । ଆଉ···ଏଇ ସେନ୍ସଲେସ୍ ହେବା କଥାତ ଆପଣଙ୍କୁ ବୁଝାଇ ସାରିଛି । Continue this tablet for one month, two tablets T. D. S" ଫେରିଗଲାବେଳେ ପୁଣି ଥରେ ପଛକୁ ଫେରି କହିଲେ, "You can take her now."।

ପ୍ରଫେସର୍ ଚାଲିଗଲେ ଅନ୍ୟ ରୋଗିଣୀଙ୍କ ପାଖକୁ । କିନ୍ତୁ ଶେଷ ପଦକ ସନ୍ଧ୍ୟାକୁ ବଜ୍ରାହତ କଲା । ସେ ଭାବିଲା, "ଏକଣ ! ସମସ୍ତେ ମିଳି ତାକୁ ପ୍ରତିରୋଧ କରୁଛନ୍ତି । ମାମୁଁ ସହ କଣ ଦେଖା କରି ପାରିବନି ? ଦୁଇପଦ କଥାବି ହୋଇ ପାରିବନି ? ···ନା···ସେ ଯିବ, ନିଶ୍ଚୟ ଯିବ । ······ମାମୁଁ ସହ କଥା ହୋଇ ଡ଼ାଏରୀଟି ଫେରାଇ ଦେଇ ଆସିବ ।"

ଖୁବ୍ ବିବ୍ରତ ହୋଇ ପଡୁଥାଏ । ଦୁନିଆରେ ମୁହଁ ଖୋଲି ବଞ୍ଚିଲେ ଅଜସ୍ର ନୂଆ ନୂଆ ଅଶାନ୍ତି ତା ଉପରେ ମାଡ଼ି ବସୁଛି । ସେ ଅବା କଣ କରିବ ? ?

କେତେ ଜଣ ଭାବୁଛନ୍ତି, ଭାବନା ସରୁନ । ଗୋଟିଏ ନ ସରଣୁ ଆଉ ଗୋଟିଏ ଭାବନା ମାନସ ପଟରେ ସ୍ଲାଇଡ୍ ଭଳି ଆଗରେ ଠିଆ ହେଉଛି । ବାହାରକୁ ଚାହିଁ ଦେଖିଲ, ଦେବ କାର୍ ପାଖରେ ଠିଆ ହୋଇଛି । ନିଜ ପାଖରେ ଦେଖିଲ, ବନ୍ଧୁ ସବୁ ବନ୍ଧା ବନ୍ଧି କରି ନର୍ସ, ଧାଇ, ମେହେନ୍ତରାଣୀ ଇତ୍ୟାଦିଙ୍କୁ ବକ୍‌ସିସ୍ ଦେଉଛି । ସେଇଟା ସେମାନଙ୍କର ମାମୁଲି ଦାବୀ । ରୋଗୀ ଡିସ୍‌ଚାର୍ଜ ହେବାର ଶୁଣିବା ମାତ୍ରେ ସେଇ ଖଟିଆ ଆଡ଼େ ଖାସ୍ ଦୃଷ୍ଟି ରଖି ଥାଆନ୍ତି ।

ବନ୍ଧୁ ସବୁ କାମ ସାରି ଦେଇ ବେହେରା ଜଣକୁ ବେଡ଼ିଂଟା ନେଇ କାରରେ ରଖିବା ପାଇଁ ଅନୁରୋଧ କଲା । ଅପାକୁ ବି ଡାକିଲା ଯିବାପାଇଁ ।

ସନ୍ଧ୍ୟା—"ଏଁ ! ଯାଉଛି," ବୋଲି କହି ଝଡ଼ ବେଗରେ ଉଠିଗଲା ମାମୁଁ ଆଡ଼େ ।

କରୁଛଟା ଖୋଜି ଯାଉଛି କି ନାହିଁ—ବନ୍ଧୁ, ଆଗରେ ଠିଆ ହୋଇ କହିଲା, "ଅପା କାରଟା ସବୁ ଏପଟେ ଠିଆ ହୋଇଛି । ଏଇ ବାଟେ ଆସ ।

ସନ୍ଧ୍ୟା ହତାଶ ହୋଇ ଗ୍ରେଟ ପିଲାଟି ଭଳି ଜଣେ ବଦଳାଇଲା । କାର ପାଖରେ ପହଞ୍ଚିଲା । ଦେବ ଷ୍ଟିଅରିଂ ପାଖରେ ବସିଥାଏ । ସନ୍ଧ୍ୟା କାର ଭିତରେ ବସୁ ବସୁ ହଠାତ୍ ତା ପାଖରେ ବନ୍ଧୁ ବସି ପଡ଼ି ଦରଜାଟାକୁ ଜୋର୍‌ରେ ଟାଣି ବନ୍ଦ କରି ଦେଲା । ଦେବ ବି ଷ୍ଟାର୍ଟ ଦେଲା । 'ଘୁ'···କରି ଚକ ଚାରିଟା ଘୁରିଗଲା ଭୂଇଁ ଉପରେ ।

ସନ୍ଧ୍ୟା ଚାହିଁଲା ବାହାରକୁ, ବଗିଚ କୋଠାଟା ନିଷ୍ଟୁର ଓ ନୀରବ ହୋଇ ଦୂରେଇ ଯାଉଛି । ଆଖିରେ ତାର ଜକେଇ ଆସିଲା ଯଥେଷ୍ଟ ଲୁହ । ଭାବିଲା, ଶାରୀରିକ ଯନ୍ତ୍ରଣାର ଉପଶମ ପାଇଁ ମେଡ଼ିକାଲ୍‌କୁ ଆସିଥିଲା । କିନ୍ତୁ ଫେରିଗଲା ବେଳେ ମାନସିକ ଯନ୍ତ୍ରଣା ନେଇ ଯାଉଛି ।

କେତେଟୋପା ଲୁହ ଡାକ୍ତରଖାନାର ନାନା ଜୀବାଣୁ ମିଶା ଧୂଳିରେ ନିଶ୍ଚିହ୍ନ ହୋଇଗଲା । ବିରହିଣୀର ନୀରବ କରୁଣ ରାଗିଣୀ ଉଦ୍‌ବେଗ୍ନ ଓ ଉତ୍‌ଫୁଲ୍ଲ ବାୟୁମଣ୍ଡଳ ଭିତରେ ଲୀନ ହୋଇଗଲା ।

କାର୍‌ଟା ପୁଣି ଗୋଟାଏ ମୋଡ ଦେଇ କମ୍ପାଉଣ୍ଡ ଡ଼େଇଁ ଉଠିଗଲା ପିଚ୍‌ ରାସ୍ତା ଉପରକୁ । ଡାକ୍ତରଖାନାରେ ଗଲା ଦେଢ଼ ମାସର ଅନୁଭୂତି ଅତି ଦାରୁଣ ଓ କରୁଣ ହୋଇ ପଡ଼ିଲା ତା ନିକଟରେ । ନିଜକୁ କାର୍‌ର ଗଦି ଉପରେ ଅତି ଦୁର୍ବଳ ଭାବେ ଆଉଜାଇ ନେଇ କେତେ କଣ ଭାବିଲା ସନ୍ଧ୍ୟା । ଆଗଟା ଭାବିଲେ ପଛଟା ବ୍ୟସ୍ତ କରି ଦେଉଥାଏ । ଏମିତି ଧାଡ଼ିବ ଆଖି ବୁଜି ଭାବିବାକୁ ଲାଗିଲା କେତେ କଣ ?

ମଣିଷ ଯେତେବେଳେ ଜନ୍ମ ହୋଇଛି ନିଶ୍ଚୟ ବଞ୍ଚିବ ଓ ମରଣକୁ ଛୁଇଁବ । ଚକ ଯେତେବେଳେ ଘୂରୁଛି ନିଶ୍ଚୟ ଗଡ଼ିବ ଓ ଲକ୍ଷ୍ୟସ୍ଥଳ ନିଶ୍ଚୟ ଛୁଇଁବ ।

ବଡ଼ ତାଲା କୋଠା ସାମନାରେ କାର୍‌ଟା ଅଟକିଲା । କାର୍ ଭିତରୁ ସନ୍ଧ୍ୟା ବାହାରି ତଳ ମହଲାର ତା ରୁମ୍ ଭିତରକୁ ପଶିଗଲା । ଦେବ ଓ ବହୁ ଶିଡ଼ି ଉପରକୁ ଉଠିଲେ ।

ରୁମ୍ ଭିତରେ ଠିଆ ହୋଇ ସନ୍ଧ୍ୟା ଚାହିଁଲା ଚାରି ଆଡ଼କୁ । ଦୀର୍ଘ ଦେଢ଼ ମାସ ତଳେ ସେଇ ରୁମ୍ ଭିତରୁ ଖୁବ୍ ଶାରୀରିକ ଯନ୍ତ୍ରଣା ଓ କ୍ଲେଶ ନେଇ ମେଡ଼ିକାଲକୁ ଯାଇଥିଲା । ତାର ଆଶା ନଥିଲା ଭଲ ହୋଇ ଫେରିବ ବୋଲି, ଟେବୁଲ ଆଇନାରେ ତାର ରୂପକୁ ଦେଖିଲା, ଖୁବ୍ ଝଡ଼ି ଯାଇଛି । ତଥାପି ଅବିବାହିତା ଯୌବନ ଝଡ଼ିନ, ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗରେ ଯେତିକି ସୌନ୍ଦର୍ଯ୍ୟ ରହିବା କଥା ରହିଛି ।

ଗୋଟିଏ ସୁଦୀର୍ଘ ନିଶ୍ୱାସ ଛାଡ଼ି ଖଟ ଉପରେ ଗଡ଼ିଗଲା । ତଥାପି ଆସିଲା ପ୍ରତିବନ୍ଧକ । ବହୁ ଭିତରକୁ ପଶି ଆସି କହିଲା, "ନା···ଅପା, ଲୁଗା ବଦଳାଇ ପକାଅ । ଡାକ୍ତରଖାନାରୁ ଆସିଥିବା ସମସ୍ତ ଲୁଗା ଧୋବା ଘରକୁ ଯିବ ।"

ଶାଢ଼ୀ, ବ୍ଲାଉଜ, ଶାୟା ଇତ୍ୟାଦି ବଢ଼ାଇ ଦେଇ ସବୁ ଚାଲିଗଲା । ଗଲାବେଳେ ପୁଣି କହିଲା, "ମୁଁ ଯାଏ, ଓଭଲଟିନ୍ ତିଆରି କରି ଆଣିବି ।"

ସନ୍ଧ୍ୟା ସେମିତି ପଡ଼ି ରହିଥାଏ ଖଟିଆଟି ଉପରେ । ତାକୁ ମୋଟେ ଭଲ ଲାଗୁନଥାଏ । ବ୍ୟସ୍ତତା ଏତେ ବଢ଼ି ଯାଇଥାଏ ଯେ ବିବଶତା ସାରା ସ୍ତବ୍ଧ । ନିଜ ଦୁଃଖକୁ ଦୂରେଇବା ପାଇଁ ସିନା ପର ଦୁଃଖରେ ଦୁଃଖିନୀ ହୁଏ, କିନ୍ତୁ ଏବେ ପର ଦୁଃଖରେ ସମବେଦନା ପ୍ରକାଶ କରୁ କରୁ ନିଜ ଦୁଃଖରେ ଖୁବ୍ ଉବୁଯାଉଛି ।

ବସ୍ତର ଜଳଗଣିକୁ ଶକ୍ତ ବନ୍ଧ ବା ହ୍ରଦ ଅଟକାଇ ଥାଏ, କିନ୍ତୁ ଟିକିଏ ବାଟ ପାଇଲେ ପାଣି ଯେପରି ସେଇ ବାଟଦେଇ ଖସିଯାଏ ହୁଏ ଏବଂ ପ୍ରଳୟ ଧ୍ୱଂସଲୀଳା ଚାଲେ, କୌଣସି ଶକ୍ତି ତାକୁ ଅଟକାଇ ପାରେନା; ଠିକ୍ ସେଇଆ ଘଟିଲା ତାର ଜୀବନରେ ।

ଡ଼ାଏରୀ ପଢ଼ି ମାମୁଁକୁ ସାନ୍ତ୍ୱନା ଦେବା ଦୂରେ ଥାଉ, ନିଜେ ତାର ଖୁବ୍ ପ୍ରିୟ ଅଶୋକ ବାବୁଙ୍କୁ ଝୁରିବାରେ ଲଗିଲା । ସମସ୍ତ ଦୁଃଖ ଓ ଅନୁତାପ ତାର ଏତେ ଦିନର ଦୃଢ଼ତାକୁ ଭାଙ୍ଗି ଚୂରମାର କରିଦେଲା । ଭାବିଲା, "କି ଭୁଲ୍ ନ କରିଛି ସେ । ଡ଼ାଏରୀ ପଢ଼ିବା ତାର ମୋଟେ ଉଚିତ୍ ନଥିଲା ।" ଏମିତି ଖାଲି ଭାବେ——ବହୁତ କଣ୍ଟ ଭାବେ । ସେଇ ଭାବନା ଭିତରେ ସେ ଏକ୍‌ବାରେ ଭୁଲି ଯାଇଥିଲା ତାର ସ୍ଥିତି ଓ ପରିସ୍ଥିତି ।

ଏ ଭିତରେ ଦେବି ଆସି ସନ୍ଧ୍ୟାଠାରୁ ବିଦାୟ ନେଇ ସାରିଲାଣି । ସେ ପ୍ରତି-ନମସ୍କାର ବି ଜଣାଇ ପାରିନି । ତାର ମୋଟେ ଲକ୍ଷ୍ୟ ନାହିଁ । ପ୍ରତିଟା ସ୍ନାୟୁରେ କୋହ ଏତେ ଠେଲି ହେଉଥାଏ ଯେ ବାହାରର କୌଣସି କ୍ଷିପ୍ରତା ତା ଶରୀର ଭେଦ କରି ପାରୁ ନଥାଏ । କେବଳ ଗୁଡ଼ାଏ ପ୍ରଶ୍ନ ନିଜକୁ ନିଜେ କରୁଥାଏ——ସେ କଣ କରିବ ? ତା କର୍ତ୍ତବ୍ୟ କ'ଣ ? ଅଶୋକ ବାବୁଙ୍କ ପାଖକୁ ଛୁଟିଯିବ ? କ୍ଷମା ମାଗିବ ?

ଏଇ ପ୍ରଶ୍ନର ଉତ୍ତର ବାହାର କରିବାକୁ ଯାଇ ଆଖି ଦୁଇଟିକୁ ଜୋରରେ ବୁଜିଦିଏ । ନିଶ୍ୱାସ ରୁଦ୍ଧ କୋହରୁ ଟିକିଏ ଖସିଯାଏ କରି ଦେଇ ପୁଣି ନିସ୍ତବ୍ଧ ହୋଇ ପଡ଼େ । ତା ଉପରେ ଡାଏରୀର ପ୍ରତିକ୍ରିୟା ଏପରି ଭାବେ ଚାଲିଥାଏ । ଦିନର ଆଲୁଅଟା ତା ନିକଟରେ ଖୁବ୍ ଅନ୍ଧାର । ଜୀବନଟା ନିର୍ଜୀବ । ତା ମନର ଭୂପ ବହୁତ ତଳକୁ ଖସି ଆସିଥାଏ ।

ତ୍ରଳପ୍ତ ଝଡ଼ ପୂର୍ବରୁ ବାରୋମିଟରର ଗ୍ରାଫ ଯେମିତି ଖସି ଆସିଥାଏ ।

ଅନର୍ଦ୍ଦିଷ୍ଟ ସିଦ୍ଧାନ୍ତକୁ ନେଇ ଖଟରୁ ଉଠି ଠିଆ ହେଲା ସେ ଓ ନର୍ଜନତା ଭିତରେ ନଜର ପରିଧାନକୁ ଖୋଲି ଦେଇ ନୂଆ ପିନ୍ଧିବା ଆରମ୍ଭ କଲା ।

ସାମନାର ଟେବୁଲ୍ ମିରର୍ ପ୍ରତି ତାର ଦୃଷ୍ଟି ପଡ଼ିବା ମାତ୍ରେ, ନଜର ଅଶ୍ଳୀଳ ପ୍ରତିବମ୍ବକୁ ସେଥିରେ ଦେଖି ନଜେ ଖୁବ୍ ଲୋଭ କଲା । ଶେଷରେ ଲଜ୍ଜା ତାକୁ ଖାଇଗଲା । ନୂଆ ଶାଢ଼ୀଟାକୁ ହଠାତ୍ କାଢ଼ି ନେଇ ପୁଣି ଥରେ ଦେଖିଲା, ନଗ୍ନତା ପ୍ରାପ୍ତ ଚାଲି ଯାଇଛି । ନଜର ଅଶ୍ଳୀଳ ଛବି ଆଉ ଦେଖି ପାରିଲାନ ।

ଦେଖିଲା କେବଳ ବହୁତ ପିଛୁଲା ଦିନର ଗୋଟିଏ ସ୍ମୃତି । ବହୁତ ଦିନ ତଳେ—

ଦିନେ ତାର ବସାରେ, ଠିକ୍ ଏମିତି ନଙ୍ଗକୋଠରେ, ନର୍ଜନତା ଭିତରେ ସେ ଲୁଗା ବଦଳାଉ ଥାଏ । ନଜ ପ୍ରତି, ନଜ ଯୌବନର ଗୁପ୍ତ ଭଣ୍ଡାର ପ୍ରତି ଗାଢ଼ିର ନଜର ନଶାଲୋରେ ନିଜ ନଗ୍ନ ଛବିକୁ ବେଶ୍ ଉପଭୋଗ କଲା କିଛିକ୍ଷଣ ପାଇଁ । ତାପରେ ତାର ନଗ୍ନ ରୂପ ସହିତ ଶାଢ଼ୀ ମ୍ୟାଚିଂ କରୁ କରୁ ହଠାତ୍ ଆଇନାରେ ଠଉରାଇ ନେଲା—ଅଶୋକ ବାବୁ ଲୁଚି ଲୁଚି ତାର ପଛରେ ଥାଇ ସବୁ କିଛି ଦେଖି ଯାଇଛନ୍ତି । ଖାଲି ସେତିକି ନୁହେଁ, ପଛରେ ଠିଆ ହୋଇ ହସୁଚନ୍ତି ବି । ଅଧା ଶାଢ଼ୀଟିକୁ ଏଣେତେଣେ ଗୁଡ଼ାଇ ନେଇ ପଛକୁ ବୁଲି କହିଲା, "ହେଉ୍......କେତେ ଫାଜିଲ୍ ମ ! ଟିକିଏ ବି ସରମ ନାହିଁ ? ତୁମେ ଗଲ" । ଏତିକି କହିଲାବେଳକୁ ଲଜ୍ଜରେ ଖୁବ୍ ନଇଁ ଯାଇଥିଲା ସେ । ରଙ୍ଗା ପଡ଼ି ଯାଇଥିଲା । ତାପରେ ସ୍ମିତ ହସି ଅଶୋକ ବାବୁ କହିଲେ, "Sorry, କ୍ଷମା ଦେବେ ।"

—"ହେନାଟା ହେବ । ତୁମେ ଗଲ ଏଠୁ" ।

ନିର୍ଲଜ୍ଜଭଳି ଅଶୋକ ବାବୁ କହିଲେ, "ଯାଉଚି...... । ହେଲେ ସେଇ ଶାଢ଼ୀଟି ଖୁବ୍ ମାନୁଚି ତୁମକୁ ।

ତାପରେ ସେ ଚାଲି ଯାଇଥିଲେ, କିନ୍ତୁ ଅନେକ ଦିନ ଯାଏଁ ତାଙ୍କର ଆଗରେ ସିଧା ଆଖି ମେଲି ପାରି ନଥିଲା । ତାଙ୍କୁ ଚାହିଁ ପାରି ନଥିଲା ବି ।

ସେଇ ଶାଢ଼ୀକୁ ସନ୍ଧ୍ୟା ସ୍ନେହରେ କାଢି ସାଇତି ଥିଲା । ମୋଟେ ପିନ୍ଧି ନଥିଲା । ଏବେ ଦୀର୍ଘ ୧୨ ବର୍ଷ ପରେ ବଦ୍ରୁ ବାଛି ବାଛି ବାହାର କରିଛି ଅପା ପିନ୍ଧିବ ବୋଲି ।

ଏତିକବେଳେ ବଦ୍ରୁ ଓଭଲ୍ଟିନ୍ ନେଇ ପହଞ୍ଚିଲା । ସନ୍ଧ୍ୟାର ଏପରି ଅବସ୍ଥାକୁ ଦେଖି ଆବାକ୍ ହେଲା । ଦେହରେ ଶାୟା ନାହିଁ—ବ୍ଲାଉଜ ନାହିଁ— ଆଉ ଶାଢ଼ୀ ଥାଇ ବି ନଥିଲା ପରି ।

—"ଅପା !" ଆଖିରେ ହେଜାଏ ଲୁହ ଧରି ଡ଼ାକିଲା ବଦ୍ରୁ ।

ସନ୍ଧ୍ୟା ଚମକି ପଡ଼ିଲା । ଶାଢ଼ୀଟାକୁ ଗୁଡ଼ାଇ ଆଣି ବୁଲି ପଡ଼ିଲା । ଅପ୍ରସ୍ତୁତ ହୋଇ ସନ୍ଧ୍ୟା କହିଲା, "ତୁ ଟିକିଏ ଗଲୁ ମୁଁ ପିନ୍ଧି ପକାଏ ।"

—"ନା······ମୁଁ ଅଛି । ତୁମେ ପିନ୍ଧୁନା ।"

—"ଛିଃ······ମୁଁ ଦେଢ଼ଶାଶୁଟା ପରା ।"

—"ମୁଁ ତ ଶାଶୁଙ୍କଠାରୁ ବି ତୁମକୁ ଅଧିକ ଦେଖେ । ଅଧିକ ଭକ୍ତି କରେ । ତମେ କେବଳ ଏଇ କେତେଦିନ ହେବ ଟିକିଏ ତଳକୁ ଖସି ଆସିଛ ।"

ସନ୍ଧ୍ୟା ମୁଣ୍ଡପୋତି କୌଣସି ରକମ ପିନ୍ଧି ନେଲା । ବଦ୍ରୁକୁ କିଛି କହି ପାରିଲାନି । 'ଶୈର ମନ ଶୈର ଗଣ୍ଡିଲରେ' ଭଳି ଭୁଲି ରହିଥାଏ ।

ସନ୍ଧ୍ୟାର ଶାଢ଼ୀପିନ୍ଧା ଠିକ୍ ସରିଲାବେଳକୁ ଗୁକର ଆସି କହିଲା, "ମା··· ପୋଷ୍ଟ ପିଅନ ଡ଼ାକୁଛି ।"

ବଦ୍ରୁ ଚାଲିଗଲା ବାହାରକୁ । ସନ୍ଧ୍ୟା ନିଜକୁ ଆଉଜାଇ ନେଲା ଶେଯ ଉପରେ । ଆରମ୍ଭ କଲା ଚାରି ଭାବନା—ଯେଉଁଠି ଛାଡ଼ି ଯାଇଥିଲା ସେଇଠୁ ।

କିନ୍ତୁ ଭାବନା ସମ୍ପୂର୍ଣ୍ଣ ହୋଇ ପାରିଲାନି । ବଦ୍ରୁ ଭିତରକୁ ପଶି ଆସୁ ଆସୁ କହିଲା, "ଅପା, ତୁମର ଖଣ୍ଡିଏ ରେଜିଷ୍ଟ୍ରି ଚିଠି ଆସିଛି । ସ୍କୁଲ ଠିକଣାରେ ଯାଇଥିଲା । ସେଠୁ ପୁଣି ଫେରାଇ ଦିଆଯାଇଛି ।"

—"କାହା ପାଖରୁ ଆସିଛୁ ?"

—"ଅ······ଶୋକ କୁମାର······ଦାସ······ ।"

—"ଅଶୋକ ବାବୁ !" ଖୁବ୍ ଆଶ୍ଚର୍ଯ୍ୟ ହୋଇ ସନ୍ଧ୍ୟା ଉଠିଗଲା । ଚିଠି-ଟାକୁ ବଦୁ ହାତରୁ ଝାମ୍ପି ଆଣି ଖୁବ୍ ବ୍ୟାକୁଳ ଓ ବ୍ୟଗ୍ର ହୋଇ ପଢ଼ିଲା । ବଦୁ ସେମିତି ଠିଆ ହୋଇଥାଏ ।

ଗ୍ଲାଡର କ୍ଷିପ୍ର ସ୍ପନ୍ଦନ ଭିତରେ ସନ୍ଧ୍ୟା ଥରୁଥାଏ । ଖୁବ୍ ଶୀଘ୍ର ଆଖି ବୁଲାଇ ସମୁଦାୟ ଚିଠିଟି ପଢ଼ିନେଲା । ଅସହଜ ଉଷ୍ମ ଲୁହର ଦୁଇଟି ଝର ମେଲି, ବ୍ଲାଉଜ ଭିତରେ ଚିଠିଟିକୁ ରଖିଦେଲା । ଅମାନିଆ ବ୍ୟାକୁଳତାର କ୍ଷିପ୍ର ଗତିରେ ବାହାରକୁ ପାଦ ବଢ଼ାଇଲା । ପ୍ରଥମ ଥର ପାଇଁ ତା ଜୀବନରେ ପରସ୍ଥିତିକୁ ଆଡ଼େଇ ଅଶୋକ ବାବୁଙ୍କୁ ପାଇବା ପାଇଁ ବ୍ୟଗ୍ରତା ଆତ୍ମପ୍ରକାଶ କଲା ।

ଶରୀରକୁ ଦୋହଲାଇ ଯାଉ ଯାଉ ସେ କହିଲା, "ବଦୁ ମୁଁ ଯାଉଛି ।"

—"ଏଁ ! ପୁଣି କଣମ······କେଉଁଆଡ଼େ ?"

—"ଅଶୋକ ବାବୁଙ୍କ ପାଖକୁ" କହି ଚାଲିଥାଏ ସନ୍ଧ୍ୟା ।

—"ଅଶୋକ ବାବୁ କିଏ ? ଶୁଣମ ଅପା ?"

—"It is too late ମୁଁ ଯିବି । ନଚେତ୍ ସେ ଅପେକ୍ଷା କରି କରି ବହୁତ ଦୁଃଖରେ ଚାଲିଯିବେ ।"

ଆଗରେ ଠିଆ ହୋଇ ବଦୁ କହିଲା, "ଶୁଣମ ଅପା, ଷ୍ଟେସନରୁ କାରଟା ଫେରୁ ବଢ଼େଁ ଯିବା ।"

—"ନା······। ତୋର ଆସିବା ଦରକାର ନାହିଁ ।" ଏତିକ କହି ଅମାନିଆ ଝଡ଼ ଭଳି ସନ୍ଧ୍ୟା ଧାଇଁଲା । ବଦୁ ଏଥର ଅଟକାଇ ପାରିଲାନି । ହାତରୁ ଓଭାଲଟିନ୍ ଗ୍ଲାସଟା ଖସି ତଳେ ପଡ଼ିଗଲା । ସନ୍ଧ୍ୟାର ଦୁଲ୍ ଦୁଲ୍ ଚାଲି ଘର ଭିତରେ ପ୍ରତିଧ୍ୱନିତ ହେଉଥାଏ ।

ବନ୍ଦୁ ହତାଶ ଓ ଅବାକ୍ ହୋଇ ଖାଲି ପାଟିକଲା, "ଅପା ! ଯାଅନା । ଅପା……ଯାଅନା । ଶୁଣ,…ମୋ ଘଣ…ଶୁଣ" ।

ସନ୍ଧ୍ୟା କିନ୍ତୁ ଶୁଣି ପାରନା, ସେତେବେଳକୁ ସେ ଘରୁ ବାହାରିଗଲାଣି । ଦାଣ୍ଡ ଦୁଆର ପାଖରୁ ତା ଶାଢ଼ୀର ଶେଷ ଭାଗଟି ଯୋଷାର ହୋଇ ବନ୍ଦୁ ଆଖିରୁ ଦୂରେଇ ଗଲା ।

ବନ୍ଦୁ ପିଛା ଧରିବାର ଉପାୟ ନାହିଁ । ଯେତେହେଲେ ସେ ବୋହୂ, କଲେଜ ଝିଅ ନୁହେଁ । ତେଣୁ ଶିଢ଼ି ଉପରେ ଦେଇ ଉପରକୁ ଉଠିଗଲା ଏବଂ ପୋର୍ଟିକୋ ଉପରେ ଠିଆ ହୋଇ ସନ୍ଧ୍ୟାର ଗତିକୁ ଲକ୍ଷ୍ୟ କଲା ।

ସନ୍ଧ୍ୟା ଧାଇଁଛି, ବ୍ଲାଉଜ ଉପରୁ ଶାଢ଼ୀଟି ଖସି କଦାକାର ଦେଖାଯାଉଛି । ତଥାପି ତାର ଖାତିର ନାହିଁ । ପାଗଳୀ ପରି ଧାଉଁଛି । ସେ ଯେତିକି ବେଗରେ ଧାଉଁଥାଏ, ପୃଥିବୀଟା ବି ନେଇ ବେଗରେ ସେତିକି ଜୋରରେ ଘୁରୁଥାଏ । ସଦ୍ୟ ଅପରେସନରୁ ଉଠି ଧାଇଁବାକୁ ଅକ୍ଷମ ହେଲେ ବି ସେ ପ୍ରାଣ ବଳରେ ଦୌଡ଼ୁଥାଏ । ଅଦିନିଆ ମେଘ ଖଣ୍ଡିଏ ବି ଛୁଟିଥାଏ ମୁଣ୍ଡ ଉପରେ । କାର୍ଟା ଏତିକି ବେଳେ ପୋର୍ଟିକୋ ତଳେ ଠିଆ ହେଲା । ବନ୍ଦୁ ଡ୍ରେଭ ନକରି ସେଥିରେ ବସି ସନ୍ଧ୍ୟାର ପିଛା କଲା ।

ସନ୍ଧ୍ୟାକୁ ନେଇ କାର ଛୁଟିଲା କ୍ଷିପ୍ର ଗତିରେ । ଆକାଶରୁ ଗୋଟିଏ ବିଜୁଳି ଧରିତ୍ରୀବକ୍ଷରେ ଚୁମ୍ବନଟିଏ ଦେଇ ଫେରି ଯାଉ ଯାଉ ଅଦିନିଆ ବର୍ଷା ମୁଷଳ ଧାରରେ ଆକାଶରୁ ଝରିଲା, ଧରିତ୍ରୀବକ୍ଷରୁ ଉଷ୍ଣତା ଟିକକ ହଜିଗଲା ।

ଅଦିନିଆ ବର୍ଷା ତଳେ କାର୍ ଖୁବ୍ ଘୁରିଲା ସହରର ଗଳି କନ୍ଦିରେ ଅଶୋକବାବୁଙ୍କୁ ଖୋଜିବା ପାଇଁ । ଡ୍ରାଇଭରକୁ ଲେଫ୍ଟ, ରାଇଟ୍ କହିବାରେ ଲାଗିଥାଏ ସନ୍ଧ୍ୟା । ସ୍ଥାନେ ସ୍ଥାନେ ସହରର ପିଚରାସ୍ତା ଉପରେ ଗାଡ଼ି ଅଟକାଇ ସନ୍ଧ୍ୟା ଛୁଟି ଯାଉଥାଏ ପ୍ରିୟର ଅନ୍ୱେଷଣରେ ଏବଂ ପୁଣି ଫେରୁଥାଏ । ନୂଆ ପୁରୁଣା ସବୁ ଜାଗା ଖୋଜି ଯାଉଥାଏ । ଯେତିକି ହତାଶରେ ଫେରେ ସେତିକି ଉତ୍ସାହ ନେଇ ଆଗଉଥାଏ । ବର୍ଷାରେ ପୁରା ଭିଜି ଯାଇ ଥାଏବ ।

ଶେଷରେ କ୍ଳାନ୍ତ ହୋଇ ବସି ପଡ଼ିଲା କାର୍ ଭିତରେ । ଷ୍ଟ୍ରୀଟ୍ ବଲ୍ବ ଗୁଡ଼ିକ ତା ଓଦା ମୁହଁ ଉପରେ ପ୍ରତିଫଳିତ ହେଉଥାନ୍ତି ।

ସମସ୍ତ ପ୍ରେମର ସୁଧା ଢ଼ାଳି ଦେଇ ଆକାଶଟା ହେଲା ଧୀର ଓ ସ୍ଥିର । ଆକଣ୍ଠ ସୁଧା ପାନ କରି ଧରଣୀ ବି ହେଲା ଶାନ୍ତ । ରାସ୍ତା ଉପରେ ଯାନ-ବାହନର ଗହଳି ଆସ୍ତେ ଆସ୍ତେ କମି ଆସିଲା । ଏତିକବେଳେ ସନ୍ଧ୍ୟା ବାକ୍-ଶୂନ୍ୟ ହୋଇ ତାର କ୍ଳାନ୍ତ ଶରୀର ଓ ମନକୁ ଆଉଜାଇ ଦେଲା ଗଦି ଉପରେ । ହତାଶରେ ଖୁବ୍ ଭାଙ୍ଗି ପଡ଼ିଥାଏ ।

ବଦୁ ପଚାରିଲା, "ଅପା ! ମାମୁଁ ପାଖକୁ ଯିବ?"

ଏ ପ୍ରଶ୍ନ ବି ସନ୍ଧ୍ୟାକୁ ଛୁଇଁ ପାରିଲାନି । ନିଜ ଦୁଃଖ ଭିତରେ ସେ ଭୁଲି ଯାଇଛି ମାମୁଁ କଥା । ସବୁ କିଛି କରିଯିବା ପାଇଁ, ଆଗେଇ ଯିବାକୁ ତାର ପ୍ରବଳ ଇଚ୍ଛା ହେଉଥାଏ । କିନ୍ତୁ ପାରେନା ବ୍ୟାକୁଳତା ମରି ମରି ଯାଉଥାଏ । ଅଶୋକବାବୁଙ୍କୁ ପାଇ ପାରିଲାନି ।

ଏପ୍ରକାର ଅନୁଭୂତି ତାହା ପାଖରେ ଏକ୍‌ବାରେ ଅପ୍ରତ୍ୟାଶିତ । ଅପ୍ରତ୍ୟାଶିତ ଅନୁଭୂତିରେ ମଣିଷ ବିଶ୍ୱାସ କବା ଅବିଶ୍ୱାସ, ସତ କବା ମିଛ, ହସ କବା କାନ୍ଦ ଭିତରେ ହଠାତ୍ ଭୁବି ପାରେନା । ସମସ୍ତ ସ୍ନାୟୁରେ ଗୋଟିଏ ସ୍ପନ୍ଦନ ତୋଳିବା ପାଇଁ ସମୟ ସାପେକ୍ଷ ଏବଂ ଶରୀରରେ ଦୃଢ଼ ପ୍ରତିରୋଧକ ଶକ୍ତି ଆବଶ୍ୟକ । ନଚେତ୍ ମଣିଷ ଭାଙ୍ଗି ପଡ଼େ—ସଂଜ୍ଞାହୀନ ହୁଏ ।

ସନ୍ଧ୍ୟା ଖୁବ୍ ଦୃଢ଼ ହେବାକୁ ଯାଇ ଏକ୍‌ବାରେ ଭାଙ୍ଗି ପଡ଼ିଲା ଓ ବଦୁ ନିକଟରେ ପ୍ରଥମ ଥର ପାଇଁ ତାର ଲୁହ ଆତ୍ମପ୍ରକାଶ କଲା । ଖାଲି, ଡ଼ିପ, ସମୟ, ସ୍ଥାନ ନମାନି ଲୁହ ବହିବାରେ ଲାଗିଲା ।

ପାଖରେ ବଦୁ ଅବାକ୍ ହୋଇ ଅବରୁଦ୍ଧ କଣ୍ଠରେ ସନ୍ଧ୍ୟାର ନିଃସହାୟତା ଓ ଦୁର୍ବଳତାକୁ ଲକ୍ଷ୍ୟ କରୁଥାଏ । ଶେଷରେ ନୀରବତା ଭାଙ୍ଗି ପ୍ରଶ୍ନ କଲା, "ଅପା······ଆଉ କେଉଁଠିକି ଯିବା ?"

—"ଏଁ··· ! ନା···ଫେରିଯିବା । ମୁଁ ଟିକିଏ ଶାନ୍ତିରେ ଶୋଇବି," ଅତି ବିକଳ ହୋଇ ସନ୍ଧ୍ୟା ଉତ୍ତର ଦେଲା ।

—"ଅଶୋକ ବାବୁଙ୍କୁ ପାଇଲନି ?"

—"ନା··· । ସେ ଚାଲି ଗଲେଣି । ମୋର ଖୁବ୍ ଡେରି ହୋଇଗଲା । I am late enough ।" ଭଗ୍ନ କଣ୍ଠରେ ଏତିକି କହି, ବନ୍ଧୁ କାନ୍ଧ ଉପରେ ମଥା ଥୋଇ ବ୍ୟଥିତ ଜୀବନର ଲୁହ ଢ଼ାଳିଗଲା ।

ବନ୍ଧୁର ନିର୍ଦ୍ଦେଶରେ ଡ୍ରାଇଭର ଗାଡ଼ି ବୁଲାଇ ନେଲା । ଗାଡ଼ି ଛୁଟିଲା ଘର ଅଭିମୁଖେ । ଯେଉଁ ଘରୁ ବକ୍ଷ ଭିତରେ ଶତ ଆଶା ଓ ବ୍ୟାକୁଳତା ନେଇ ଗାଡ଼ିଟି ଆସିଥିଲା, ସେଇ ଘରକୁ ଫେରିଗଲା ହତାଶ ଓ ବ୍ୟର୍ଥତାର ମନସ୍ତାପ ନେଇ· । ଗାଡ଼ିର ବେଗରୁ ଜଣା ପଡୁଥାଏ, ଯେପରି ଆଉ ଫେରିବାର ଆଶା ମୋଟେ ନାହିଁ ।

ଆକାଶ ନିର୍ମଳ ଓ ଧବଳ ସଜ୍ଜିତ ହୋଇଲା । ଭିତରେ ମୃଣ୍ଡ ଗୁଞ୍ଜି କାନ୍ଦୁଥାଏ ସନ୍ଧ୍ୟା । ଅବିବାହିତା ଜୀବନରେ ପ୍ରିୟର କରୁଣ ବିଚ୍ଛେଦ ଓ ହତାଶା ତାକୁ ଖଣ୍ଡ ବିଖଣ୍ଡିତ କରି ଦେଉଥାଏ । ସହରର ବ୍ୟସ୍ତତା ଓ କର୍ମ ତତ୍ପରର ଭରି ରାସ୍ତାକୁ ପଛରେ ପକାଇ ନିର୍ଜନ ପିଚୁ ରାସ୍ତା ଉପରେ ଚାଲି ଗଡ଼ିଲା ପୂର୍ବ ବିଶ୍ରାମ ଉଦ୍ଦେଶ୍ୟରେ । ଗାଡ଼ି ଆଗର ଆଲୁଅଟା ଚୋବୁଥାଏ ପଛରେ କାଟି କାଟି ଅନ୍ଧାର ।

ସବୁ କିଛି ପଛରେ ପକାଇ କିଛି ସମୟ ପରେ ଗାଡ଼ି ଲାଗିଲା ପୋର୍ଟିକୋ ତଳେ । ସମସ୍ତେ କ୍ଳାନ୍ତ ଓ ଅବଶ । ସନ୍ଧ୍ୟା ହୋଜିଲା ପେଟରେ ଶୋଇଗଲା, ଖୁବ୍ ଶୋଇଲା । ଆଶା ମରି ଯାଇଚି—ଆକାଂକ୍ଷା ଜଳି ଯାଇଛି । ତା ଜୀବନଟା ନିଃଶବ୍ଦ ।

ସନ୍ଧ୍ୟା ଜୀବନର ଗୋଟିଏ ଅଧ୍ୟାୟ ଭିତରେ ଏପରି ଭାବେ ବିଦାୟ ନେଲା । କିନ୍ତୁ ଅନ୍ୟ ଅଧ୍ୟାୟର ସୂତ୍ରପାତ କେଉଁଠି ? ଶେଷ ଅଧ୍ୟାୟର ଅବସାନ କେଉଁଠି ??

ଡାକ୍ତରଖାନାରେ କେଇଟା ବା ଦିନ ସେ ରହିଥିଲା ? ସେ ଭିତରେ ତାର ମନର ବଳ ଭାଙ୍ଗିଗଲା ଓ ନିଷ୍ପତ୍ତି ଟଳି ପଡ଼ିଲା । ଘଟଣା-ଦୁର୍ଘଟଣା ବହୁଳ ଜୀବନରେ କ'ଣ ଯେ ନ ଘଟିବ, କିଏ କହି ପାରିବ ??

ସନ୍ଧ୍ୟାର ଜୀବନଟା ଖୁବ୍ ରହସ୍ୟମୟ ଓ ଘଟଣାବହୁଳ ହୋଇଥିଲେ ସୁଦ୍ଧା ଶିକ୍ଷକତା ଭିତରେ ସେ ଖୁବ୍ ମିତଭାଷୀ ଓ ସଚ୍ଚରିତ୍ରା ହେବାକୁ ଚେଷ୍ଟା କରିଛି । ଆଜି ହୋଇଛି ବି । ବାହାରେ ତାର ଖୁବ୍ ପ୍ରଶଂସା । କିଛି ଲେଖା

ଲେଖି ବି କରେ । କେତେଥର ତାର ପ୍ରବନ୍ଧ ଖବରକାଗଜରେ ପ୍ରକାଶ ପାଇଛି । ଯନ୍ତ୍ର ଓ କଣ୍ଠ ସଂଗୀତରେ ଖୁବ୍ ନାଁ କରିଛି ସେ । ଆକାଶବାଣୀରେ ନିଜର ପରିଚୟ ଦେବା ପାଇଁ ଯଥେଷ୍ଟ ସୁଯୋଗ ପାଇ ମଧ୍ୟ ସେ ନେ ହେଲେ ଗ୍ରହଣ କରିନି; ଯେହେତୁ ସେ ଜାଣେ, ସଙ୍ଗୀତର ସୁରେ ସୁରେ ତାର ଜୀବନର କୋମଳତା ଓ ନରମତା ଆତ୍ମପ୍ରକାଶ କରିବ ଏବଂ ତାର କର୍ମମୟ ଜୀବନରି ଧାରା ବଦଳି ଯିବ । ଶିକ୍ଷକ ଜୀବନ ତାକୁ ଖୁବ୍ ଭଲ ଲାଗେ । ତେଣୁ ସବୁ ରାସ୍ତା ଛାଡ଼ି ଗୋଟିଏ ପବିତ୍ର ରାସ୍ତା ଧରି ନେଇଛି । ଛାତ୍ରୀଙ୍କୁ ପଢ଼ାଏ—ବୁଝାଏ—ଗପକୁହେ—ସଙ୍ଗୀତ ଶିଖାଏ; ସେମାନଙ୍କ ସହ ନିଜକୁ ମିଶାଇ ଦେଇ ସେମାନଙ୍କୁ ମଣିଷ କରି ଗଢ଼େ । ତାଠାରୁ କ୍ରୋଧ ବହୁ ଦୂରରେ । କାହା ପ୍ରତି ରାଗେନା, କାହାକୁ ଦୂରାଏନା, ତା ବୋଲି ଆନକୁ ନିଜର କଲାବେଳେ ନିଜ ମାତ୍ରରୁ ଟଳେନା । ସେ ବାହାରକୁ ଗମ୍ଭୀର ଜଣା ପଡ଼େ, କିନ୍ତୁ ଭିତରେ ଖୁବ୍ ନରମ । ହଷ୍ଟେଲ ସୁପରିନ୍‌ଟେନ୍‌ଡେଣ୍ଟ ହୋଇ ଛାତ୍ରୀଙ୍କୁ ଉପଯୁକ୍ତ ନିୟମ ଓ ଶୃଙ୍ଖଳା ଭିତରେ ରଖି ସେମାନଙ୍କୁ ଆଦର୍ଶ ଓ ସଚ୍ଚରିତ୍ରା କରି ଗଢ଼ିବାର ସୁଯୋଗ ପାଇ ନିଜକୁ ଖୁବ୍ ଭାଗ୍ୟବତୀ ମଣେ । ଗର୍ବ ବି ଅନୁଭବ କରେ । ପ୍ରଥମେ ପ୍ରଥମେ ସହରରେ ପୁଅ ପିଲାଙ୍କ ସ୍କୁଲରେ ଶିକ୍ଷକତା କରି ଖୁବ୍ ସତର୍କ ରହିବାକୁ ପଡ଼ୁଥିଲା । କିନ୍ତୁ ସମସ୍ତ ସତର୍କତାକୁ ବ୍ୟର୍ଥ କରି ଦେଇଥିଲେ ମନୋଜବାବୁ । ସେଇଠୁ ହେଲା ତାର ଉନ୍ନତି ଓ ଅବନତି । ଖୁବ୍ ଶୀଘ୍ର ମଫସଲର ମହିଳା ସ୍କୁଲକୁ ଚାଲିଗଲା । ପରୀକ୍ଷା ପରେ ପରୀକ୍ଷା ଦେଇ ବି. ଏ. ବି.ଇଡ୍. ପାଶକଲା । ଏଠିସି ଅଶୋକ ବାବୁଙ୍କୁ ଦୂରେଇ ଦେବାକୁ ପଡ଼ୁଥିଲା ।

ଶିକ୍ଷକତା ଆରମ୍ଭ କଲାବେଳେ ଏକମାତ୍ର ଭାଇ ଦେବକୁ ମଣିଷ କରି ଗଢ଼ିବା ଥିଲା ତାର ବ୍ରତ । ଦେବ ତାଠାରୁ ୭ ବର୍ଷର ସାନ, ଖୁବ୍ ଶାନ୍ତ ଓ ଖୁବ୍ ଭଲ; ରୂପରେ ଓ ଗୁଣରେ କେଉଁଥିରେ କମ୍ ନୁହେଁ ।

ବେଶ୍ ଜମିବାଡ଼ ଥିଲେ ସୁଦ୍ଧା, ଝିଅ ହୋଇ ସେଥିରୁ କିଛି ବରବାଦ୍ ନିଜର ବାପା ମା ଙ୍କର ଏକମାତ୍ର ଉତ୍ତରାଧିକାରୀ ଦେବ ପାଇଁ ସାଇତି ରଖିଛି । ସେ ଅବଳା ଓ ଅବିବାହିତା । ଏଇ ହେଲା ତାର କର୍ମମୟ ଜୀବନର ଆଦର୍ଶ ।

ଏତେବଡ ଦୁନିଆରେ ସେ ଗୋଟିଏ କ୍ଷୁଦ୍ର ଜୀବ ହୋଇ କୋଟିଏ ଜୀବର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ନିଜକୁ ପ୍ରସ୍ତୁତ କରେ । ସାଥେ ସାଥେ ନିଜେ ବି ଖୁବ ସତର୍କତା ସହ ପାଦ ଟେକି ଚାଲେ ।

କିନ୍ତୁ ତାର ଆତ୍ମଜୀବନୀ ଭିତରେ ଗୋଟିଏ ଗୁପ୍ତ କାହାଣୀ ସୁପ୍ତ ହୋଇ ରହିଥାଏ । କାହାକୁ ସେ କହେନି, କିବା ତାଠାରେ କିଏ ଦେଖିବାକୁ ପାଏନି ।

କମ୍ କଥା ନୁହେଁ !!

ବହୁତ ଦିନ ତଳର କଥା—

ଗଡ଼ଜାତର ସୁଦୂର ମଫସଲରୁ ଆସି, ସହରରେ ମାମୁଁ ଘରେ ରହି ସନ୍ଧ୍ୟା ପାଠ ପଢୁଥାଏ । ସେତେବେଳକୁ ସନ୍ଧ୍ୟାର ବୟସ ବାର ଓ ତେର ଭିତରେ । ନିଖିଡ ଓ ନମ୍ର ଗୁଣ ଯୋଗୁ ବାପା, ମା, ମାମୁ, ମାଇଁଙ୍କଠାରୁ ଆରମ୍ଭ କରି ସ୍କୁଲର ଶିକ୍ଷକ ପର୍ଯ୍ୟନ୍ତ, ସମସ୍ତଙ୍କ ସ୍ନେହ ଓ ଶ୍ରଦ୍ଧାର ପାତ୍ରୀ ହୋଇଥାଏ ସେ । ଖୁବ୍ ଭଲ ପଢୁଥାଏ ବି । ଶ୍ରେଣୀରେ ପ୍ରଥମ କିମ୍ବା ଦ୍ୱିତୀୟରୁ କମ୍ ନୁହଁ ।

କ୍ଲାସ ପରେ କ୍ଲାସ କୁଦିଗଲାର ସହ ତେଉଁ ତେଉଁ, ସନ୍ଧ୍ୟାର ବୟସ ବି ବଢିବାରେ ଲାଗିଲା । ଆତ୍ମପ୍ରକାଶ କଲା ନାରୀ ସୁଲଭ ସୌନ୍ଦର୍ଯ୍ୟ……… ଶେଷରେ ଦିନ ଆସିଲା—ପହିଲି ବସନ୍ତର ପରଶ ତାର ହୃଦୟରେ ସେ ଅନୁଭବ କଲା । ନିଜକୁ ଠିକ୍ ବୁଝିପାରିଲା—ଏଣିକି ସେ ପ୍ରସ୍ଫୁଟିତ କୁସୁମ । ହସିବାକୁ ହେଲେ, ବାହାରର ସମସ୍ତ ଆକ୍ରମଣକୁ ପ୍ରତିରୋଧ କରି ନିଜକୁ ଖୁବ୍ ସାବଧାନ ହେବାକୁ ପଡ଼ିବ । ନଚେତ୍ ଦୁନିଆର ଚିର ଶାଶ୍ୱତ ସନାତନ ଧର୍ମ ନିକଟରେ ହାର ମାନିବାକୁ ପଡ଼ିବ ।

ସେ ଯାହାହେଉ, ହସିବାକୁ ଚେଷ୍ଟା କରୁ କରୁ ଦେଖାଦେଲେ ଅଶୋକ ବାବୁ ତାଙ୍କର କମ୍ର ବଦନ, ଉଦ୍ଦାମ ଯୌବନ, ସୁସଜ୍ଜିତ ମାଂସପେଶୀରେ ଶରୀରର ଗଠନ, ପରିମାର୍ଜିତ ବ୍ୟବହାର ଓ ସୁଶିକ୍ଷିତ ଜ୍ଞାନ ସନ୍ଧ୍ୟାକୁ ଖୁବ୍ ଭଲ ଲାଗିଥିଲା । ତାର ଯୌବନଟା ବି ଟିକିଏ ଟଳିଗଲା । ନିଜ ମଧ୍ୟରେ ଅଟଳ ରହିବାକୁ ଯାଇ, ଖୁବ୍ ଚେଷ୍ଟାକଲା ତାଙ୍କର ରୂପଟିକୁ ନିଜ ପାଖରେ ନରଖିବା ପାଇଁ । କିନ୍ତୁ ପାରିଲାନି ।

ଯେତିକି ଚେଷ୍ଟାକଲା ନିଜ ଶରୀର ଉପରୁ ତାଙ୍କର ପ୍ରତିବିମ୍ବଟିକୁ ଦୂରେଇବା ପାଇଁ, ସେତିକି ଟାଣି ହୋଇ ପଡ଼ିଲା ସେଇ ଶାନ୍ତ, କାନ୍ତ, କମନୀୟ ପୌରୁଷ ପ୍ରତି । ଶେଷରେ ଭଲ ପାଇଲା । ଖୁବ୍ ଭଲ ପାଇଲା । ଆଉ ଅଶୋକ ବାବୁ ବି ତାକୁ ନିଚ୍ଛକ ଭଲ ପାଇଲେ । ଆଖିରେ ଆଖି--ନିଦ୍ରାରେ ସ୍ୱପ୍ନ—

ଅନ୍ତରରେ ଅନ୍ତର ମିଶିଗଲା । ସନ୍ଧ୍ୟାର ନାଗୀ ଯୌବନଟା ଖୁବ୍ ହସିଲା—ଆତ୍ମହରା ହୋଇ ପଡ଼ିଲା ।

କିନ୍ତୁ············ ।

ସାଧାରଣ ପାଠୁଆ ଝିଅଙ୍କ ଭଳି ସନ୍ଧ୍ୟା ଉଚ୍ଛୃଙ୍ଖଳ ଓ ସ୍ୱାଧୀନଚେତା ନଥିଲା । ସେ ଥିଲା, ବାପା, ମା, ଗୁରୁଜନଙ୍କ ଅନ୍ଧବାଧ୍ୟ । ଯେ କୌଣସି ନୂଆ କାମ କଲାବେଳେ ଖୁବ ଡ଼ରେ । ଭୟରେ ଥର ଉଠେ । ଅନୁମତି ନ ନେଇ କୌଣସି କାର୍ଯ୍ୟ କରେନା । ତେଣୁ ଅବିବାହିତା ଜୀବନରେ, ଭଲ ପାଇବାଭଳି ଏତେ ବଡ଼ ଗୁରୁତର ଅପରାଧ ବା ସେ କରି ପାରିବ କପରି ?? କେଉଁ ଲାଜରେ ଗୁରୁଜନମାନଙ୍କଠାରୁ ଅନୁମତି ଅବା ମାଗିବ ? ତେଣୁ ସେ ବେଳକୁବେଳ ଖୁବ୍ ଚିନ୍ତିତ ହୋଇ ପଡିଲା । ତାର ଦୁର୍ବଳତା କାଳେ ବାହାରେ ପ୍ରକାଶ ପାଇଯିବ—ଏଇ ଆଶଙ୍କା ତାକୁ ଖାଇଗଲା । ମନର ସମସ୍ତ ସମସ୍ୟା ଭୟକୁ ଦୂରେଇବାରେ ହିଁ ବିତିଲା ।

ଏତେ ଭଲ ପାଇ ତାର ପ୍ରିୟ ସାଥିରେ ପଦଏ କଥାବି ହୋଇ ପାରିଲାନି । ଅନ୍ତର ଭିତରେ ଶତ ବ୍ୟାକୁଳତା ଥିଲେ ମଧ୍ୟ ସୁଯୋଗଗୁଡ଼ିକ କାଳେ ଦୁର୍ଯୋଗ ପାଲଟି ଯିବ ଭାବି, ଅଶୋକ ବାବୁଙ୍କଠାରୁ ସବୁବେଳେ ନିଜକୁ ଦୂରେଇ ରଖୁଥିଲା । ତାଙ୍କ ପାଖରେ ତା ବ୍ୟବହାର ଅତି ନିର୍ମମ ଓ ଦୁଃସହ ହୋଇ ପଡ଼ିବ ଜାଣି ସୁଦ୍ଧା ସେ ନିରୁପାୟ ଭଳି ଖସି ଆସୁଥିଲା । ସତ କହିବାକୁ ଗଲେ—ବାପା, ମା, ମାମୁଁ, ମାଇଁଙ୍କ ଭୟରେ ସବୁବେଳେ ସେ ଥରି ଉଠୁଥିଲା ।

ଏମିତି ଚିନ୍ତା ଭିତରେ ତାର ଦୈନନ୍ଦିନ କର୍ତ୍ତବ୍ୟରେ ବି ହେଳା ଦେଖାଦେଲା । ତାର ଏ ପ୍ରକାର ପରିବର୍ତ୍ତନ ଏତେ ହଠାତ୍ ଓ ଅପ୍ରତ୍ୟାଶିତ ହୋଇ ପଡ଼ିଲା ଯେ, ନିଜର ମାମୁଁ ମାଇଁଙ୍କଠାରୁ ଆରମ୍ଭ କରି ସ୍କୁଲର ଛାତ୍ର ଛାତ୍ରୀ, ଶିକ୍ଷକ ପର୍ଯ୍ୟନ୍ତ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ପଡ଼ିଲେ । କେବଳ ଦେହ ଖରାପ ବାହାନା ଦେଖାଇ ଭୁଲି ରହୁଥାଏ ସେ । ମାଇପି ଦେହରେ ରୋଗ ହେଲେକି କେହି ପୁଙ୍ଖାନୁପୁଙ୍ଖ ଜାଣିବାକୁ ଚାହାଁନ୍ତିନି, ତେଣୁ ସେଇ ବାହାନା ଦେଖାଇ ଅବସ୍ଥା ସୁଧାରି ନିଏ । ଏମିତିକି ଅଶୋକ ବାବୁଙ୍କୁ ମଧ୍ୟ ସେ ଜଣାଇ ନଥିଲା ପ୍ରକୃତ କଥା ଟିକକ । ସନ୍ଧ୍ୟା ଜୀବନରେ ଅବଶୋଷ ରହିଗଲା— ।

ଅବସ୍ଥା ଚକ୍ରରେ ପଡ଼ି ଅଶୋକ ବାବୁ ବି ବହୁତ ଦୂରକୁ ଗ୍ଳଗଲେ । ବିଦେଶୀ, ବିଦେଶୀ ହୋଇ ରହିଲେ । ସନ୍ଧ୍ୟା ଯେତିକି ଆଶ୍ୱସ୍ତି ଲାଭ କଲା ବାହାରର ପରିସ୍ଥିତି ପାଇଁ, ସେତିକି ଦୁଃଖିତ ହେଲା ତା ପ୍ରିୟକୁ ସତକଥା ଟିକକ କହି ନପାରି । ଏଣେ, ପ୍ରିୟର ଅଭାବ ବି ନିଜଠାରେ ଆବିଷ୍କାର କଲା ।

ଅଶୋକ ବାବୁ ଖୁବ୍ ଚେଷ୍ଟା କରିଥିଲେ, ଗଲାବେଳେ ଥରେ ଦେଖାକରି ପଦେ କଥା ହେବାପାଇଁ । ହେଲେ ସେତିକି ସୁଯୋଗ ବି ସେ ଦେଲାନି । ତା ନିକଟରେ ପରିସ୍ଥିତିଟା ହିଁ ଓଜନିଆ ହୋଇ ପଡ଼ିଥିଲା ।

ଏତେ ପରେ ବି ସେ ବହୁଥର ଆସିଛନ୍ତି ସନ୍ଧ୍ୟା ନିକଟକୁ । ବିବାହର ପ୍ରସ୍ତାବ ବି ତା ଆଗରେ ରଖିଛନ୍ତି । କିନ୍ତୁ ଭଲ ପାଇବାରେ ଦୂରଦୃଷ୍ଟିହୀନା, ଅପରିପକ୍ୱା ସନ୍ଧ୍ୟା ସିଧା ସଳଖ ପ୍ରତ୍ୟାଖ୍ୟାନ କରେ । ତାର ଅନ୍ୟ ଏକ କାରଣ ହେଉଛି—ଦୁହିଁଙ୍କ ଭିତରେ ଠିଆ ହୋଇଥାଏ ସମାଜ । ସନ୍ଧ୍ୟା ଭଲ ଭାବେ ନିରୀକ୍ଷଣ କରି ସମାଜର ଶୃଙ୍ଖଳକୁ ଦେଖେ । ଖୁବ୍ ଶକ୍ତ । ଲୁହାଠାରୁ ବି ଅଧିକ ଟାଣ । ସମାଜକୁ ଆଡ଼େଇ ହେବନି । ଅସମ୍ଭବ । ତେଣୁ ପରିସ୍ଥିତି ଓ ସମାଜକୁ ଆଡ଼େଇ ନପାରି ଅଶୋକ ବାବୁଙ୍କୁ ଦୂରେଇ ଦେବା ଶ୍ରେୟସ୍କର ମଣିଲା । ସେଇଆ ବି କଲା । ଲୋକଲୋଚନ ଅଗୋଚରରେ ପ୍ରେମ ଆରମ୍ଭ ହୋଇ ତାର ଭିତରେ ହିଁ ବିଦାୟ ନେଲା ।

ଜୀବନରେ ବିପ୍ଳବର ସୂତ୍ରପାତ ହେଲା ସେଇଠୁ । ଜାତି, ଗୋତ୍ର, ବର୍ଣ୍ଣ, ନକ୍ଷତ୍ର ନଜାଣି ଆଜି କାଲିକା ଯୁବକ ଯୁବତୀଙ୍କ ପ୍ରେମ କରିବା ସଞ୍ଚରର ଫଳ ଯାହା ହୁଏ, ସେଇଆ ହେଲା ।

ଅବଶ୍ୟ ଏତିକିରେ ପ୍ରେମ ଶେଷ ହେଲାନି । ରାତିପରେ ଦିନ ଆସେ । ସୂର୍ଯ୍ୟ ରଶ୍ମି ଧରଣୀକୁ ଚୁମ୍ବନ ଦେଇ ଫେରିଯାଏ । ଆଉ ଧରଣୀ ନୀରବ ରହେ । ତାର ବ୍ୟାକୁଳତାକୁ ଚାପି ରଖେ । କିନ୍ତୁ ବାର ବାର ରାତିର ଅନ୍ଧାର ଆସି ଆଲୋକର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଚୁରମାର କରିଦିଏ । ସେମିତି ସନ୍ଧ୍ୟା ନୀରବ ରହେ ।

ଏବେ ବି ସେମିତି ରହିଛି । ଭୁଲ ସଂଶୋଧନ କରି ପାରିନି । ବରଂ ଗୋଟିଏ ଭୁଲକୁ ସଂଶୋଧନ କରିବାକୁ ଯାଇ ବହୁ ଭୁଲ କରି ବସିଛି ।

ତାର ଏକମାତ୍ର ଭାଇ ଦେବ । ତାକୁ ମଣିଷ କରି ଗଢ଼ିବା ହେଲା ତା ଜୀବନର ବ୍ରତ । ସନ୍ଧ୍ୟା ମେଟ୍ରିକ ପାଶ୍ କରିବା ବର୍ଷ ମା ଓ ବାପା ଆଗ ପଛ

ହୋଇ କଲେଜରେ ଚାଲିଗଲେ । ସେଇ ଦିନଠାରୁ ମା ଓ ବାପାଙ୍କର ଅନ୍ତିମ ନିର୍ଦ୍ଦେଶରେ ଦେବର ଭାର ସେ ଗ୍ରହଣ କଲା । ଆଉ ସେଇ ଦେବକୁ ମଣିଷ କରିବା ପାଇଁ ଏବଂ ତାର ଆନ୍ତରିକ ପ୍ରିୟ ଅଶୋକ ବାବୁଙ୍କୁ ତାଙ୍କ ପ୍ରେମର ଶ୍ରେଷ୍ଠ ପ୍ରତିଦାନ ଦେବା ପାଇଁ ଚିର କୁମାରୀ ବ୍ରତ ଅବଲମ୍ବନ କଲା । ଏତେ ବଡ଼ ଦୁନିଆରେ ସେ ରହିଗଲା ଅବିବାହିତା ହୋଇ ।

ଅତ୍ୟଧିକ ମେଧାବୀ ଓ ସଦ୍‌ଗୁଣ ସମ୍ପନ୍ନ ଦେବ, ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଇଞ୍ଜିନିୟରିଂ ଉପାଧି ସର୍ବୋଚ୍ଚ କୃତିତ୍ୱର ସହ ପାଶ କଲା । ତାପରେ ଯୋଗେଇ ସିମେଣ୍ଟ କାରଖାନାର ହେଲା ମୁଖ୍ୟ ଉତ୍ପାଦକ ଯନ୍ତ୍ରୀ (Chief Production Engineer) । କେବଳ ସନ୍ଧ୍ୟା ଜୀବନରେ ବାକି ରହିଗଲା—ତା ପ୍ରିୟତମଠାରୁ ସବୁ କିଛି ପାଇ କିଛି ଦେଇ ପାରିଲାନି । ଦେବ ଇଞ୍ଜିନିୟରିଂ ପାଶ କରିବାରେ ଅଶୋକ ବାବୁଙ୍କର ଯଥେଷ୍ଟ ଓ ସର୍ବାଧିକ ସାହାଯ୍ୟ ରହିଛି । ସନ୍ଧ୍ୟାର ଅଜାଣତରେ, ବିନା ଅନୁରୋଧରେ ସେ ଖୁବ୍ ସାହାଯ୍ୟ କରି ଯାଉଛନ୍ତି । ସନ୍ଧ୍ୟା ବାରଣ କଲେବି ସେ ନିମାନି ସାହାଯ୍ୟ କରନ୍ତି । ସଂନ୍ଧ୍ୟା ନିରୁପାୟ ହୋଇ ଗ୍ରହଣ କରେ । କିନ୍ତୁ ଦେବକୁ ଜାଣିବା ପାଇଁ ମୋଟେ ଦିଏନି ।

ଇଞ୍ଜିନିୟର ଦେବ ବି ଯଥେଷ୍ଟ ଭକ୍ତି ଓ ସ୍ନେହ କରେ ଅପାକୁ । ତା ସାମନାରେ ଏବେ ବି ମୁହଁ ଟେକି କଥା କହି ପାରେନା ।

ଦେବକୁ ମ୍ୟାଚ କଲାଭଳି ବିବାହ କରାଇଲା । ତାର ଜଣେ ସ୍ତ୍ରୀ 'ବିଦ୍ୟୁତପ୍ରଭା' ସହ । ବିଦୁ ବି ଆଇ. ଏସ୍‌ସି. ପାଶ୍ କରିଥାଏ । ସୁଶିକ୍ଷିତ ଓ ସୁନ୍ଦର । ଗୁଣରେ ଆଉ ରୂପରେ ସବୁ ସମାନ—ଠିକ୍ ଦେବଭଳି । ସେ ଦିଜଣଙ୍କୁ ଏକାଠି ଦେଖିଲେ ସନ୍ଧ୍ୟାର ପେଟ ପୂରିଯାଏ । ସୁଖ ବିଛୁରିତ ହୁଏ ।

ଏଇ ହେଲା ସନ୍ଧ୍ୟାର ବିରାଟ ଆତ୍ମଜୀବନୀ । ନିଜର ଦୁଃଖ ଓ ଅଭାବ କାହାକୁ ନ କହି ସେ ତୁନି ରହେ । ଭିତରେ କାନ୍ଦେ ବାହାରେ ଖୁବ୍ ହସେ । ସମସ୍ତେ କହନ୍ତି ସନ୍ଧ୍ୟା ସଦାନନ୍ଦ । ଯୁଗକନ୍ୟା ନାରୀ ।

ଆଉ ଗୋଟିଏ ପ୍ରଶ୍ନ ବି ଉଠେ । ଯେତେବେଳେ—

ସନ୍ଧ୍ୟା ନାରୀ । ଅନିନ୍ଦ୍ୟ ସୁନ୍ଦରୀ । ରକ୍ତ ମାଂସର ଶରୀର ନେଇ ତାର ଜନ୍ମ । ରକ୍ତର ଉଷ୍ଣତା ଓ ମଳୟର ଶୀତଳତା ସେ ଅନୁଭବ କରେ । ସେ

ଭଲ ପାଉଛୁ ଓ ଭଲ ପାଇବା କଣ ଜାଣିଛୁ । ସୁଗଠିତ ଓ ସୁସଜ୍ଜିତ ଯୌବନ ପାଇ ଯୌବନର ମାଦକତା ଓ ଯନ୍ତ୍ରଣା ଅନୁଭବ କରିଛୁ । ତାଠାରେ ମାତୃ ଲକ୍ଷଣର ଅଭାବ ନାହିଁ । ନିୟମିତ ଭାବେ ଜଠର ଭିତରକୁ ଓଭମ ଆସି ବିଦାୟ ନିଏ । ସତ କହିବାକୁ ଗଲେ ସନ୍ଧ୍ୟା କେଉଁଥିରେ ନାରୀଠାରୁ ବାଦ ଯାଇନି । ପୁରୁଷ ଜାତି ପ୍ରତି ଦିନେ ହେଲେ ଘୃଣା ଆସିନି ।

ସେତେବେଳେ—

କାଣକୁ ଭଲ ପାଇ ଆଜଯାଏ ତାଠାରୁ ଦୂରରେ ରହିଛୁ କିପରି ? ପ୍ରିୟର ବିଚ୍ଛେଦ ଓ ବିରହ ଦୁଃଖ ସହିଛୁ କିପରି ? ତାଠାରେ ପ୍ରେମର ବ୍ୟର୍ଥତା ଓ ଯୌବନର ବ୍ୟଥା ଆତ୍ମପ୍ରକାଶ କରେନି କିପରି ???

ଏଇଟା ନାରୀ ଜାତି ସମ୍ମୁଖରେ ବିରାଟ ଓ ସୁ-ବିସ୍ତୃତ ପ୍ରଶ୍ନ ହୋଇ ରହିଛି ।

ତେବେ ଏତିକି କୁହାଯାଇପାରେ ନିଜର ଦୁଃଖକୁ ଦୂରେଇବା ପାଇଁ ପର ସୁଖରେ ସୁଖୀ ହୁଏ ଓ ପର ଦୁଃଖରେ ଦୁଃଖିନୀ ହୁଏ । ପର ପାଇଁ ସେ ନିଜକୁ ଉତ୍ସର୍ଗ କରେ । ପର ପାଇଁ ତାର ଆନ୍ତରିକତା ଖୁବ୍ ବେଶୀ । ଏଇଥି ଲାଗି ଡ଼ାକ୍ତରଖାନାରେ କେତେକ ନାରୀଙ୍କ ଦୁଃଖରେ ଖୁବ୍ ଦୁଃଖୀ ହୋଇ ପଡ଼ିଥିଲା ସେ । ମାୟାଠାରେବି ତାର ଯଥେଷ୍ଟ ମମତା ଆସିଗଲା ।

ଏ ଭିତରେ ଅନେକ ଦିନ ଗଡ଼ିଗଲା । ଦିନ ସାତର ଚକ ଆଗେଇଗଲା ଧବଳବୁକୁରେ ବଗଡ ଚୋଳ ।

ସନ୍ଧ୍ୟା ନୀରବରେ ବସି ବହୁତ ସମୟ ଭାବି ଭାବି କଟାଏ । ଡ଼ାକ୍ତରଙ୍କ ପରାମର୍ଶ ଅନୁଯାୟୀ ଆଜି ଚାରିମାସ ଛୁଟି ନେଲା । ଆଗରୁ ଦୁଇମାସ ନେଇଥିଲା । ଏଥିପୂର୍ବରୁ ଏତେଦିନ କେବେହେଲେ ବସି ନଥିଲା ନୀରବ ଓ କର୍ମଶୂନ୍ୟ ହୋଇ । ଅନ୍ତର ଭିତରର ଦୁଃଖ ଓ କୋହକୁ ଦୂରେଇବା ପାଇଁ ସେ ନିଜକୁ ସବୁବେଳେ କର୍ମ ତତ୍ପର କରୁଥିଲା । କିନ୍ତୁ ସମୟର ନିଷ୍ଠୁର ଆଘାତ ଯୋଗୁ

ମାରବରେ ବନ କଟାଇବାକୁ ସେ ବାଧ୍ୟ । ବନ ବେଙ୍ଗା ବନ୍ଧୁ ସହ ଗପ ଭଙ୍ଗ ଘର କାମରେ ସହଯୋଗ କରି ସମୟ କଟାଏ । ଆଜି ରାତି ହେଲେ···ଅସହ୍ୟ ଯନ୍ତ୍ରଣାରେ ଛଟ ପଟ ହୁଏ ।

ଏଣେ ବନ୍ଧୁଠାରୁ ଅପାର କଷ୍ଟକଥା ଶୁଣି ପ୍ରଥମେ ପ୍ରଥମେ ବେବି ବିଶ୍ୱାସ କଲାନି । କିନ୍ତୁ ପରେ ବିଶ୍ୱାସ କଲା । ଦିନେ ଅପାର କୋଠରୀ ଭିତରେ ହଠାତ୍ ପଶି ଯାଇ ଯାଇ ଦେଖିଲା, ସାମନାରେ ଖୋଟିଏ ଯୁବକର ଫଟୋ ଥୋଇ ହାତ ଯୋଡ଼ି ମୁଦ୍ରିତ ଆଖିରେ ଅପା ବସିଛି । ସେଇଠୁ ସେ ପଛେଇ ଆସିଥିଲା ଏବଂ ବୁଝି ପାରିଥିଲା—ତା ମାନେ କଣ ହୋଇ ପାରେ । ତାପରେ ତାର ମନେ ପଡ଼ିଗଲା ବହୁ ଦିନ ତଳର କଥା । ସେ ଅପା ପାଖରେ ରହି ପାଠ ପଢ଼ୁଥିଲା ବେଳେ କେତେଥର ସେଇ ଯୁବକଙ୍କୁ ଦେଖିଛି । କିନ୍ତୁ ସମୟ ପାଇଁ ସେ ଆସି ବିଦାୟ ନେଇନ୍ତି । କିନ୍ତୁ ଦିନେ ବି ଅପାଠାରେ ଭଲ ପାଇବାର କୌଣସିଟା ରୂପ ଦେଖିନି । ଯୁବକ ଜଣକ ବି ସେମିତି କିଛି ଭଲ ପାଇବା ଭଳି ଅଭିନୟ କରି ନାହାନ୍ତି ।

ସେ ଯାହା ହେଉ, ବନ୍ଧୁର ସମସ୍ତ କଥା ଓ ଅପାର ରୁମ୍‌ରେ ଜଣେ ଯୁବକଙ୍କର ଫଟୋ ପ୍ରଥମ ଥର ପାଇଁ ଦେଖି ସେ ଆଶ୍ଚର୍ଯ୍ୟ ନ ହୋଇ ରହି ପାରିଲାନି, ତେବେ ଅପାକୁ ବା ସେ ପଚାରିବ କ'ଣ ? କି ଅନୁରୋଧ ବା ଆଦେଶ କରିବ ? ଯାହାକୁ ମା ଭଳି ଭକ୍ତି କରେ, ତା ସଞ୍ଚିତ ପ୍ରେମକୁ କେନ୍ଦ୍ର କରି କଣ ବା କଥା ହେବ ? ତେଣୁ ତୁନି ରହିଲା । ସେଇ ଦିନଠାରୁ, ଅପା ବିଷୟରେ ବନ୍ଧୁ ଯାହା କହିଲେ ବି, ସେ ତୁନି ରହେ ଏବଂ ଅନ୍ୟ ମନସ୍କ ଥିଲା ଭଳି ଅଭିନୟ କରି ମେଲ ବସେ ବିରାଟ ମୋଟା ଇଞ୍ଜିନିୟରିଂ ବହି । ବେଣ୍ଡିଂ-ମୋମେଣ୍ଟ, ସିୟରିଂ ଫୋର୍ସ, ସିମେଣ୍ଟ, ଗୋଡ଼ି, ବାଲି, ଇଟା, ଲୁହା ଇତ୍ୟାଦିରେ ମନନିଯୋଗ କରି ନିଜକୁ ନିର୍ଜୀବ ପଦାର୍ଥ ସହ ମିଶାଇ ଦିଏ ।

ଛୁଟି ସରି ଆସୁଥାଏ, ସନ୍ଧ୍ୟା ଅନୁଭବ କରୁଥାଏ ଯେପରି ତାରି ବାଳ ପାଚିଗଲଣି । ଯୌବନଟା ଥାଉ ଥାଉ ବାର୍ଦ୍ଧକ୍ୟ ମାଡ଼ି ଆସିଲଣି । ତେବେ ତାରି ମନରେ କିଛିଟା ପରିବର୍ତ୍ତନ କଲା । ବେଶି ଜପିବା ଅଭ୍ୟାସକୁ ଦୂରେଇ ଦେଇ ନୀରବ ରହେ । ଗାନ୍ଧୀଙ୍କର ଗୋଟିଏ ଉପଦେଶକୁ ତାରି ମନ କରି ନେଲା— "କାହାରି ସୁଖରେ ବେଶି ସୁଖୀ ହେବନି କିମ୍ବା କାହାରି ଦୁଃଖରେ ଅତିଟା ଦୁଃଖ କରି ଆତ୍ମହରା ହେବନି", ତା ସାଥେ ସାଥେ ଏଇଟା ବି ନିୟମ କଲା—ଅଶୋକ ବାବୁଙ୍କୁ ଭୁଲିବନି । ପରିସ୍ଥିତିକୁ ଭ୍ରୂକ୍ଷେପ ନକରି ଭଲ ପାଇଥିବ ।

ଆସ୍ତେ ଆସ୍ତେ ଅଶୋକବାବୁଙ୍କ ପ୍ରତି ତାରି ପ୍ରେମ ଓ ଭଲ ପାଇବା ବାହାରେ ଆତ୍ମ ପ୍ରକାଶ କରୁଥାଏ । ବିଦୁ ଠିକ୍ ଜାଣି ପାରିଲା ଅପା ତାଙ୍କର ପ୍ରିୟଙ୍କୁ କେତେ ଭଲ ପାଆନ୍ତି । ତଥାପି ସନ୍ଧ୍ୟା ଭ୍ରୂକ୍ଷେପ ନକରି ଝୁରି ବସିଲା ଦିନ ରାତି । ସେ ବୁଝିଁଲା ଦୁନିଆ ଜାଣୁ ସେ ରୁକ୍ଷ ନୁହେଁ, ସେ ସରସୀ; ପ୍ରେମର ତ଼ଳ ତ଼ଳ ସରସତା ଯୌବନ ଭିତରେ ରହିଛି । ଆଜି ସେଇ ସରସୀ ବକ୍ଷରେ ସେ ଫୁଟାଇ ପାରିଛି ଏକମାତ୍ର ପଙ୍କଜ । ସେ ଭଲ ପାଇବା ଜାଣେ, ବେଶ୍ ଜାଣେ । ନାରୀର ସମସ୍ତ କୋମଳତା, ନମ୍ରତା, ଲଜ୍ଜାଶୀଳତା ତା ପାଖରେ ଅଛି । ନାହିଁ କେବଳ ହାତରେ ଶଙ୍ଖା ଓ ମଥାରେ ସିନ୍ଦୁର ।

ଏମିତି ସେ ବହୁତ ବିଶ୍ଳେଷଣ କରେ ନିଜକୁ ଓ ନିଜର ପ୍ରେମକୁ । ଆସନ୍ତା କାଲି ଗୁଡାକ ବିଗତ କାଲି ଭିତରେ ଲୁଚି ଲୁଚି ଦିନେ ଖଣ୍ଡିଏ ଚିଠି ହେଡ୍‌ମିଷ୍ଟ୍ରେସ୍‌ଙ୍କ ପାଖରୁ ପାଇଲା ।

ଭଉଣୀ ସନ୍ଧ୍ୟା,

ଆଶାକରେ ଅପରେସନ୍ ପରେ ବିଶ୍ରାମ ନେଇ ଭଲରେ ଥିବ । ଘରେ ଭାଇ ଭାଉଜ ବି ଭଲରେ ଥିବେ । ଦୀର୍ଘ ପାଞ୍ଚ ମାସ ଭିତରେ ସ୍କୁଲ ଆଡ଼େ ଥରେ ବୁଲି ବି ଆସିଲନି । ବୋଧହୁଏ ସ୍କୁଲ ପ୍ରତି ତୁମର ସେବ ଭଲ ମାୟା ମମତା ଆଉ ନାହିଁ ।

ହଁ···ତୁମର ଛୁଟି ଆହୁରି ଏକମାସ ଅଛି ସତ, ହେଲେ ଏଠାରେ ତୁମର ଉପସ୍ଥିତି ଖୁବ୍ ଜରୁରୀ ହେଲଣି । ତୁମେ ଯିବା ଦିନଠାରୁ ନାନା ପ୍ରକାର ବିଶୃଙ୍ଖଳା ଦେଖା ଦେଲଣି । ଅନେକ ପ୍ରକାର କୁତ୍ସା ରଟନା ଏ ସ୍କୁଲର ଷ୍ଟାଫ୍ ଓ ଛାତ୍ରୀଙ୍କ ନାମରେ ଶୁଣିବାକୁ ମିଳୁଛି । ଦିନକୁ ଦିନ ପରିସ୍ଥିତି ଅସମ୍ଭାଳ

ବୋଧ ହେଉଛି । ତୁମ ଜାଗାରେ ଛୁଟି ସମୟଟକ ପାଇଁ ଯେଉଁ ମିଷ୍ଟ୍ରେସ୍ ଆସିଛନ୍ତି, ସେ ହେଉଛନ୍ତି ଏ ସବୁର ମୂଳ । ଏଠାରେ ଗୋଟିଏ ଅଶ୍ଳୀଳତାର ବାତାବରଣ ସୃଷ୍ଟି କରିବା ସାଥେ ସାଥେ ଗୁଡାଏ ଟଙ୍କା ଆତ୍ମସାତ୍ କରି ବର୍ତ୍ତମାନ ସେ ସସ୍‌ପେଣ୍ଡ ହୋଇଛନ୍ତି ।

ତଦନ୍ତ କରିବା ପାଇଁ ଇନସ୍‌ପେକ୍ଟ୍ରେସ ଆସିଥିଲେ । ସବୁ ଦେଖି ଶୁଣି ବଡ଼ ହତୋତ୍ସାହ ହୋଇ ପଡ଼ିଲେ । ଶେଷରେ ଆମେ ସବେଁ ବହୁ ବେଳ ଯାଏ ଚିନ୍ତା କରି ଠିକ୍ କଲୁ, ତୁମେ କେବଳ ଆସିଲେ ଏ ପରିସ୍ଥିତି ଓ ବିଶୃଙ୍ଖଳା ଦୂର ହେବ ଏବଂ ଅନୁଷ୍ଠାନର ପୂର୍ବସୁନାମ ଫେରି ଆସିବ ।

ତେଣୁ ଏ ଚିଠି ଦ୍ୱାରା ମୁଁ ବିଶେଷ ଅନୁରୋଧ କରୁଛି ତୁମେ ଛୁଟି କ୍ୟାନ୍‌ସେଲ୍ କରି ସଙ୍ଗେ ସଙ୍ଗେ ତୁମର ସେଇ ମମତାଭରା ଅନୁଷ୍ଠାନକୁ ଫେରି ଆସିବ । ତୁମର ବିଶ୍ରାମ ପାଇଁ, ଏଇଠି ସବୁ ପ୍ରକାର ସୁବିଧା ବି ପାଇ ପାରିବ ।

ଶୁଭେଚ୍ଛା ଓ ଶୁଭାଶୀର୍ବାଦ ଦେଇ ତୁମର ଅପେକ୍ଷାରେ ରହିଲି ।

ଇତି

ସୁମତି ମିଶ୍ର

Head mistress.

ଚିଠିଟି ପଢ଼ିସାରି ସନ୍ଧ୍ୟା ଆଖିରୁ ଦୁଇଟୋପା ଲୁହ ବୋହିଗଲା ସତ । ହେଲେ ଅନୁଷ୍ଠାନ ପ୍ରତି ତାର ସେତେଟା ମମତା ଆସିଲାନି । ସେ ଭାବିଲା, ନିଜ ପାଇଁ କେବଳ ନିଜକୁ ଉତ୍ସର୍ଗ କରିବ । ନିଜ କଥା ଭାବିବ—ନିଜର ପ୍ରିୟ ପାଇଁ ଭାବିବ । ନଚେତ୍ ବଞ୍ଚିବ କିପରି ? ଦର୍ଶନକୁ ଆଦର୍ଶ କରି ସାବଜନୀନ ମନୋଭାବ ନେଇ ଯଦି ପରପାଇଁ ସବୁ କିଛି ମଣିଷ ତ୍ୟାଗ କରେ, ତେବେ ଅନ୍ୟ ଜଣେ ସୁଖୀ ହେବ ସତ, କିନ୍ତୁ ନିଜେ ଖୁବ୍ ଦୁଃଖୀ ହେବାକୁ ପଡ଼ିବ । ଆଉ ନିଜର ବି ଯଥେଷ୍ଟ କ୍ଷତି ହେବ । ଯାହାକୁ କେହି ପୂରଣ କରି ପାରିବେନି । ହାହାକାର ଭିତରେ ବିତିବ ଜୀବନ ଗୁରିପଟେ । ଏଣେ ନିଜର ଦାନ ଓ ସହାନୁଭୂତିକୁ ନେଇ ବାହାର ଦୁନିଆଟା ଖୁବ୍ ହସ ଖୁସିରେ ଚଳୁଥିବ ।

ଏମିତି ଭାବି ସେ ନିଜକୁ ଦୃଢ଼ କଲା । ଥରକୁ ଥର ଚିଠିଟି ପଢ଼େ ଏବଂ ଭାବେ । ଭାବିବା ଭିତରେ ଏତକ ବି ଭାବିଲା—ଯେତେବେଳେ ଗୋଟାଏ ବିରାଟ ଅନୁଷ୍ଠାନ ତାର ଭଳି ଗୋଟିଏ ଛୋଟିଆ ମଣିଷକୁ ଖୋଜୁଛି, ସେ ନ ଯିବ ବା କାହିଁକି ? ଯିବ ।

ପୁଣି ପର ମୁହୂର୍ତ୍ତରେ ମତ ବଦଳାଇ ନେଲା । ଭାବିଲା, ସେ ଯାଇ କଣ କରିବ ? ତାର ପ୍ରତିଷ୍ଠା ଭକ୍ତି ଦେଇ ଗଢ଼ିଥିବା ସଂସ୍କୃତି ଓ ସମାଜ ଚଳଚେ-ବେଳେ ବିଶୃଙ୍ଖଳିତ ହୋଇ ଯାଇଛି, ସେ କଣ ଆଉ ତାକୁ ସଜାଡ଼ି ପାରିବ ? ପାରିବନି । କେବଳ ଦେଖିବ ନିଜର ଅକ୍ଲାନ୍ତ ପରିଶ୍ରମ ଦେଇ ଗଢ଼ିଥିବା ଫୁଲ ବଗିଚା ଭିତରେ ନର୍ଦ୍ଦମାର ପଚା ସଢ଼ା ପଙ୍କ ପଡ଼ୁଛି । ଛିଟିକି ଯାଉଛି କେତେଟା ଗଛ ଓ ଫୁଲ ଉପରେ । ଦୁର୍ଗନ୍ଧ ଭରି ରହୁଛି ।

ଶେଷରେ ଠିକ୍ କଲା—ନା··· । ସେ ଯାଇ ପାରିବନି । ଶିକ୍ଷକତାରୁ ସେ ବିଦାୟ ନେବ । ନିଜକୁ ବି. ଏ. ଭି ଭଳି ବୋଲି ଆଉ ପରିଚୟ ଦେବନି । ସେ ହେବ ଯେମିତି ବଣ୍ଟିତ ଜୀବନର ସନ୍ନ୍ୟାସିନୀ । କାଟିବ କର୍ମଶୂନ୍ୟ ଜୀବନ ।

ଏତିକି କହି ସିଡ଼ି ଉପରକୁ ଉଠିଲା, ଭାଇ ଭାଉଜଙ୍କ ସହ ଏଇ ବିଷୟ ନେଇ ପରାମର୍ଶ କରି ଗୋଟିଏ ସିଦ୍ଧାନ୍ତରେ ପହଞ୍ଚିବାପାଇଁ ଚାକରକୁ ତଳେ ପଚାରିଲା—ଦେବ ଫେରିଲେଣି ।’

“ନାଁ···ଆଜ୍ଞା ଏଯାଏଁ ଗାଡ଼ି ଆସିନି । ଦୁଧ ଦୁଆଁ ହୋଇନି । ବାବୁ ଅପେକ୍ଷା କରିଛନ୍ତି ।”

—“ଆଚ୍ଛା ମୁଁ ଟିକିଏ ଯାଉଛି କଥା ହୋଇ ଫେରିବି । ମୋ ରୁମ୍‌ଟା ଖୋଲା ଅଛି ତଳେ” ।

—“ଆଜ୍ଞା”, କହି ଚାକର କର୍ତ୍ତବ୍ୟ ପାଳିବା ପାଇଁ ଚାଲିଗଲା ଦାଣ୍ଡ ଦରଜାଟା ଆଡ଼କାଇ ।

ସନ୍ଧ୍ୟା ଉପର ମହଲାକୁ ଉଠିଗଲା । ପୋର୍ଟିକୋ ଉପରେ ଠିଆ ହୋଇ ଦେଖିଲା, ଫ୍ୟାକ୍ଟ୍ରୀର ଲାଇଟଗୁଡ଼ିକ ଉଜ୍ଜ୍ୱଳ ହୋଇ ଜଳୁଛି । ସଫା ଦିଶୁଛି ସରୁ ସରୁ ରାସ୍ତାଗୁଡ଼ିକ ଚିମିନିରୁ ଧୂଆଁ ବାହାରି ଆକାଶଟାକୁ କଳା କରିବାରେ ଅବିରତ ଲାଗିପଡ଼ିଛି । ମଳୟ ଧିମେଇ ଧିମେଇ ଗଛରୁ ଲୁଗା ଖସାଇ ଆଣୁଛି ।

ଦେବର ରୁମ୍ ଆଡ଼େ ସନ୍ଧ୍ୟା ଆଗେଇଲା । ଟିକିଏ ଦୂରରେ ଥାଇ ଦେବକୁ ଡାକିବା ପୂର୍ବରୁ ହଠାତ୍ ଶୁଣି ପାରିଲା ଦେବ କହୁଛି, “ଅପା ତା ନିଜକୁ ଖୁବ୍ ଭଲ ଭାବେ ଜାଣେ । ତୁମେ କିବା ମୁଁ ଉପଦେଶ ଦେବା ଦରକାର ନାହିଁ । ବାରମ୍ବାର ଅପା କଥା କହି ମୋତେ ବିବ୍ରତ କରନି” ।

ବନ୍ଧୁ ଉତ୍ତର ଦେଲା, “ନା···ମ । ବିରକ୍ତ କରୁନି ଯେ ଏ ଘରର ବୋହୂ ହିସାବରେ ମୋର ଯାହା କର୍ତ୍ତବ୍ୟ ମୁଁ ତାହା କରୁଛି ଓ କହୁଛି” ।

—“ବୋହୂ ହିସାବରେ ମୋତେ କିଛି କହିପାର । କିନ୍ତୁ ଅପାର ନିଜତ୍ୱ ଉପରେ ପଶିବାକୁ ତୁମେ ଚେଷ୍ଟା କରିବାଟା ତୁମର ଔଦ୍ଧତ୍ୟ ଛଡ଼ା କିଛି ନୁହେଁ ।”

—"କିନ୍ତୁ......"

—"କିନ୍ତୁ କଣ ?", ଟିକିଏ ରାଗିଯାଇ ଦେବ ପଚାରିଲା ।

—"ଟିକିଏ ଭାବି ଦେଖିଲ, ତୁମ ପାଇଁ ସେ କେତେବଡ଼ ତ୍ୟାଗ କରି ନାହାନ୍ତି । ତୁମେ ତାଙ୍କ ପାଇଁ କିଛିଟା କର ।"

—"କଣ କହୁଛ ?"

—"ଅପାଙ୍କ ବାହାଘର ।"

ସନ୍ଧ୍ୟା ଚମକି ପଡ଼ିଲା ! କାନ୍ଥକୁ ଆଉଜି ଝରକା ନିକଟରେ ଠିଆ ହୋଇ ସ୍ପଷ୍ଟ ଶୁଣିବାକୁ ଚେଷ୍ଟା କଲା ବାକିତକ ତଥାବାର୍ତ୍ତା । ଅବଶ୍ୟ ସେପରି ଶୁଣିବାରେ ଅନ୍ୟ ଝିଅଙ୍କ ଭଳି ନିଜ ବାହାଘର କଥା ଶୁଣି ଉତ୍‌ଫୁଲ୍ଲ ହେବାର ଆଗ୍ରହ ନଥାଏ । ଥାଏ......ସେ ତା ନିଜକୁ ବାହାରେ କିଭଳି ପରିଚୟ ଦେଇଛି, ତାହା ଜାଣିବା ପାଇଁ ବ୍ୟଗ୍ରତା ।

ଦେବ କିଛିକ୍ଷଣ ନୀରବ ରହି ଖୁବ୍ ଗମ୍ଭୀର ଭାବେ ଆରମ୍ଭ କଲା, "ବନ୍ଧୁ ! ଭାବିନି ତୁମମାନଙ୍କ ଭଳି ଅପା ବି ଜଣେ ।"

—"ତା ମାନେ କହୁଛ ବାହା ହେବାର ଇଚ୍ଛା ତାଙ୍କର ମୋଟେ ନାହିଁ ?"

—"ଥାଇପାରେ । ହେଲେ ମୋ ଆଗରେ ମୋ ବଡ଼ ଭଉଣୀର ନାରୀତ୍ୱ ଉପରେ ଚର୍ଚ୍ଚା କରିବାକୁ ତୁମେ କୁଣ୍ଠାବୋଧ କରୁନା ! !"

ମୁଁ ବି ତ ବଡ଼ ଭଉଣୀଙ୍କୁ କମ୍ ଦେଖୁନି । ନାରୀ ହୋଇ ଆଉ ଗୋଟିଏ ନାରୀର ନିରବ ବେଦନାକୁ ପ୍ରକାଶ କରୁଛି ।

—"ସେତିକିରେ ବନ୍ଦକରି କବାଟ ଦିଅ । ନିଦ ମାଡ଼ିଲାଣି ।"

—"ଆଗେ ମୋର ଉତ୍ତର ଦିଅ ।"

—"କହିଲି ପରା । ଅପାର ବାହାଘର ପାଇଁ କାହାକୁ ଚିନ୍ତା କରିବା ଦରକାର ନାହିଁ । ସେ ଛୋଟ ପିଲା ନୁହଁ; କିବା ତୁମ ବୟସର ଅପରିପକ୍ୱ ଜ୍ଞାନ ତାଠି ନାହିଁ । ସେ ତୁମଠୁଁ ବୟସରେ ଢ଼େର ବଡ଼ ଓ ଜ୍ଞାନୀ ବି ।"

—"କିନ୍ତୁ ମନେରଖ—ନାରୀଟି ଜାନ୍ତବଟା ତମ ଭଳି ନୁହଁ । ମନ ତଳି ଆଶା, ମନଯାଏ ବି ବ୍ୟକ୍ତ କରିହେବନି ।"

—"ଆଃ...କହିଲି ପରା କବାଟ ଦିଅ । ମୋତେ ବିରକ୍ତ କରନି"

—"କବାଟତ ସବୁଦିନ ଭଳି ନିଶ୍ଚେ ବନ୍ଦ ହେବ । ହେଲେ ଆଗେ ମୋ ପ୍ରଶ୍ନର ଜବାବ ଦିଅ"

—"କଣ ? ଖୁବ୍ ଚିଡ଼ି ଯାଇ ଦେବ ପ୍ରଶ୍ନ କଲା ।

—"ଅପାଙ୍କ ବାହାଘର କେବେ ହେବ ? ମୁଁ ଯାହା ଦେଖୁଛି ସେ ଖୁବ୍ ବ୍ୟାକୁଳ" ।

ବହି ଉପରୁ ଆଖି ଫେରାଇ ଆଣିଲା ଦେବ । ଖୁବ୍ ଗରମ ହୋଇ ଗର୍ଜି ଉଠିଲା, "Shut-up ! ଲାଜ ଲାଗୁନି ! ତାର ସ୍ତ୍ରୀ ହୋଇ ତୁମେ ତାର ଯୌନ ପ୍ରବୃତ୍ତି ଉପରେ ଚର୍ଚ୍ଚା ଆରମ୍ଭ କରୁଛ । ପୁଣି ତାର ସାମ୍ନା ଭାଇ ଆଗରେ !"

—"ତୁମେ ଗାଳି ଦିଅ । ମାର··· । ମୁଁ ନିଶ୍ଚୟ କହିବି ଓ କହୁଥିବି । ଆପଣଙ୍କଠାରୁ ଅଶୋକବାବୁ ଠିକଣା ନେଇ କାଲିକି ଯାଅ । ସବୁ ବୁଝ, ଯେତେ ଶୀଘ୍ର ପାର ବାହାଘର ପାଇଁ ଚେଷ୍ଟାକର । ହେଇ, ଆଷାଢ଼ ମାସରେ ଯୋଗ ଅଛି । ମୋତେ ଡେରି କରନି ।" ପୁଣି ଟିକିଏ ରହି ବନ୍ଦୁ ଆରମ୍ଭ କଲା, "ବୁଝିଲ ତୁମଠୁଁ ବଳି ବୋକା ଜଗତରେ କେହି ନଥିବେ । ନିଜେ ବିବାହିତ ହୋଇ ବୁଝି ପାରୁନା ନାରୀର ଦରଦତା ଆଉ ବ୍ୟାକୁଳତା ? ସେଥିରେ ପୁଣି ଅପାଙ୍କ ବୟସ ଏତେ ଗଡ଼ି ଯାଇଛି । ନାରୀ ଅବିବାହିତ ରହିପାରେ । ହେଲେ ପରଣି ସେପଟେ ନୁହେଁ । ଏତକ ମନେ ରଖି ଅଶୋକବାବୁଙ୍କୁ ସେ ଏତେ ଭଲ ପାଉଛନ୍ତି ଯେ କୌଣସି ଇତିହାସରେ ବି ବିରଳ । ତୁମେ ଭାବି ଦେଖିଲ···ଅପା କେବେ ଏମିତି ହୋଇଥିଲେ ? ଏଠି ରହିବା ଯୁଉମାସ ଭିତରେ କେତେ ଥର ସେ କଟକ ଗଲେଣି । ଗଲାବେଳେ କେତେ କଣ ଭାବ ଭାବ ଯାଆନ୍ତି । ଆଉ ଫେରିଲା ବେଳେ ତାଙ୍କର ମୁହଁ ମଉଳ ଯାଇଥାଏ—ମନ ମରିଯାଉଥାଏ । ଖୁବ୍ ଚିନ୍ତିତ ଓ ବ୍ୟତିବ୍ୟସ୍ତ ଭଳି ଜଣାପଡ଼ନ୍ତି । ସବୁବେଳେ ମନଟାକୁ ମାରିଦେଇ ମାରିବା ହୋଇ ବସୁଛନ୍ତି । ଏଣେ ସେ ଦିନ ଡାକ୍ତର କହିଲେ ତାଙ୍କୁ ହିଷ୍ଟ୍ରିୟା ହେଲାଣି, ଶୀଘ୍ର ଘରକୁ ନେଇଯାଅ । ସେଥିରୁ କଣ କିଛି ବୁଝି ପାରୁନ ?"

ଏକା ନିଶ୍ୱାସରେ ଏତକ କହିଦେଇ ବନ୍ଦୁ ତୁନି ରହିଲା । ସ୍ୱାମୀ ଚିନ୍ତିତ ହେବା ଦେଖି ଖୁବ୍ ନିକଟକୁ ଲାଗିଯାଇ କହିଲା, "କଣ ମୋ ଉପରେ ରାଗୁଛ ? ଛିଃ··· । ମୁଁ ତ କିଛି ଖରାପ କଥା କହୁନି । ନାରୀର ଜନ୍ମ ସୃଷ୍ଟିକୁ ବଞ୍ଚାଇବା ପାଇଁ, ମା' ହେବା ପାଇଁ । ଆଉ ସେ କଣ ବାଦ୍ ଯିବେ ବୋଲି ଭାବୁଛ । ସେ କିଛି କହିପାରୁ ନାହାନ୍ତି । ଏଣେ ଧୃଏତ ପ୍ରବୃତ୍ତିରେ ଜଳି ପୋଡ଼ି ହିଷ୍ଟ୍ରିୟା ରୋଗୀ ହୋଇ ସାରିଲେଣି" ।

"କିନ୍ତୁ ଜାଣ······ ତୁମେ ଚାଲିଗଲା ପରେ ଡାକ୍ତର କଣ କହିଲେ ? କହିଲେ ତାର ରୋଗ ଇନ୍ଦ୍ରିୟ ବିକାର ଯୋଗୁଁ ନୁହେଁ······ ।"

—"ଆଉ ମନର ବିକାର ତ ?"

—"ହଁ········· ।"

—"ବାଃ······ । ଏତେବଡ଼ ଇଞ୍ଜିନିୟର ହୋଇ ଗୋଟିଏ ଡାକ୍ତରଙ୍କ ପାଖରେ ଠକିଗଲ । ତମର ଟିକିଏ ଅକଲ ନାହିଁ ବୁଝିବାକୁ । ମନର ବିକାର ନଥିଲେ ଯୌନ ବିକାର କଣ ସୃଷ୍ଟି ହୋଇପାରେ ? ଆଉ ମନର ବିକାର ଦେଖାଦେଲେ କଣ ଇନ୍ଦ୍ରିୟ ବିକାର ବାଦ୍ ଯାଇପାରେ । ତୁମେ ପରା ବିବାହିତ ?"

—"ବନ୍ଦୁ ! ତୁମକୁ ଯଥେଷ୍ଟ ପ୍ରଶ୍ରୟ ଦେଲି ବୋଲି କହୁଚ ଆଗେଇ ଯାଇ କଥାଟାକୁ ବେଳକୁ ବେଳ ଅଶ୍ଳୀଳ କରି ଦେଇଛ । ମୋର ବିବାହିତ ଜୀବନକୁ ଆକ୍ଷେପ କରି ଅପାର ମନସ୍ତତ୍ତ୍ୱକୁ ଯୋଡ଼ିବାଟା ତୁମର ଧୃଷ୍ଟତାର ସୀମା ଟପି ଯାଉଛି ।"

—"ଶୁଣ······। ତୁମେ ମୋତେ ଯେତେ ଶାସ୍ତି ଦେବ ମୁଁ ଗ୍ରହଣ କରିବ । କିନ୍ତୁ ନାରୀ ହୋଇ ନାରୀ ପାଇଁ ନିଷ୍ଟୟ ଲଢ଼ିବି । ତା ବାହାରେ ଜାଣ······? ଘରେ ଗୋଟିଏ ଅବିବାହିତା ସ୍ୱସ୍ତ୍ରୀସ୍ତ୍ରୀ ଯେପେଣ୍ଟ ରଖି ଗୋଟିଏ ବୋହୂ ଆଣିବା କି କଷ୍ଟ ! ବଗିଚାର ଫୁଲଟିଏ ଯଦି କଣ୍ଟକଶୂନ୍ୟହୋଇ ପବନରେ ମନ ଖୋଲି ହସି ବାହାରର ଭ୍ରମର ଓ ପ୍ରଜାପତିକୁ ପ୍ରତିରୋଧ ନକରେ, ତେବେ ଅବସ୍ଥା କଣ ହେବ ବୁଝି ପାରୁଛ ? ଏଣେ କହୁଛ ଆଉ କେଇଟା ମାସ ପରେ ତୁମେ ଆମେରିକା ଯିବ । ଏଠି ମୁଁ ତୁମର ବିରହ ଏବଂ ଅପାଙ୍କର ସ୍ୱସ୍ତ୍ରୀସ୍ତ୍ରୀ ଲକ୍ଷଣ ଦେଖି କପରି ଚଳିବି କହିଲ ?"

ବନ୍ଦୁର ଔଦ୍ଧତ୍ୟ ଓ ଅସହ୍ୟ ବାକ୍ୟକୁ ସହି ନପାରି ଖଟ ଉପରେ ମୁହଁ ମାଡ଼ି ଦେଇ ଶୋଇଗଲା । ଖାଲି କହିଲା, "ବନ୍ଦୁ······ । ସବୁ ଶୁଣିଲି—ସବୁ ସହିଲି । ହେଲେ······ କାଲି ସକାଳେ ଯାହା କରୁ ନିଷ୍ପତ୍ତି । ଆଜି ଟିକିଏ ଭାବିବାକୁ ଦିଅ । ପରିସ୍ଥିତି ଯାହା ହେଲାଣି, ସମାଧାନ ପାଇଁ ଏଇ ଘରୁ ତୁମେ କିମ୍ବା ଅପା କେହି ଜଣେ ବିଦାୟ ନେବା ଦରକାର ।"

ତାପରେ ପାଟି କରି କହିଲା, "ଲାଇଟ ଅଫ୍ କର, ମୁଁ ଶୋଇବି ।"

ସନ୍ଧ୍ୟା ସେମିତି ଆଉଜା ଥାଏ । କିନ୍ତୁ ସ୍ୱାମୀ ପାଗଳିନୀ ଠିଆ ହୋଇ ବହୁତ ବେଳଯାଏ ଭାବିଲା । ବୁକର ଶିଡ଼ିରେ ଉଠିବା ଶବ୍ଦ ଶୁଣି ଝଡ଼ ବେଗରେ ତାର ଗତି ବଦଳାଇ ନେଲା । ଶିଡ଼ିରେ ଓହ୍ଲାଇ ଓହ୍ଲାଇ ଭାବିଲା, "ହେଉ ମୋର ମଣିଷ ହୋଇଛି, ଆଜି ବନ୍ଦୁ ବି ନିଜକୁ ଗୋଟିଏ ସୃଷ୍ଟି ଭିତରେ ଶକ୍ତ ସାଜି ପାରିଛି । ହେଉ ମୋର ଠିକ୍ କହୁଛି । କେହି ଜଣେ ବିଦାୟ ନେବା ଦରକାର । ତେବେ ବନ୍ଦୁର କାଲିକା ପିଲା ସମାଧାନରେ ପହଞ୍ଚିପାରୁନ । ମତେ ହିଁ ସାହାଯ୍ୟ କରିବାକୁ ପଡ଼ିବ ।"

ସନ୍ଧ୍ୟା ସମ୍ମୁଖରେ ଗୁଡ଼ାଏ ସମସ୍ୟା । ଅନ୍ଧକାରମୟ ଭବିଷ୍ୟତ—ଅବିବାହିତା ଜୀବନ—ତେଣେ ଅଶୋକ ବାବୁଙ୍କ ପ୍ରତି ତାର ଅଗାଧ ପ୍ରେମ । ଏଥି ବାହାରେ ପୁଣି ରହିଛି—ଅଶୋକ ବାବୁଙ୍କ ଅନୁରୋଧ । ତାକୁ ଏମିତି ଗୋଟିଏ ସୂତ୍ର ବାହାର କରିବାକୁ ପଡ଼ିବ ଯେପରି ସମସ୍ତ ସମସ୍ୟାର ସମାଧାନ ହୋଇ ପାରିବ । ତେବେ ଅବିବାହିତା ନାରୀ ହୋଇ, ଅଶୋକ ବାବୁଙ୍କୁ ତାର ପ୍ରେମର ପରିଚୟ ଦେବାକୁ ଗଲାବେଳେ, ପୁରୁଷ ଜାତିର ଶୀକାରରୁ ବଞ୍ଚିତ ହେବ କପରି ? ଏମିତି ବସି ବହୁତ ରାତି ଯାଏ ଭାବିଲା ।

ଆତ୍ମହତ୍ୟା ଅଭିଳାଷକୁ ମନ ଭିତରେ ଆଶ୍ରୟ ଦେବା ପାଇଁ ସେ ଏକ୍‌ବାରେ ନାରାଜ । ଯେହେତୁ ଅଶୋକ ବାବୁଙ୍କ ପାଇଁ ବହୁତ କଷ୍ଟ କରିବାକୁ ବାକି ରହିଯାଇଛି ତା ଜୀବନରେ । ତାଙ୍କର ରେଜିଷ୍ଟ୍ରଡ଼ ଚିଠି ଖୋଲି ବାର ବାର ପଢ଼େ ଏବଂ ତାଙ୍କର ବହୁତ ଦିନ ତଳର ଅଭିମାନ ଭରା ଫୋଟୋଟିକୁ ଛାତି ଉପରେ ଜାକି ନିଏ । ଖୁବ୍ ଉଷୁମ ପାଏ ।

ସହସ୍ର ଟୋପା ଅଶ୍ରୁ ଢ଼ାଳି, ଅଶୋକ ବାବୁଙ୍କ ଫଟୋଟିକୁ ସାମନା ଟେବୁଲ ଉପରେ ରଖିଲା । ଶେଷରେ ହାତଯୋଡ଼ି ଭିକ୍ଷା ମାଗିଲା,—ଏ କଠିନ ସମାସ୍ୟାର ସମାଧାନ ପାଇଁ ବୁଦ୍ଧି ଓ ପ୍ରେରଣା ଦେବାକୁ । ତାପରେ ଗୋଟିକ ପରେ ଗୋଟିଏ ସୂତ୍ର ପରୀକ୍ଷା କରିନେଲା କୋଠରୀର ନିର୍ଜନତା ଭିତରେ ।

ସମସ୍ତ ଗଡ଼ିଯାଏ । ପାଣି ବହିଯାଏ । ତେଣୁ ମନୁଷ୍ୟ ତତ୍‌ପର ହୁଏ ବେଳ ଥାଉଁ ଥାଉଁ ଆଲୁଅ ଭିତରେ ତାର କାମ ଠିକକ ସାରି ଦେବାପାଇଁ । କିନ୍ତୁ ସନ୍ଧ୍ୟା ଘଡ଼ି ଥାଉଁ ଥାଉଁ କାମ ସାରି ଦେବାପାଇ—ଶେଷ ଅଧ୍ୟାୟର ସୂତ୍ର-ପାତ କରିବାପାଇଁ—ଲାଗିପଡ଼ିଲା ।

× × × ×

ଏଣେ ଉପରେ ଦେବକି ବି ବିଶେଷ ଚିନ୍ତିତ ହୋଇ ପଡ଼ିଥାଏ । ଜୀବନର ପ୍ରଥମ ଥର ପାଇଁ ଅପା ବିଷୟ ଭାବୁଛି । ମାମୁଲି କଥା ନୁହେଁ ତ ! ଅପାର ନିଜତ୍ୱ ଓ ସ୍ୱାତନ୍ତ୍ର୍ୟରେ ହସ୍ତକ୍ଷେପ କରିବାର ଚିନ୍ତା । କମ୍ କଥା ନୁହେଁ ! ଯାହାକୁ ମା'ଠାରୁବଳି ଭକ୍ତି କରେ ତାଙ୍କ ପ୍ରେମ ଓ ବିବାହ ବିଷୟ ନେଇ ଚିନ୍ତା !!

ମଝିରେ ମଝିରେ ଦୀର୍ଘ ନିଶ୍ୱାସଟିଏ ମାରି କଡ଼ ଲେଉଟାଏ । ମୋଟେ ନିଦ ଲାଗୁ ନଥାଏ ତାକୁ ।

ବିନ୍ଦୁ ଗୋଟିଏ କଣକୁ ଜାକି ଜୁକା ହୋଇ ଶୋଇ, ସ୍ୱାମୀର କଟୁକ୍ତି ଓ ବିରକ୍ତିରେ ଖୁବ୍ ବ୍ୟଥିତ ହୋଇ ଫୁଲି ଫୁଲି କାନ୍ଦୁଥାଏ ।

ଦୀର୍ଘ ସମୟର ନୀରବତା ଭଙ୍ଗି ଦେବକି ଡ଼ାକିଲା, "ବିନ୍ଦୁ !"

—"ଉଁ...... ।" ନୀରବ କ୍ରନ୍ଦନ ଭିତରେ ଉତ୍ତର ଦେଲା ବିନ୍ଦୁ ।

—"ଶୁଣ ।"

—"ଶୁଣୁଛି ।"

—"ଗୋଟିଏ କାମ କରିପାରିବ ?"

—"କୁହ, ଯଦି ପାରିବି ନିଶ୍ଚୟ କରିବି ?"

—"ଅପା ପାଖରୁ ଅଶୋକ ବାବୁଙ୍କର ଠିକଣାଟା ଆଣି ପାରିବ ?"

—"ନା । ପାରିବିନି ।"

—"ଆଉ କଣଟା କରି ପାରିବ ?" ତାସ୍ଚଲ୍ୟ କରି ପ୍ରଶ୍ନ କଲା ଦେବ ।

—"ବିଦାୟ ଦେଲେ ଚାଲିଯିବି ।"

—"ସେଥି କଣ କରିବ ?"

—"ଯେତେ ଦୂରରେ ଥିଲେ, ଯେଉଁଠି ଥିଲେ ବି ତୁମରି ହୋଇଥିବି— ତୁମକୁ ଭକ୍ତି କରୁଥିବି—ତୁମକୁ ସ୍ୱାମୀଭଳି ପୂଜା କରୁଥିବି ।"

—"ହେଉ ଧନ୍ୟବାଦ ।" ବିଦୁର ବାଲ୍ୟ ଚପଳତାକୁ ଲକ୍ଷ୍ୟ କରି ଦେବ ଏତକ କହିଲା ଏବଂ ପୁଣି ବିପରୀତ ଦିଗକୁ କଡ଼ ଲେଉଟାଇ ଶୋଇବାକୁ ଚେଷ୍ଟା କଲା । ନିଦ ହେଲାନି । ପୁଣି ଭାବିବାରେ ଲାଗିଲା ।

ବିଦୁ ଆଉ ଟିକିଏ ନିକଟକୁ ଆସି କହିଲା, "ହଉ ଶୁଣ । ଅଶୋକ ବାବୁ ନିଶ୍ଚୟ ଜଣେ ଡାକ୍ତର ହୋଇଥିବେ ଏବଂ କଟକ ମେଡ଼ିକାଲରେ ଥିବେ । ତୁମେ ଅନୁସନ୍ଧାନ କର ।"

—"ନାରୀର କଳ୍ପନା ଓ ସନ୍ଦେହକୁ କେନ୍ଦ୍ର କରି ଘୁରିବାର ଦୁଃସାହସିକତା ମୋର ନାହିଁ । ଧନ୍ୟବାଦ" ଏତକ କହି ଦେବ ମୁହଁ ବୁଲାଇନେଲା ।

—"ମୋତେ ବିଶ୍ୱାସ କର ।"

—"ତୁମେ ବିଶ୍ୱାସୀ ହେବା ପୂର୍ବରୁ ପ୍ରମାଣ କର ।"

—"ତେବେ ଶୁଣ । ଚିଠିଟା ପାଇସାରି ଯେଉଁ ବ୍ୟଗ୍ରତା ନେଇ ସେ ବୁଲିଗଲେ ଏବଂ କଟକରେ ଡ଼ାକ୍ତରଙ୍କ ବସା, ମେଡ଼ିକାଲର କେତୋଟା ଓ୍ୱାର୍ଡ, ତାପରେ ଗଳିକନ୍ଦିର କେତୋଟା କୋଠା ଘରେ ଯେପରି ବ୍ୟାକୁଳ ହୋଇ ଭଳି ଖୋଜିଲେ, ମୋର ସନ୍ଦେହ ହୁଏ ସେ ନିଶ୍ଚେ ଜଣେ ଡ଼ାକ୍ତରଙ୍କୁ ହିଁ ଭଲ ପାଆନ୍ତି । ଆଉ ତା ବାହାରେ ମେଡ଼ିକାଲରେ କେଇଟା ଦିନ ରହଣୀ ଭିତରେ ତାଙ୍କର ଏ ପ୍ରକାର ପରିବର୍ତ୍ତନ । ହୁଏତ ତାଙ୍କ ଲଭର୍ କଟକ ମେଡ଼ିକାଲରେ ଡ଼ାକ୍ତର ଅଛନ୍ତି କିବା ଅଥା ମେଡ଼ିକାଲରେ ଥିବା ଭିତରେ ସେ ବଦଳି ହୋଇ ଯାଇଛନ୍ତି ।"

—"ହଉ ରଖ ତୁମରି Advocacy । ଜଣେ ଓସ୍ତାଦ୍ ଚୋରର ଅନ୍ୟ ଚୋରକୁ ଧରିଲା ଭଳି ପ୍ରମାଣ ଦେଇଗଲ ।"

ବିଦୁକୁ ଖୁବ୍ ବାଧିଲା, ଅତି ବିରକ୍ତି ଭିତରେ ବ୍ୟସ୍ତ ହୋଇ କହିଲା, କି ବାଜେ କଥା କହୁଛ ମ । ଜୀବନରେ···ଏତକ ବ···ଶୁଣିବାକୁ ଥିଲା !!" କହି ମୁହଁ ବୁଲାଇ ଖୁବ୍ କାନ୍ଦିଲା, ଖୁବ୍ ଧକେଇଲା । ଦେବ କିନ୍ତୁ ନାରୀର ଲୁହରେ ଅଯଥା ଭୁଲ ସ୍ୱୀକାର ନକରି, ନିଜ ସିଦ୍ଧାନ୍ତ ପଥରେ ଆଗେଇଲା । କେତୋଟି ପ୍ରଖର ନିଶ୍ୱାସ ପରେ ସେ ଶୋଇଗଲା । ବିଦୁ ଶୋଇଗଲା ଅନୁତାପର ଲୁହ ଭିତରେ ବେଳାଏ ସ୍ୱପ୍ନ ନେଇ ।

ପରଦିନ ସକାଳେ······

ସନ୍ତ ପାଣ୍ଠ ଆସୁଥାଏ । ଦିନର କଅଁଳ ପରଶରେ ବିଦୁର ନିଦ ଭାଙ୍ଗି ଗଲା, ବିଗତ ରାତ୍ରୀର ସ୍ୱାମୀଙ୍କ ନିର୍ଦ୍ଦେଶରେ ସେ ବାହାରିଲା ଅପାଙ୍କଠାରୁ ଅଶୋକ ବାବୁଙ୍କର ଠିକଣାଟା ଆଣିବା ପାଇଁ । ଯଦି ସେଠିକ ନ ହୁଏ ତେବେ ଅନ୍ତତଃ ପକ୍ଷେ ଅପାଙ୍କ ସୁଟ୍‌କେସ ଭିତରୁ ସେ ରେଜିଷ୍ଟ୍ରାର୍ଡ ଚିଠିଟା କୌଣସି ମତେ ଆଣିବ । ଏଇ ସିଦ୍ଧାନ୍ତ ନେଇ ବିଛଣାରୁ ଉଠିଲା । ଅଳସ ଆଖିରେ ସଚେତ ଜାଗରଣ ତୋଳି ତଳକୁ ଗଲା ।

କିନ୍ତୁ.........

ଅବାକ ଓ ଆଶ୍ଚର୍ଯ୍ୟ ହୋଇ ଠିଆ ହେଲାସେ । ଅପା ନାହାନ୍ତି । ଖଣ୍ଡିଏ ଚିଠି ଦେବ ପାଖକୁ ଲେଖି ଟେବୁଲ ଉପରେ ଥୋଇ ଦେଇ ଚାଲି ଯାଇଛନ୍ତି । କୋଠରୀଟା ଏକ୍‌ବାର ଶୂନ୍‌ଶାନ ।

ଏକ ନିଶ୍ୱାସରେ ବିଦୁ ଉପରକୁ ଉଠିଗଲା । ଗାଢ଼ ନିଦ୍ରାରୁ ସ୍ୱାମୀଙ୍କୁ ଟାଣି ଆଣି ସବୁକଥା କହିଗଲା ଏବଂ ଚିଠି ଖଣ୍ଡିକ ବଢ଼ାଇ ଦେଲା, ଦେବ ବି ଖୁବ୍ ଆଶ୍ଚର୍ଯ୍ୟ ହୋଇ ପଢ଼ିଲା—

ସ୍ନେହର ଦେବ,

ମୁଁ ଜାଣେ, ଏଇ ଚିଠି ଖଣ୍ଡିକ ପଢ଼ିଲା ବେଳକୁ ତୁ ଧୈର୍ଯ୍ୟଚ୍ୟୁତ ହୋଇ ସାରିଥିବୁ । ତେବେ ଏତିକ ବିଶ୍ୱାସ କର—ମୁଁ ବଞ୍ଚିଛି । ଭବିଷ୍ୟତ ଜୀବନ ପ୍ରତି କାହାର ବିଶ୍ୱାସ ନଥିଲେ ମଧ୍ୟ ମୋର ଦୃଢ଼ ବିଶ୍ୱାସ ଅଛି । ତେଣୁ ବ୍ୟସ୍ତ ହେବୁନି ।

ଅବଶ୍ୟ ଭବିଷ୍ୟତ ଜୀବନର କର୍ମପନ୍ଥା ଏ ଯାଏଁ ଠିକ୍ କରି ପାରିନି । କେବଳ ତୋତେ ସମାଧାନ ବାହାର କରିବାରେ ସାହାଯ୍ୟ କରିବା ପାଇଁ ଶେଷ ନିଷ୍ପତ୍ତିରେ ପହଞ୍ଚିଛି ।

ଓଃ । ଏତେ ପାଠ ପଢ଼ି ଟିକିଏ ବି ତୋର ଅକଲ ନାହିଁ ? ବିବାହିତା ସ୍ତ୍ରୀ କେବେ ଘରୁ ବିଦାୟ ନେଇ ପାରେ ? ବିଦାୟ ନେବ ଅବିବାହିତା ସ୍ତ୍ରୀ ।

ହଉ, ମୋର ଭବିଷ୍ୟତ କର୍ମପନ୍ଥା ଠିକ୍ କରି ଯେଉଁଠି ରହିବି— ତୋତେ ଜଣାଇବି । କିନ୍ତୁ ସେତେବେଳେ ଫେରାଇ ନେବାର ଚେଷ୍ଟା କରି ଆସିବୁନି, ତୋର ଆସିବାଟା ବରଂ ମୋ ପକ୍ଷରେ ଖୁବ୍ ବିରକ୍ତିକର ହେବ । ଟିକିଏ ଶାନ୍ତିରେ କଟୁଛଟା ଦିନ କାଟିବା ପାଇଁ ତୋ ଅପାକୁ ସୁଯୋଗ ଦେବୁ ।

ଶେଷରେ ମୋର ଅନୁରୋଧ, ବିଦୁ ଉପରେ କେବେ ରାଗିବୁନି । ସେ ଯାହା କହୁଛି ସବୁ ଠିକ୍ । ନାରୀର ଆନ୍ତରିକତା ଭିତରେ ଟିକିଏ ବି ମିଥ୍ୟା ନଥାଏ । ତାକୁ ସବୁବେଳେ ପାଖରେ ରଖିଥିବୁ । ତୁ ଯଦି ବିଦେଶ ଯାଉ, ତେବେ ବି ତାକୁ ସାଥୀରେ ନେବୁ । ଆଉ ଠିକ୍ ଯିବା ପୂର୍ବରୁ ଥରେ ମୋ ସହିତ ଦେଖା କରିବୁ, ଏ ମୋର ଶେଷ ଆଦେଶ ।

ଇସ୍ତଫା ପତ୍ରଟି ନିଜେ ଯାଇ ହେଡ୍ ମିଷ୍ଟ୍ରେସ୍‌ଙ୍କୁ ଦେଇ ଦେବୁ । ଆଜି ଶିକ୍ଷକତା କରିବାର ମୋର ଅକ୍ଷମତା ଜଣାଇ ଦେବୁ । ରହିଲି

ଇତି

ତୋର ଅପା

ଚିଠିଟି ପଢ଼ିସାରି 'ଅପା' ବୋଲି ପାଟିକରି ଦେବ କାନ୍ଦିବାକୁ ଲାଗିଲା । ଠିକ୍ ପିଲାଙ୍କ ଭଳି । ଆଉ ବଦ୍ରି ବି ଅସହ୍ୟ ବେଦନାକୁ ସହି ନପାରି ବିଛଣା ଉପରେ ଲୋଟିଗଲା । ଦୁହିଁଙ୍କ ଆଖିରେ ଉଷ୍ଣ ଲୁହର ପ୍ରବାହ ।

କିଛି ସମୟ ଏମିତି ବିତିବା ପରେ, ନିଜ ଶରୀରକୁ ଉଠାଇ ଆଣି ସ୍ୱାମୀ ନିକଟରେ ପହଞ୍ଚିଲା ବଦ୍ରି । ଥର ଥର ଗଳାରେ କହିଲା, "ଚାଲ ଯିବା, ଖୋଜି ଖୋଜି ଯେମିତି ହେଲେ ଅପାଙ୍କୁ ଫେରାଇ ଆଣିବା, ଅପାଙ୍କ ବିନା ମୁଁ ଏ ଘରେ ମୋଟେ ରହି ପାରିବିନି । ଉଠ ।"

ଦେବ କିନ୍ତୁ ନିସ୍ପନ୍ଦ ଓ ନିଶ୍ଚଳ ହୋଇ କାନ୍ଦୁଥାଏ । ବଦ୍ରିର ବ୍ୟାକୁଳ ଅନୁରୋଧ ତାର କୌଣସି ସ୍ନାୟୁକୁ ସ୍ପର୍ଶ କରୁ ନଥାଏ ବି ।

ବାରମ୍ବାର ଅନୁରୋଧ ପରେ ଦେବ ପ୍ରକୃତିସ୍ଥ ହେଲା । କିନ୍ତୁ ସେ ଠିକ୍ ଜାଣେ, ତା ଅପା ନିଷ୍ପତ୍ତିରେ ଖୁବ୍ ଦୃଢ଼ ଓ ଅଟଳ; ଖୋଜିପାରେ କିନ୍ତୁ ନଇଁବନି । ଯିବାଟା ବୃଥା । ତେଣୁ ହତାଶର ନିଶ୍ଚିତତା ନେଇ ବଦ୍ରିକୁ ବୁଝାଇଲା । ବହୁତ ବୁଝାଇଲା । ତଥାପି ବଦ୍ରି ଅବୁଝା, ଖାଲି କହୁଥାଏ, "ଚାଲଯିବା, ତାଙ୍କୁ ପାଇଲେ ମୁଁ ନିଶ୍ଚୟ ଫେରାଇ ଆଣିବି ।"

ଶେଷରେ ଯୁକ୍ତି ଛଳରେ ଦେବ କହିଲା, "ବଦ୍ରି ! ତୁମେ ଶିକ୍ଷିତା । ତାର ସୁବିଧା ବି ଥିଲା । ତୁମେ କଣ ଜାଣନି – ଅପା କପରି ଇସ୍ପାତଠାରୁ ବି ଟାଣ, ଆଉ ଗୋଟିଏ କଥା ବି ଦେଖ--ନଈରେ ବନ୍ୟାର ସୁଅ ଛୁଟିଲେ କେବେଲ କଣ ଅଟକାଇ ହେବ ? ବରଂ କହି କହି କ୍ଳାନ୍ତ ହୋଇ ଶୁଖିଗଲା ପରେହିଁ ସମ୍ଭବ ହୁଏ । ତେଣୁ ଏଇନେ କୌଣସି ଚେଷ୍ଟା କରିବା ବୃଥା; ବରଂ ତାର ଆଦେଶକୁ ସଠିକ ଭାବେ ପାଳିବା ଉଚିତ୍ । ତୁମେ ଅପେକ୍ଷା କର ମୁଁ ଅପାଙ୍କୁ ନିଶ୍ଚୟ ଫେରାଇ ଆଣିବି ।"

ଏମିତି ବୁଝା ସୁଝା ପରେ ବଦ୍ରି ନୀରବ ରହିଲା । ତେବେ ତାର ଅମାନିଆ ମନ ବୁଝୁନି, ବହୁତ ବିନିଯାଏ ସ୍ୱାମୀକୁ ବିବ୍ରତ କରୁଥାଏ ଅପା ପାଖକୁ ଯିବା ପାଇଁ । ଅପାଙ୍କୁ ଫେରାଇ ଆଣିବା ପାଇଁ ।

ସମସ୍ତର ନଈରେ ସ୍ମୃତିର ସୁଅ ଛୁଟେ । ନଈ ଅଟକି ପାରେନା କିମ୍ବା ସ୍ମୃତି ସ୍ଥିର ହୋଇ ରହେନା । ଗୁଡ଼ାଏ ମୋଡ଼ଦେଇ ନଈ ବହି ଚାଲେ । ଦିନ ଆସେ—ହଠାତ୍ ଗୋଟିଏ କ୍ଷିପ୍ରସୁଅ ଗୁଡ଼ାଏ ବୈପ୍ଳବିକ ପରିବର୍ତ୍ତନ କରି ଚାଲିଯାଏ । ଗଭୀର ଗର୍ତ୍ତ ପଠା ହୁଏ ଏବଂ ବିସ୍ତୀର୍ଣ୍ଣ ପଠା ଗର୍ତ୍ତ ହୁଏ । ନଈ ବି ସୁବିଧା ସୁଯୋଗ ଦେଖି ତାର ଗତି ବଦଳାଏ । ଛାଡ଼ିଯାଏ ଶୁଖିଲା ଧାର । ଦିନେ ଯେଉଁ ଧାର ପ୍ରଳୟଙ୍କରୀ ବନ୍ୟାକୁ ଗର୍ଭରେ ଧରି ଉତ୍‌ଫୁଲ୍ଲ ହେଉଥାଏ, ସେଇ ଧାର ପୁଣି ଶୁଷ୍କ ବାଲୁକାସ୍ତୂପକୁ ଗର୍ଭରେ ଧରି ନୀରବ ରହେ ।

କଥାରେ ଅଛି ଗାଁ ଯେମିତି ବଢ଼େ, ନଈ ସେମିତି ମୋଡ଼େ ।

ସନ୍ଧ୍ୟାର ଜୀବନ ବି ସେମିତି ଗୋଟାଏ ମୋଡ଼ଦେଇ ଗତି ବଦଳାଇ ନେଲା । ସେ ଲାଗିପଡ଼ିଲା ନୂତନ ଧାରାର ସୁଅକୁ ପ୍ରତିବନ୍ଧକଶୂନ୍ୟ କରିବାରେ ।

ରାତ୍ରିର ଶେଷ ପ୍ରହରରେ ଘରୁ ଗୋଡ଼ କାଢ଼ି ସନ୍ଧ୍ୟା ସିଧା ଆସିଗଲା ମାଧୁରୀ ପାଖକୁ । ଯେତେବେଳେ ଭବିଷ୍ୟତ କର୍ମପନ୍ଥାକୁ ଠିକ୍ କରିପାରିନି,

ସେତେବେଳେ ବା ସେ ଯିବ କୁଆଡ଼େ ? ତେଣୁ ମାଧୁ୍ରୀ ପାଖରେ କିଛିଟା ଦିନ କାଟିବା ପାଇଁ ଚାଲିଆସିଲା କଟକ । ମାଧୁ୍ରୀର ରୁମ୍‌ରେ ରହିଲା ।

ନର୍ସ ହଷ୍ଟେଲ୍ । ତଳ ଉପର ହୋଇ ଅନେକ ରୁମ୍ । ମାଧୁ୍ରୀ ଥାଏ ଦ୍ୱିତୀୟ ମହଲାର ଗୋଟିଏ ରୁମ୍‌ରେ । ସେ ବି ବିରହିଣୀ । ତାର ଚିର ଆରାଧ୍ୟ ଦେବତାଙ୍କ ଅନ୍ତର୍ଦ୍ଧାନ ଏବଂ ପ୍ରଶାନ୍ତ ବାବୁଙ୍କ ବିଦେଶଗମନ ପରେ ସେ ଖୁବ୍ ଏକୁଟିଆ ଅନୁଭବ କରୁଥାଏ । ତା'ର ଯେପରି କେହି ନାହିଁ । ସବୁ ଥାଇ କିଛି ନାହିଁ । ସମୟେ ସମୟେ ପ୍ରଶାନ୍ତ ବାବୁଙ୍କ ଅଭିମାନଭରା ମୁହଁ ତାର ଆଖି ଆଗରେ ଠିଆ ହେଲେ, ମାଧୁ୍ରୀ ନରମି ଯାଏ, ଦବି ଯାଏ । ଆଖି ଛଳଛଳ କରି ଦି' ଟୋପା ଲୁହ ବି ଗଡ଼ାଇ ଦିଏ ।

ଚିରବିରହିଣୀ ସନ୍ଧ୍ୟା, ମାଧୁ୍ରୀକୁ ବହୁତ ବୁଝାଏ । ଖୁବ୍ ଯୁକ୍ତିକରେ — ପ୍ରଶାନ୍ତ ବାବୁ ବିଦେଶରୁ ଫେରିବା ପରେ ତାଙ୍କୁ ବିବାହ କରିବା ପାଇଁ । ସମୟେ ସମୟେ ମାଧୁ୍ରୀକୁ ସାନ୍ତ୍ୱନା ଦିଏ । ନିଜେ ଖୁବ୍ ଦରଦୀ କି ନା, ତେଣୁ ମାଧୁ୍ରୀର ଦୁଃଖକୁ ସଠିକ୍ ବୁଝିପାରେ । କାର୍ଯ୍ୟତଃ ଯାହା ସମ୍ଭବ ସେପରି ଉପଦେଶ ଦିଏ ।

ଦୁଇ ବିରହିଣୀଙ୍କ ସମୟ ଏପରି ନିବିଡ଼ ବନ୍ଧୁତ୍ୱପୂର୍ଣ୍ଣ ବାୟୁମଣ୍ଡଳ ଭିତରେ କଟେ । ସନ୍ଧ୍ୟା ସବୁବେଳେ ଚେଷ୍ଟା କରେ ମାଧୁ୍ରୀଠାରୁ ତାର ସମସ୍ତ ଆତ୍ମକାହାଣୀ ଶୁଣିଯିବ--ଯେପରି କି ମାଧୁ୍ରୀ ଟିକିଏ ଆଶ୍ୱସ୍ତି ଅନୁଭବ କରିବ । ମଣିଷ ନିଜର ଦୁଃଖ ଥୋଡ଼ାଏ ଗପି ଗଲେ ଯେ ଉଶ୍ୱାସ ଅନୁଭବ କରେ, ଏଇଟା ଖୁବ୍ ବିଶ୍ୱାସ କରେ ସନ୍ଧ୍ୟା ।

ତେବେ ମାଧୁ୍ରୀଠାରୁ ତାର ଭଲ ପାଇବାର ଇତିହାସ ଶୁଣିବା ଛଡ଼ା ନିଜର କିଛିଟା ହେଲେ କାହାଣୀ ତାକୁ ଶୁଣାଏନା । ମାଧୁ୍ରୀଠାରୁ ସମୟେ ସମୟେ ପ୍ରଶ୍ନ ଆସିଲେ ବି ସେ ବାଆଁରେଇ ଦିଏ । କୁହେ, ଜୀବନରେ କାହାକୁ ଭଲ ପାଇନି । ମାଧୁ୍ରୀ ବି ସନ୍ଧ୍ୟାର ଗମ୍ଭୀରତା ଓ ନାରୀ ହୃଦୟର ଭଦ୍ରତାକୁ ଖାତିର କରି ବିଶ୍ୱାସ କରେ । ମାଧୁ୍ରୀ ଆଖିରେ ସନ୍ଧ୍ୟା ଖୁବ୍ ଭାଗ୍ୟବତୀ···ଯୁଗଜନ୍ମା । ଜୀବନରେ କାହାକୁ ଭଲ ପାଇନାହାନ୍ତି । ଭଲ

ପାଇବାର ଉତ୍ସବରେ ମୁହୂର୍ତ୍ତେ ବି ସିଧି ନାହାନ୍ତି । ମାସୀ ନିକଟରେ ସନ୍ଧ୍ୟା ଖୁବ୍ ଆଦର୍ଶମୟୀ ।

ସନ୍ଧ୍ୟା କିନ୍ତୁ ବେଳକୁବେଳ ବେଶି ଚିନ୍ତିତା ହୋଇପଡ଼େ । ଆଉ ବି ଲୋକଲୋଚନ ଅଗୋଚରରେ ରହି ଭାବିବା ଏବଂ ନିଜ ଦୁର୍ବଳତାରେ ନିଜେ ସଢ଼ିବା ତା ପକ୍ଷରେ ଅସମ୍ଭବ ହୋଇପଡ଼େ । ମାସୀ ଘରୁ ଉଉଟିଲୁରି ଗୁଲିଗଲା ପରେ କୋଠରୀର ନିର୍ଜନତାକୁ ସନ୍ଧ୍ୟା ବେଶ୍ ଉପଭୋଗ କରେ । ଖୁବ୍ ଭାବେ । କାନ୍ଦେ ବି ।

ତାର ଏକମାତ୍ର ଚିନ୍ତା, ଠିକ୍‌ଏ ଶାନ୍ତିରେ ରହି ନିଜ କଳ୍ପନାର ଭବିଷ୍ୟତକୁ ରୂପ ଦେବା । ତେବେ ବସନ୍ତ ତ ଘଡ଼ାଘଡ଼ି ଆସେନା; ଆସେ, ବହୁତ ଖରା, ବହୁତ ବର୍ଷା ଓ ବହୁତ ଶୀତର ସ୍ପର୍ଶ ପାଇଲେ ।

ଚିର ଦୁଃଖମୟ ଜୀବନକୁ ସୁରୁଖୁରୁରେ କଟାଇବା ପାଇଁ ହେଲେ ମଣିଷକୁ କର୍ମତତ୍ପର ହେବା ନିତାନ୍ତ ଆବଶ୍ୟକ । ନିର୍ଜନତା ଅର୍ଥାତ୍ ମାନସିକ ଓ ଶାରୀରିକ ନିର୍ଜନତାକୁ ଯେତେଦୂର ପାରିବ ଏଡ଼ାଇବା ଦରକାର । କଥାରେ ଅଛି, କର୍ମଶୂନ୍ୟ ଜୀବନ କ୍ଷଣସ୍ଥାୟୀ । ତେଣୁ ସନ୍ଧ୍ୟା ବାଛିନେଲା ଆଧ୍ୟାତ୍ମିକତାର ଆଶ୍ରୟ ।

ଅନେକ ଦିନ ଓ ଅନେକ ରାତି ଏକୁଟିଆ ଭାବି ଭାବି ଆବିଷ୍କାର କଲା, ଅନିଶ୍ଚିତ ଭବିଷ୍ୟତକୁ ନିଶ୍ଚିତ କରିବାକୁ ହେଲେ ଆଧ୍ୟାତ୍ମିକତା ହିଁ ଉପଯୁକ୍ତ ମାଧ୍ୟମ । ତେଣୁ ସେ ଶ୍ରୀ ଅରବିନ୍ଦଙ୍କର ଦର୍ଶନ ଓ ଡ଼ିଭାଇନ୍ ମଦର ପ୍ରତି ଆକୃଷ୍ଟ ହୋଇପଡ଼ିଲା । ଶେଷରେ ଠିକ୍ କଲା ପଣ୍ଡିଚେରୀ ଯିବ ମାଙ୍କର ଆଶୀର୍ବାଦ ଭିକ୍ଷା ପାଇଁ । ସେଠୁ ଫେରିଲେ ଆରମ୍ଭ ହେବ ତାର ଭବିଷ୍ୟତ କର୍ମ ପାଇଁ ଅଭିଯାନ ।

ଅଗଷ୍ଟ ପନ୍ଦର । ଶ୍ରୀ ଅରବିନ୍ଦଙ୍କ ଜନ୍ମଦିବସ । ସେଇଦିନ ଶ୍ରୀ ମାଙ୍କର ଦର୍ଶନ ମିଳେ । ନିଜକୁ ପ୍ରସ୍ତୁତ କଲା ଯିବାପାଇଁ । ମାସୀଙ୍କୁ ବି ଜଣାଇଲା ।

ପଣ୍ଡିଚେରୀ ଉଦ୍ଦେଶ୍ୟରେ ବାହାରିବା ପୂର୍ବରାତ୍ର ।

ମାୟାର ସେ ଦିନ ଅଫ୍ ଡ୍ୟୁଟି । ରୁମ୍‌ର ଅନ୍ୟ ଦିଦିମାନେ ଡ୍ୟୁଟିରେ ଯାଇଥାଆନ୍ତି । ରୁମ୍ ଭିତରେ କେବଳ ସନ୍ଧ୍ୟା ଓ ମାୟା । ଦିହିଙ୍କ ହୃଦୟ ଭିତରେ ବିଚ୍ଛେଦର କରୁଣ ମୂର୍ଚ୍ଛନା ସନ୍ତରଣ କରୁଥାଏ । ଦିହେଁ ନୀରବ ହୋଇ ସାମନାସାମନି ଚୌକିରେ ବସିଥାଆନ୍ତି ।

କୋହ ସମ୍ଭରଣ କରି ନପାରି ମାୟା ଭାଙ୍ଗିପଡ଼ିଲା । ଅଶ୍ରୁ ଜର୍ଜରିତ ଆଖିରେ ପ୍ରଶ୍ନ କଲା, "ଅପା··· ଚାଲିଯିବ !"

"ହଁ···ମାୟା । କିଛିଦିନ ପାଇଁ ପଣ୍ଡିଚେରୀ ଆଶ୍ରମରେ କଟାଇ ପୁଣି ଫେରିଆସିବି । ଶ୍ରୀ ମାଙ୍କର ଆଶୀର୍ବାଦ ମୋ ପକ୍ଷେ ଖୁବ୍ ଜରୁରୀ ହୋଇ ପଡ଼ିଛି ।"

"ଅପା·· ମୁଁ ସାଥିରେ ଗଲେ କଣ ବା ଅସୁବିଧା ହେବ ଯେ ତୁମେ ମନା କରୁଛ ।"

"ମୁଁ ମନା କରୁନି ମାୟା । ତୁମର ସ୍ୱାତନ୍ତ୍ର୍ୟ ଉପରେ କାହାର ଅଧିକାର ନାହିଁ । ମୁଁ କହିବାରେ ଏତିକି ଯେ ଏଣିକି ତୁମେ ପ୍ରତିଟି ନିଷ୍ପତ୍ତି ପାଇଁ ପ୍ରଶାନ୍ତ ବାବୁଙ୍କ ଅନୁମତି ନେବା ଉଚିତ୍ । ଯେତେହେଲେ ସେ ତୁମର ଭାବୀ ସ୍ୱାମୀ ।"

ମାୟା ହଠାତ୍ କିଛି କହିପାରିଲାନି । ମଥା ନୁଆଁଇ ଭାବିଚାଲି କେତେ କଣ ।

ପୁଣି ସନ୍ଧ୍ୟା କହି ଚାଲିଲା, "ମାୟା ! ତୁମେ ଏଣିକି ଆଉ ଅଝଟ ହୁଅନି । ଯେତେବେଳେ ଭାଇଙ୍କର ବିୟୋଗରେ ସେ ଏତେ ବ୍ୟଥିତ ହୋଇ ସୁଦ୍ଧା ତୁମଠୁ ପ୍ରେରଣା ପାଇ ବିଦେଶ ଯାଇଛନ୍ତି ପଢ଼ିବା ପାଇଁ, ତୁମେ ତାଙ୍କୁ ଆଘାତ ଦେବା କିମ୍ବା ତାଙ୍କର ଅଗାଧ ପ୍ରେମର ଶିଖାଟିକୁ ଲିଭାଇ ଦେବା ଉଚିତ ହେବନି । ବରଂ ଚେଷ୍ଟାକର ତାଙ୍କ ସହ ମିଶି ତୁମେ ବି ତୁମର

ଶିଖାଟିକୁ ଜାଳିବା ପାଇଁ । ଦେଖିବ, ଦୁଇଟି ଆନ୍ତରିକ ପ୍ରେମର ଶିଖାରେ ଜୀବନ କୋଠରୀଟି କି ଆଲୋକିତ ହୋଇ ଉଠିବ ! କଣ କହୁଛ ମାୟା ? ମୋ ଅନୁରୋଧ ରଖିବନି ? ତମ ପାଇଁ ପ୍ରଶାନ୍ତ ବାବୁଙ୍କୁ ମୁଁ ଯେତେବେଳେ ପ୍ରତିଶ୍ରୁତି ଦେଇ ସାରିଛି, ମୋ କଥା କଣ ରହିବନି ?"

ମାୟା ଟିକିଏ ନରମି ଯାଇ କହିଲା, "ଅପା·· ମୁଁ ତ କେବେ ତୁମକୁ ମନା କରିନି ।"

"ମନା କରିନା ସତ । ହେଲେ, ହଁ ବୋଲି ତ କହୁନା । ନୀରବ ରହିବା ମାନେ କଣ ହୋଇପାରେ ? 50% Yes and 50% No । ତେଣୁ କେତୋଟି ମାସ ପାଇଁ ମୋର ଅନୁପସ୍ଥିତି ଭିତରେ ତୁମେ ଯଦି "ନାହିଁ" ଆଡ଼େ ବେଶି ଟିକିଏ ଢଳି ଯାଅ··· "

"ନା···ଅପା । ତା ହେବନି । ପ୍ରତିଶ୍ରୁତି ଦେଉଛି । ସତ କହିବାକୁ ଗଲେ ମୁଁ ଶତକଡ଼ା ପଚାଶ ଭିତରେ ହିଁ ରହିଛି । ଆଉ ରହିଥିବି ବି । ଏବେ ଶୀଘ୍ର କେଉଁ ଦିଗକୁ ଶତକଡ଼ା ଭାଗ ବଢ଼ାଇବା ପ୍ରଶ୍ନ ଉଠୁନି ।"

"ସତ କହୁଛ ତ ?"

"ହଁ···ତୁମ ଦାଦା ଛୁଇଁ ପ୍ରତିଶ୍ରୁତି ଦେଉଛି ।"

ଶେଷ ପଦକ ଶୁଣି ସୁଧା ଆଶ୍ଚର୍ଯ୍ୟଚକିତ ନିଶ୍ଚୁପ ହୋଇ ଯାଇଲା । ଭ୍ରୂ କୁଞ୍ଚିତ କରି ସ୍ମିତ ଅଧରକୁ ସଙ୍କୁଚିତ ଆଖିରେ ସେ ଚାହିଁ ରହିଲା ।

କଥାରେ ଅଛି, 'Time and tide waits for none' । ସମୟ ଓ ଜୁଆର କାହାକୁ ଅପେକ୍ଷା କରେନା । ତେଣୁ ସମୟ ଗଡ଼ି ଚାଲିଥାଏ । ଦିନେ ସେମିତି ନୀରବ । ଅଜ୍ଞାତରେ ଦୁଇଜଣଙ୍କ ଆଖିରେ ଯଥେଷ୍ଟ ଲୁହ ।

ମାୟା ମୁଣ୍ଡପୋତି କେତେ କଣ ଭାବୁଥାଏ । ଅବଶ୍ୟ ସୁଧା ଠଉରେଇ ନେଇଥାଏ ତାର ଭାବନାଗୁଡ଼ିକୁ । କିନ୍ତୁ ତା'ର ମନରେ ବି ଏତେ ସ୍ମୃତି ଓ ଭାବନା ଘୂରୁଥାଏ ଯେ ମାୟାକୁ ଉତ୍ୟକ୍ତ କରିବା ସାହସ ତାର ନଥାଏ ।

କେତେ ସମୟ ପରେ ସମସ୍ତ ସନ୍ଦେହର ପ୍ରଶ୍ନଗୁଡ଼ିକୁ ସଜାଡ଼ି ସନ୍ଧ୍ୟା ପ୍ରଶ୍ନ କଲା ।

"ଆଚ୍ଛା ମାମୁଁ ! ଆଜି ଯାଏଁ ଯେଉଁ ସବୁ ପ୍ରଶ୍ନ ତୁମକୁ ପଚାରି ପାରି ନଥିଲି, ଏଇ ଶେଷ ମୁହୂର୍ତ୍ତରେ ପଚାରିବା ପାଇଁ ଅନୁମତି ଦେବ ?"

"ତୁମର କୌଣସି ପ୍ରଶ୍ନକୁ ତ ମୁଁ କେବେ ନିରୁତ୍ତର କରିନି । ତେଣୁ ଏଇନେ ଅନୁମତିର ଆବଶ୍ୟକତା ଉଠୁଛି କାହିଁକି ? ଯାହା କହୁଛ ପଚାରି ପାରି···।"

"ତୁମେ ତ ଏତେ ଭଲ ପାଇଥିଲ ତୁମ ଭାଇଙ୍କୁ । ବାହା ହୋଇ ପାରିଲନି କାହିଁକି ?" ମାମୁଁ ଟିକିଏ ଥକି ଯାଇ ଉତ୍ତର ଦେଲା, "ମୁଁ ଭଲ ପାଇବା ପାଇଁ ଅନୁମତି ପାଇଲାବେଳେ ସେଇ କଣ୍ଡିସନ ଥିଲା, ଯୌନ-ପିପାସା କିମ୍ବା ବିବାହ କରିବା ଆକାଂକ୍ଷା ତାଙ୍କଠାରେ ନରଖିବା ପାଇଁ ।"

"କାହିଁକି ? ସେତେବେଳେ କଣ ସେ ବିବାହିତ ଥିଲେ ?"

"ନା···ଅବିବାହିତ ଥିଲେ । କିନ୍ତୁ ମୋ ଭଲ ପାଇବା ଓ ତାଙ୍କ ଭଲ ପାଇବା ଭିତରେ ବିରାଟ ତଫାତ୍ ଥିଲା ।"

"ସେ କଣ ତୁମକୁ ଭଉଣୀ ଭଳି ଭଲ ପାଇଥିଲେ ?" ସନ୍ଧ୍ୟା ପ୍ରଶ୍ନ କଲା ।

"ତା ବି କୁହାଯାଇ ପାରେନା । ସେ କି ଭଳି ଭଲ ପାଇଥିଲେ, ଆଜି ବି ମୁଁ ଠିକ୍ କରିପାରିନି । ତେବେ ତାଙ୍କ ଭଲ ପାଇବା ଭିତରେ ମୋ ଯୌବନ ପ୍ରତି ସମ୍ମାନ ନଥିଲା, କିମ୍ବା ଭଉଣୀ ଭଳି ଭଲ ପାଇ ନାରୀ ଓ ପୁରୁଷ ଭିତରେ ପାର୍ଥକ୍ୟ ଚର୍ଚ୍ଚା କରିବାର ସଙ୍କୋଚ ନଥିଲା । ଦିହେଁ ଅବାଧ ମିଳାମିଶା କରୁଥିଲୁ । ଆମ ଘରୁ ବି କୌଣସି ପ୍ରତିବନ୍ଧକ ଆସୁ ନଥିଲା । ଯେହେତୁ ମୋ ବାପା, ମା ଆମ ବିବାହଟାକୁ ସ୍ୱତଃସିଦ୍ଧ ବୋଲି ଧରି ନେଇଥିଲେ ।"

ସନ୍ଧ୍ୟା ଆଶ୍ଚର୍ଯ୍ୟ ହୋଇ ପୁଣି ପ୍ରଶ୍ନ କଲା, "କି ବଚିତ୍ର ତାଙ୍କର ଜୀବନ ମ ! ତୁମ ଭଳି ଗୋଟିଏ ସୁନ୍ଦରୀ ଓ ସୁଗଠିତା ଯୁବତୀ ସହିତ ଅବାଧ ମିଳାମିଶା କରିବାର ସୁଯୋଗ ପାଇ ଏବଂ ତୁମଠାରୁ ଏତେଟା ଆନ୍ତରିକ ପ୍ରେମ ପାଇ ବି ନିଜକୁ ଦୂରେଇ ରଖିପାରିଲେ ସେ ?"

"ହଁ···ଅପା । ତାଙ୍କର ସେଇ ବୈଶିଷ୍ଟ୍ୟକୁ ମୁଁ ଏତେ ଭଲ ପାଇଥିଲି ଯେ ତାଙ୍କର ନିଦର୍ଶନରେ ମୁଁ ଆଜି ଯାଏଁ ବଞ୍ଚି ରହିଛି । ଖାଲି ସେତିକି ନୁହଁ, ସେ ଯେତେବେଳେ ସଫା ସଫା କହିଲେ, "କେବଳ ତୁମ ଭଳି ପାଇବା ପ୍ରତି ମୋର ଲୋଭ ଆସେ । ସେତିକି ଛଡ଼ା ମୋ ଅନ୍ତର ଭିତରେ କିଛି ନାହିଁ । ତେଣୁ ତୁମେ ମୋତେ ଭଲ ନପାଇ ଦୂରେଇ ଯିବା ଉଚିତ୍ ।" ସେତେବେଳେ ତାଙ୍କୁ ନିବିଡ଼ ଭାବେ ଭିଡ଼ି ଧରି ତାଙ୍କର ଆଖିରୁ ତାଙ୍କ ପ୍ରିୟା ପ୍ରତି ନିଗିଡ଼ି ପଡ଼ୁଥିବା ଲୁହକୁ ପୋଛି ନେଇଥିଲି । ତାଙ୍କର ଆଖିରେ ଲୁହ ଦେଖିଲେ ମୁଁ ଖୁବ୍ ତରଳି ଯାଏ । ହଜିପଡ଼େ ବି ।···ତାଙ୍କଠାରୁ ଟିକିଏ ଦୂରେଇ ଗଲେ ମୋ ଆଖିରୁ ଅଜସ୍ର ଲୁହ ବହେ । ମନ ଓ ହୃଦୟ ତାଙ୍କୁ ଖୋଜି ଖୋଜେ ।" ଏତିକି କହି ମାୟା କାନ୍ଦି ପକାଇଲା । ଆଉ ସନ୍ଧ୍ୟା ବି ।

ଲୁହପୋଛି ଥରି ଥରି ଗଳାରେ ପୁଣି ମାୟା କହି ଚାଲିଲା,"ବହୁଦିନ— ରାତି ତାଙ୍କ ସହ ନିରୋଳାରେ କାଟିଛି । ହେଲେ ସେ କେବଳ ତାଙ୍କର ଦୁଃଖର କାହାଣୀ ଗପନ୍ତି । ମୁଁ ଶୁଣେ । ତାଙ୍କର ଲୁହକୁ ପଣତକାନିରେ ପୋଛି ନିଏ । ସେ ଆଉ କିଛି ଚାହାଁନ୍ତି ନାହାନ୍ତି କିବା ସ୍ୱତଃପ୍ରବୃତ୍ତ ହୋଇ ଦେଲେ ମଧ୍ୟ ଗ୍ରହଣ କରି ନାହାନ୍ତି ।"

"ତଥାପି ତୁମେ ତାଙ୍କୁ ଭଲ ପାଇଥିଲ ?" ସହାନୁଭୂତିଭରା କଣ୍ଠରେ ପ୍ରଶ୍ନ କଲା ସନ୍ଧ୍ୟା ।

କଣ୍ଠରେ ଟିକିଏ ଦରଦ ଭରି ମାୟା କହି ଚାଲିଲା, "ଖାଲି ଭଲ ପାଇଥିଲି ତା ନୁହେଁ, ଜୀବନ ଓ ଯୌବନକୁ ଏମିତି ଜାଳିପୋଡ଼ି ଦେବା ପାଇଁ ହସି ହସି ଆବାହନ କରିଥିଲି । ଯେତେବେଳେ ସେ ଚାକିରୀ ଛାଡ଼ି ଚାଲିଗଲେ, ମୁଁ ଖୁବ୍ ବ୍ୟାକୁଳ ହୋଇ ପଚାରିଥିଲି—ତୁମେ ମୋତେ ଛାଡ଼ି···ଚାଲି ଯାଉଚ । ତୁମ ଦୁଃଖର ଇତିହାସ ଶୁଣିବା ପାଇଁ ଓ ତୁମ

ଆଖିର ଲୁହ ପୋଛିବା ପାଇଁ ମୋତେ ଆଉ କଣ ସୁଯୋଗ ଦେବନି ? ସେ କିନ୍ତୁ ସ୍ମିତ ହସି କହିଥିଲେ, "ମୋର ବି ବାକିତକ ଜୀବନ ସେଇ ବ୍ୟାକୁଳତା ନେଇ ବଞ୍ଚି ରହିବ। ମୋ ଭବିଷ୍ୟତ ଯେତେବେଳେ ଅନିର୍ଦ୍ଦିଷ୍ଟ, ମୁଁ କିପରି ପ୍ରତିଶ୍ରୁତି ଦେଇପାରିବି ? ତେବେ ଏତିକି କହି ରଖୁଛି ତୁମର ଆନ୍ତରିକ ଭଲ ପାଇବାଟାକୁ ମୁଁ ଖୁବ୍ ଭଲପାଏ। ପସନ୍ଦ କରେ ବି।" ଏତିକି କହି ସେ ଛଳ ଛଳ ଆଖିରେ ବିଦାୟ ନେଇଥିଲେ।

ସନ୍ଧ୍ୟା ପୁଣି ପ୍ରଶ୍ନ କଲା, "ତୁମେ କଣ ଚିହ୍ନିପୂର୍ବାର ପାଇଁ କେବେ ବିବାହ ପ୍ରସ୍ତାବ ଦେଇନ।"

"ଦେଇଛି। ନିରୋଳାରେ ଯେତେବେଳେ ରାତି ରାତି ତାଙ୍କ ପାଖରେ ବସିଛି, ବାରବାର ପ୍ରସ୍ତାବ ନଦେଇ କଣ ରହିଥାଆନ୍ତି। ହେଲେ ସେ ବଡ଼ ଅଦ୍ଭୁତ ଯୁକ୍ତି ବାଢ଼ନ୍ତି। କୁହନ୍ତି, "ତୁମେ ଯଦି ମୋତେ ଭଲ ପାଇ ନଥାନ୍ତ ତେବେ ନିଶ୍ଚୟ ବିବାହ କରିଥାନ୍ତି। ଲଭ୍ ମ୍ୟାରେଜ ପ୍ରତି ମୋର ଆଉ ବିଶ୍ୱାସ ନାହିଁ। ଯେହେତୁ ସ୍ୱତଃ ସୃଷ୍ଟି ହୋଇଥିବା ଗୁପ୍ତପ୍ରେମ ବିବାହପରେ ଆ ନହେଲେ ତିକ୍ତ ହୁଏ ଏବଂ ଉପଯୁକ୍ତ ସମୟ ଓ ସୁଯୋଗରେ ଯୋଡ଼ା ହୋଇଥିବା ଦାମ୍ପତ୍ୟ ଜୀବନର ପ୍ରେମ, ସେଇ ବିବାହପରେଆ ଭିତରେ ହିଁ ମଧୁରରୁ ମଧୁରତର ହୁଏ। ତେଣୁ ଗୁପ୍ତପ୍ରେମ ଓ ବିବାହ ଦୁଇଟା ସମାନ୍ତରାଳ।" ତା ବାହାରେ ସେ ଖୁବ୍ ଜୋର ଦେଇ କୁହନ୍ତି, "ଯେଉଁମାନେ ପ୍ରେମ ବିବାହ କରିଛନ୍ତି ସେମାନେ ବାହାରେ ନହେଲେ ବି ଭିତରେ କାନ୍ଦନ୍ତି।"

ମାଧୁରୀ ପୁଣି କହି ଚାଲିଲା, "ତାଙ୍କର ଏ ଯୁକ୍ତିରେ ମୁଁ ନୀରବ ରହେ। ତେଣୁ ମୁଁ ଏତେ ଭଲ ପାଇଥିଲି ଯେ ବିବାହଟା ପାଇଁ ଭଲ ପାଇବାକୁ ହାରେଇ ଦେବା ସମ୍ଭବ ହେଲନି। ବରଂ, ତାଙ୍କର ନିଷ୍ଠୁର ପ୍ରିୟାର ଅହଙ୍କାରେ ଘନେଇ ଆସିଥିବା ଦୁଃଖକୁ ତାଙ୍କ ଜୀବନରୁ ଦୂରେଇବାକୁ ସବୁବେଳେ ଚେଷ୍ଟା କରେ।"

"ପାରିଲ ?" ସନ୍ଧ୍ୟା ଜାଣିବାକୁ ଚାହିଁଲା।

"ନା । ବୃଥା ହେଲା ମୋର ଚେଷ୍ଟା । ତାଙ୍କର ଦର୍ଶନ ଭିତରେ ମୁଁ ମୋଟେ ପଶି ପାରିଲିନି । ସବୁବେଳେ ହାରି ମାନିଲି ତାଙ୍କ ଯୁକ୍ତି ନିକଟରେ ।"

"ତେବେ ମେଟ୍ରିକ ପରେ ନର୍ସିଂ ପଢ଼ିବାକୁ ଆସିଲ କାହିଁକି ?"

"ତାଙ୍କର ନିର୍ଦ୍ଦେଶରେ । ବିଦାୟ ପୂର୍ବରୁ ଆଉ ଦିନେ ପଚାରିଥିଲି, 'ତୁମକୁ ମୁଁ ଏତେ ଭଲପାଏ ଯେ ଆଉ କାହାକୁ ଭଲ ପାଇବା ଏ ଜୀବନରେ ମୋଟେ ସମ୍ଭାବନା ନାହିଁ । ତେବେ ଅନ୍ତତଃ ଦରକାରବେଳେ ଯେପରି ତୁମର ସେବା କରିପାରିବି, ସେଇତକ ସୁଯୋଗ କଣ ଦେବନି ?' କିଛି ସମୟ ଗମ୍ଭୀର ରହି ଲୁହ ପୋଛି ସେ କହିଥିଲେ, "ତୁମର ଏ ସମସ୍ତ ସମସ୍ୟାର ସମାଧାନ ହୋଇପାରିବ ଯଦି ତୁମେ ଏମିତି ରହି ମୋ ଭୁଗଣ ଶରୀରଟିକୁ ଅପେକ୍ଷା କରିଥିବ ମେଡ଼ିକାଲ୍‌ରେ ।" ଆଉ ସେଇ ନିର୍ଦ୍ଦେଶ ମାନି ମୁଁ ଏକମାତ୍ର ସେବିକା ଜୀବନକୁ ଆବାହନ କଲି ।"

"ଆଚ୍ଛା ସେ ତାଙ୍କ ପ୍ରିୟାର କିଛିଟା ପରିଚୟ ଦେଇ ନାହାନ୍ତି ?·· ଅନ୍ତତଃ ନାଁ ଟା···?"

"ନା···। ବହୁତ ଚେଷ୍ଟା କରି ହାରିଛି । ଖାଲି ମୁଁ ନୁହଁ । ତାଙ୍କ ସ୍ତ୍ରୀ ବି । ବର୍ଷ ବର୍ଷ ବିତିଗଲା । ତାଙ୍କ ଆଖିରୁ ଅନବରତ ଲୁହ କେବଳ ବହୁଥାଏ । ତାଙ୍କ ପ୍ରିୟାର ପରିଚୟ କେବଳ ସେତିକି । ଏମିତିକି ସେ ଚାଲିଗଲା ପରେ ବି ପରିଚୟ ମିଳୁନି । ମୋର ଭାରି ଇଚ୍ଛା ହୁଏ, ତାଙ୍କର ପ୍ରିୟାକୁ ଥରେ ଦେଖନ୍ତି । କିନ୍ତୁ ପାରିଲିନି । ସେ ଦିନ ସେଇଥିପାଇଁ ତୁମର ସାହାଯ୍ୟ ନେଇଥିଲି ।"

"ମୁଁ କଣ ପାରିବି ବୋଲି ଭାବୁଛ ? ମୋଟେ ସମ୍ଭବ ନୁହଁ । ତେବେ ତୁମକୁ ମୁଁ ଏତେ ଭଲପାଏ ଯେ କେବଳ ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ ତୁମ ଅନୁରୋଧ ରକ୍ଷାକରି ସେଇ ଭାର ନେଇଛି । ଯଦି କେବେ ପାଏ, ତେବେ ଯେଉଁଠି ଥିଲେ ବି ତୁମକୁ ଖବର ଦେବି । ଆଚ୍ଛା ମାୟା, ପ୍ରଶାନ୍ତ ବାବୁ ତାଙ୍କର ଧରମ ଭାଇ ବୋଲି ସେତେବେଳେ କଣ ଜାଣି ନଥିଲ ?"

"ନା···। ମୋର ମେଟ୍ରିକ ବର୍ଷ ବାପାଙ୍କର ବ୍ରହ୍ମପୁର ବଦଳି ହୋଇଗଲା। ସେଇଠି ଭାଇଙ୍କ ସହ ମୋର ପ୍ରଥମ ଦେଖା । ଭାଇ ଶିକ୍ଷକ ଥାଆନ୍ତି। ତାଙ୍କ ପଡ଼ୋଶୀ ହୋଇ ଆମେ ରହୁଥାଉ। ବୋଧହୁଏ ପ୍ରଶାନ୍ତବାବୁ ସେତେବେଳକୁ କଟକରେ ପଢ଼ୁଥିଲେ । କେବଳ ଭାଇଙ୍କଠୁ ଶୁଣିଥିଲି ତାଙ୍କର ଜଣେ ସାନ ଭାଇ ଅଛନ୍ତି। ସେତକ ଛଡ଼ା ଅଧିକ କିଛି ଜାଣି ନଥିଲି । କିନ୍ତୁ ବହୁତ ବର୍ଷ ପରେ ଏଇ ମେଡ଼ିକାଲ୍‌ରେ ପ୍ରଶାନ୍ତବାବୁଙ୍କ ସହ ଦେଖାହେଲା। ସେ ଏତେ ଭଲ ପାଇଲେ ଯେ ମୁଁ ଦୂରେଇ ଯାଇ ପାରିଲିନି। ମନା କରିବା ସାହସ ମୋର ହେଲାନି । ପରେ ଯେତେବେଳେ ପରିଚୟ ଜାଣିଲି, ତାଙ୍କୁ କିଛି ନକହି ମୁଁ ଦୂରେଇ ଯିବାକୁ ଚେଷ୍ଟା କଲି। ବିବାହ ପାଇଁ ମନା କଲି।"

"ମୋତେ ଆଗରୁ ତ ଏ ବିଷୟରେ କିଛି କହିଲନି" ସନ୍ଧ୍ୟା ପ୍ରଶ୍ନ କଲା।

"ଭାବିଥିଲି ମୋ ଗୁପ୍ତପ୍ରେମ ଗୁପ୍ତରେ ମରିଯାଉ।"

"ମୁଁ କିନ୍ତୁ ଡାଏରୀଟି ପଢ଼ିଲା ପରେ ଜାଣି ପାରିଥିଲି, ପ୍ରଶାନ୍ତବାବୁଙ୍କୁ ତୁମେ କାହିଁକି ମନା କର ବାହା ହେବା ପାଇଁ। ଆଉ ବି ଡାଏରୀରୁ ସ୍ପଷ୍ଟ ବୁଝିପାରିଥିଲି ତୁମ ଭାଇ ତାଙ୍କର ପ୍ରିୟାକୁ ଇତିହାସ ଢେଇଁ ଭଲ ପାଇଥିଲେ। ତୁମେ କେବଳ ତାଙ୍କର ଦୟାର ପାତ୍ରୀ।"

ମାୟା ନୀରବ ରହିଲା। ସନ୍ଧ୍ୟା ବି ନୀରବ। ମାୟା ନୀରବତା ଭିତରେ ଚୌକିରୁ ଉଠି ବିଛଣା ଧରିଲା। ଶୋଇ ଗଲା ବି। କିନ୍ତୁ, ପର ଦୁଃଖରେ ଦୁଃଖିନୀ ସନ୍ଧ୍ୟା ଶୋଇ ପାରିଲାନି। ରାତି ସାରା ଭାବୁଥାଏ, କିଏ ମହତ୍—କିଏ ନ୍ୟୂନ; କିଏ ଠିକ୍—କିଏ ଭୁଲ୍। ଏମିତି ବହୁତ କିଛି। ତା ପରଦିନ ସକାଳୁ ମାୟାଠାରୁ ବିଦାୟ ନେଇ ସନ୍ଧ୍ୟା ଟ୍ରେନ୍ ଧରିଲା ପଶ୍ଚିମବଙ୍ଗ ଅଭିମୁଖେ।

ଅନ୍ତରିକ ସଙ୍ଗିନୀ ବିଚ୍ଛେଦରେ ମାୟା ଦୁଃଖୀତା ହୋଇ ରହିଲା ଆଖିରେ ବେଳାଏ ଲୁହ ନେଇ।

ଏଣେ ଅପାଠାରୁ କୌଣସି ଚିଠି ନପାଇ ଦେବ ଓ ବନ୍ଦୁ ବହୁତ ବ୍ୟସ୍ତ । ବନ୍ଦୁ ଯେତେ ଅନୁରୋଧ କଲେ ବି, ଅପାକୁ ଖୋଜିବା ପାଇଁ ଦେବ ଚେଷ୍ଟା କରେନା—ଯେହେତୁ ଶେଷ ଚିଠିରେ ସନ୍ଧ୍ୟା ସ୍ପଷ୍ଟ ନିର୍ଦ୍ଦେଶ ଦେଇଥିଲା ସନ୍ଧାନ ନ ନେବା ପାଇଁ । ତେବେ ମନେ ମନେ ଖୁବ୍ ବ୍ୟସ୍ତ ହେଉଥାଏ । କେମିତି ଏକଲା ଅନୁଭବ କରୁଥାଏ । ବାପା, ମାଙ୍କର ବିୟୋଗ ପରେ ଅପା ହିଁ ଥିଲା ତାର ସବୁ କିଛି ।

ବନ୍ଦୁ ବି ଅନୁତାପର ଲୁହରେ ଅନବରତ ସିଝୁଥାଏ ।

କମ୍ପାନୀ ତରଫରୁ ଆମେରିକା ଯିବାପାଇଁ ପାସ୍‌ପୋର୍ଟ ଆସିଲା । ଦିନ ନିକଟତର ହେଲା ବି । ତଥାପି ଅପାଠାରୁ କୌଣସି ଚିଠି ଆସିଲାନି । ଦେବ ଠିକ କଲା ଯିବନି । ଅପାକୁ ନ ଦେଖିଲା ଯାଏ ମୋଟେ ସେ ଯିବନି । ବନ୍ଦୁର ବି ସେଇ ମତ ।

ଦିନେ……

ଦେବ ଓ ବନ୍ଦୁ ବହୁତ ବେଳଯାଏ ଭାବି ଭାବି ବିଦେଶ ଯିବାର ସୁଯୋଗ ହରାଇ ଦେବାକୁ ଠିକ୍ କରିଥାଆନ୍ତି । ଦେବ ବି କମ୍ପାନୀକୁ ନିଜର ଅନିଚ୍ଛା ଜଣାଇ ଚିଠି ଲେଖି ଧରିଥାଏ । ଏତିକିବେଳେ ସନ୍ଧ୍ୟାଠାରୁ ଚିଠି ପହଞ୍ଚିଲା ସୁଦୂର ପଣ୍ଡିଚେରୀରୁ ।

ଆନନ୍ଦରେ ଦିହେଁ ପୁଲକିତ ହୋଇଉଠିଲେ । ସଙ୍ଗେ ସଙ୍ଗେ ବାହାରିଲେ ଅପା ପାଖକୁ । ଅପା ପାଖରେ ପହଞ୍ଚିବା ପୂର୍ବରୁ ବାଟ ସାରା ଦିହେଁ ଯଥେଷ୍ଟ ରିହାର୍ସଲ୍ କରିଥାଆନ୍ତି, କଣ କହିବେ—କିପରି ଅପାକୁ ଫେରାଇ ଆଣିବେ ।

ଦୀର୍ଘ ଦିନର ଟ୍ରେନ ଯାତ୍ରା ପରେ ଦିହେଁ ପଣ୍ଡିଚେରୀର ପୂତ ପବିତ୍ର ମାଟିକୁ ସ୍ପର୍ଶ କଲେ । ତା ପରେ ବିରାଟ ଯୋଜନାଭିତ୍ତି ଆଧ୍ୟାତ୍ମିକ ଆଶ୍ରମ ଭିତରେ ପ୍ରବେଶ କଲେ ସନ୍ଧ୍ୟାର ଅନ୍ୱେଷଣରେ ।

ଅରବିନ୍ଦଙ୍କର ସୁଚିନ୍ତିତ ଆଶ୍ରମ କେବଳ ଆଶ୍ରମ ନୁହେଁ; ଅନନ୍ତ ନାକ୍ଷତ୍ରିକ ଜଗତ ଭିତରେ ପୃଥିବୀ ଯେପରି ଗୋଟିଏ ଗ୍ରହ, ସେମିତି ପୃଥିବୀ ଭିତରେ ବି ସେଇ ଆଶ୍ରମଟି ଗୋଟିଏ ସ୍ୱତନ୍ତ୍ର ଭୂଖଣ୍ଡ । ବୈଜ୍ଞାନିକ ଜଗତର ଆବିଷ୍କୃତ ଶାଣିତ ଅସ୍ତ୍ର ଓ ବିସ୍ଫୋରଣ ମାଧ୍ୟମରେ ମଣିଷକୁ ସେଠି ଆୟତ୍ତ କରାଯାଏନା, କିମ୍ବା ଏକଛତ୍ରବାଦରେ ବ୍ୟକ୍ତିବିଶେଷର ନିର୍ଦ୍ଦେଶ ଭଳି ଅଥବା ଗଣତନ୍ତ୍ରବାଦର ବିଧାନସଭାର ନିୟମାବଳୀ ଓ ଆଇନ ଭଳି କୌଣସି ଶାସନ ସେଠି ନାହିଁ । ଭାରତୀୟ ପିଙ୍ଗଲ କୋଡ୍‌ର କୌଣସି ଆଇନ ସେଠାରେ ମୋଟେ ଆବଶ୍ୟକ ହୁଏନା । କ୍ଷମତାର ଲୋଭ ମଣିଷକୁ ସେଠାରେ ରାକ୍ଷସ କରେନା । ବୈଜ୍ଞାନିକଙ୍କ ବ୍ୟବସାୟିକ ଆବିଷ୍କୃତ ଔଷଧର ପ୍ରତିକ୍ରିୟାରେ ଉଦ୍‌ଭବ ହୁଏନା ନୂତନ ରୋଗ । ସ୍ୱାର୍ଥାନ୍ଧ ବ୍ୟକ୍ତିବିଶେଷ କିମ୍ବା ରାଜନୈତିକ ଦଳଦ୍ୱାରା ଦାବୀ ହାସଲ ମାଧ୍ୟମରେ ସଙ୍ଗଠିତ କରାଯାଏନା ଧର୍ମଘଟ । ସେଠି ରାଗ, ହିଂସା, କପଟ, ସ୍ୱାର୍ଥ, କାମ ଓ ଚୌର୍ଯ୍ୟାଦି କୁତ୍ସିତ ମନୋବୃତ୍ତିକୁ ଆନ୍ଦୋଳିତ କଲଭଳି ପ୍ରକୃତି 'ସୃଷ୍ଟି' କରେନା ବାୟୁମଣ୍ଡଳ । ଯେଉଁମାନେ ଦାର୍ଶନିକମାନଙ୍କୁ କୁହନ୍ତି ପାଗଳ, ସେମାନେ ଦେଖିଯିବା ଉଚିତ୍ ସେଠିକା ଦର୍ଶନ ଓ ମାତୃବାକ୍ୟର ସାଫଲ୍ୟ । ଯେଉଁମାନେ ସମାଜବାଦକୁ ଘୃଣା କରନ୍ତି ଏବଂ ଯେଉଁ ଶାସକମାନେ ବିଶୃଙ୍ଖଳ ସମାଜକୁ ଶୃଙ୍ଖଳିତ କରିବା ପାଇଁ ବିଭିନ୍ନ ଆଇନ୍, ତୀକ୍ଷ୍ଣ ଅସ୍ତ୍ର ଓ ବଳପ୍ରୟୋଗର ଆଶ୍ରୟ ନିଅନ୍ତି, ସେମାନଙ୍କ ପ୍ରତି ବି ସେଇ ଆଶ୍ରମର ଆଧ୍ୟାତ୍ମିକ ଦର୍ଶନ ଦିଏ ଆହ୍ୱାନ । ସେଠି ଗଣତନ୍ତ୍ରର ସାମ୍ବିଧାନିକ କ୍ଷମତାର ଲଢ଼େଇ ଚାଲେନି କିମ୍ବା କୌଣସି ଛପା ନିୟମାବଳୀ ଓ ଆଇନ୍ ବିରୁଦ୍ଧରେ ବିଚାରାଳୟର ଆଶ୍ରୟ ନିଆ ଯାଏନି; କ୍ଷମତାର ଅପବ୍ୟବହାର ନାହିଁ କିମ୍ବା ଶାସକଙ୍କ ଶୋଷକ ମୀତି ସୃଷ୍ଟି କରେନି ଦୁର୍ନୀତି ।

ମଣିଷ ସେଠି ସୁଖୀ । ପରିଶ୍ରମର ମୂଲ୍ୟ ଓ ମନୁଷ୍ୟତାର ବିଶେଷତ୍ୱ ମଣିଷ ଠିକ୍ ବୁଝେ । ପ୍ରତ୍ୟେକେ ନିଜେ ନିଜର ଶାସକ ଓ ଅନ୍ୟଦ୍ୱାରା ଶାସିତ—ନିଜେ ନିଜକୁ ସାହାଯ୍ୟ କରନ୍ତି ଏବଂ ଅନ୍ୟର ସହଯୋଗ କାମନା କରନ୍ତି । ଆଉ ଯଦି ନିଜଠାରେ କୌଣସି ତ୍ରୁଟି, ଦୋଷ ବା ନିଜର ଅକ୍ଷମତା ଦେଖନ୍ତି, ତେବେ ଆପେ ଆପେ ଓହରି ଯାଆନ୍ତି । ବିତାଡ଼ନ ଦରକାର ପଡ଼େନା । ତେଣୁ ସଦାସର୍ବଦା ସେଠି ସମାଜଟା ଶୃଙ୍ଖଳ ।

ଜୀବନର କ୍ଷୁଦ୍ରତା ମଣିଷ ସେଠି ଆବିଷ୍କାର କରି ଦୂରେଇ ଦିଏ ନିଜ ରକ୍ତମାଂସର ସ୍ୱାର୍ଥକୁ । ମଣିଷ ଜାତି ଓ ନାନା ଜୀବଭିଗ ସୃଷ୍ଟି ପ୍ରତି ସେଇ ଆଶ୍ରମର ଆଧ୍ୟାତ୍ମିକ ଦର୍ଶନର ଦାନ ଅତୁଳନୀୟ । ପ୍ରାଚୀନ ଆଧ୍ୟାତ୍ମିକବାଦର ଉତ୍କୃଷ୍ଟତା ଆଧୁନିକ ଦୁନିଆ ଯେ ଦିନେ ନା ଦିନେ ଉପଲବ୍ଧି କରିବ, ଏଥିରେ ସନ୍ଦେହ ନାହିଁ ।

ସେଇଠି ଆଶ୍ରୟ ନେଇଥାଏ ସନ୍ଧ୍ୟା ।

ଦେବ ଓ ବିଦୁ ସନ୍ଧ୍ୟାକୁ ଦେଖିବା ମାତ୍ରେ ଖୁବ୍ ଭାଙ୍ଗିପଡ଼ିଲେ । ପ୍ରଥମେ ପ୍ରଥମେ ଚିହ୍ନି ହେଲେନି । କିନ୍ତୁ ଅପୂର୍ବ ଓ ଅନନ୍ୟ ସୁନ୍ଦରୀ ସନ୍ଧ୍ୟା କେତେ ବିକୃତ ହେଲେ ବି ତାର ଆତ୍ମୀୟ ସ୍ୱଜନଙ୍କ ପକ୍ଷେ ଚିହ୍ନିବା କଷ୍ଟକର ନୁହଁ ।

ବିଦୁ ଚିତ୍କାର କରି ଉଠିଲା, "ଅପା ! ଏ କଣ କଲୁ ଅପା !!"

ଦେବ, କୋଠରୀ ସାମନାର ବାରଣ୍ଡାରେ ଠିଆ ହୋଇ ବିସ୍ଫାରିତ ନେତ୍ରରେ ନୂତନ ବସ୍ତୁଟିକୁ ପ୍ରତିରୋଧ କରୁଥାଏ । ଆନନ୍ଦର ଶୀତଳ ଲୁହ ହଠାତ୍ ଗରମ ହୋଇ ପ୍ରକାଶ କରୁଥାଏ ଅନ୍ତରର ବେଦନା । ଅପାକୁ ଆଖିପୂରି ଦେଖି ଶାନ୍ତି ପାଇବା ପାଇଁ ଖୁବ୍ ବ୍ୟଗ୍ରତା ନେଇ ଆସିଥିଲା । କିନ୍ତୁ ଦେଖିବା ମାତ୍ରେ ଆଉ ଚାହିଁ ପାରିଲାନି । ମଥା ତଳକୁ ନଇଁଗଲା ।

ତାର ଅପା ଆଉ ସେଇ ଅପା ହୋଇ ନାହିଁ । ଖୁବ୍ ବିକୃତ ଦିଶୁଛି । ମୁଣ୍ଡରେ କେଶ ନାହିଁ । ହାତରେ ସୁନେଲି କାଚ ନାହିଁ । ଦେହରେ ଦାମିକା ଶାଢ଼ୀ, ସାୟା ଓ ବ୍ଲାଉଜର ଗ୍ଲାମର ବି ନାହିଁ । ଶରୀରଟା ଯେପରି ନିସ୍ତେଜ । ଦେହରେ କେବଳ ଖଣ୍ଡିଏ ସାଧା ଧଳା ଧୋତି ଓ ଧଳା ବ୍ଲାଉଜ୍ ।

ବେକରେ ତୁଳସୀ ମାଳ । ଦେଖିଲେ ଯେପରି ଜଣା ପଡ଼ୁଥାଏ ଗୋଟିଏ ବିଧବା, ବୟସ୍କା-ବୃଦ୍ଧା ଆଧ୍ୟାତ୍ମିକତା ଭିତରେ ବୁଡ଼ି ରହିଛି ।

ଦେବଙ୍କୁ ପ୍ରକୃତିସ୍ଥ ହେବାପାଇଁ ବହୁତ ସମୟ ଲାଗିଲା ।

କିନ୍ତୁ ସନ୍ଧ୍ୟା ବହୁତ ବେଳୁ ତାର ଲୁହ ପୋଛି ଦେଇଥାଏ । ଏଇ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ସେ ବହୁତ ଆଗରୁ ପ୍ରସ୍ତୁତ କରିଥିଲା ନିଜକୁ । ତେଣୁ ଧୈର୍ଯ୍ୟ ଓ ସାହସ ନେଇ ସେମାନଙ୍କୁ ବୁଝାଇଲା ।

ସମୟର ସୁଅ ଯିବା ଚିର, କିନ୍ତୁ ଲୁହର ତ ନୁହ । ତେଣୁ ଲୁହ ଅଟକି ଗଲା । ନୂତନ ଅନୁଭୂତି ହେଲା ପୁରାତନ । ସାନ୍ତ୍ୱନାର ସେବାରେ ଦେବଙ୍କ ଦୁଃଖ ଟିକିଏ ଉପଶମ କରିପାରିଲା ସନ୍ଧ୍ୟା ।

ତିନିହେଁ ବସି ବହୁତ କିଛି ଗପିଲେ । ନିଜ ନିଜର ଭଲ-ମନ୍ଦ, ସୁଖ-ଦୁଃଖ ସବୁ କିଛି ।

ଦେବ ବିଦେଶ ଯିବା ଶୁଣି ସନ୍ଧ୍ୟା ଖୁବ୍ ଖୁସି ହେଲା । କିନ୍ତୁ ତାର ଏକା ଜିଦ୍, ବିନ୍ଦୁ ବି ସାଥିରେ ଯିବ । ବିନ୍ଦୁ ମଧ୍ୟ ଓଲଟା ଜିଦ୍ କଲା ସନ୍ଧ୍ୟା ଫେରିଯିବ ।

ଅନେକ ଯୁକ୍ତି-ତର୍କ, ମାନ-ଅଭିମାନ ପରେ ସମସ୍ତଙ୍କ ଜିଦ୍ ରହିଲା । ନିଷ୍ପତ୍ତି ହେଲା, ବିନ୍ଦୁ ଦେବ ସାଥିରେ ଆମେରିକା ଯିବ ଓ ସନ୍ଧ୍ୟା ବି ଆଶ୍ରମ ଛାଡ଼ି ଫେରିଆସିବ । କିନ୍ତୁ ସନ୍ଧ୍ୟା ସିଧା ସିଧା କହିଲା, ସେ ଫେରିଯିବ ସତ, ହେଲେ ଦେବର କୋଠାକୁ ଫେରିଯିବନି । ଯିବ ତାର ଜନ୍ମମାଟିକୁ । ଯେଉଁ ଘରେ ତାର ଜନ୍ମ—ଯେଉଁଠିକା ପାଣି ପବନରେ ତାର ରକ୍ତମାଂସ ଗଠିତ — ସେଇଠିକି ଯିବ ।

ବିନ୍ଦୁ ଅବଶ୍ୟ ଏ ନିଷ୍ପତ୍ତିରେ ସନ୍ତୁଷ୍ଟ ହୋଇ ପାରିଲାନି । ତେବେ····· ସ୍ୱାମୀଙ୍କର ଇଙ୍ଗିତରେ ତୁନି ରହିଲା ।

ବିନ୍ଦୁ ଆମେରିକା ଯିବ, ଏଇଥିରେ ଦେବ ଟିକିଏ ଚିନ୍ତିତ ହୋଇ ପଡ଼ିଲା । କିନ୍ତୁ ସ୍ତ୍ରୀର କଣ ? ଅପାର ନିର୍ଦ୍ଦେଶକୁ ଅବମାନନା କରିବା ପ୍ରଶ୍ନ

ଉଠ୍‌ନା। ତେଣୁ ବନ୍ଦୁ ପାଇଁ ପାସ୍‌ପୋର୍ଟ ଯୋଗାଡ଼ କରିବା ଉଦ୍ଦେଶ୍ୟରେ ଶୀଘ୍ର ଫେରିଯିବାକୁ ଠିକ୍ କଲା । ସନ୍ଧ୍ୟା ବି ଗଭୀର ହେଲା ।

ତା ପରଦିନ···ରାତି —

ଦେବ ବାହାରକୁ ବୁଲି ଯାଇଥାଏ । କୋଠରୀରେ ସନ୍ଧ୍ୟା ଓ ବନ୍ଦୁ ଏକା ବସିଥାଆନ୍ତି । କେତେ କଣ ଏଣୁତେଣୁ କଥାବାର୍ତ୍ତା ଭିତରେ ବନ୍ଦୁ ଲକ୍ଷ୍ୟକରି ଯାଉଥାଏ କୋଠରୀଟିକୁ । ସନ୍ଧ୍ୟାର ଖଟ ସାମନାରେ ବଡ଼ଟ ସେଲଫ୍‌ଟି ବହିରେ ଭରି ରହିଥାଏ । କାନ୍ଥରେ ଝୁଲୁଥାଏ ଅନେକ ମହାତ୍ମାଙ୍କ ଆଲେକଚିତ୍ର । ତଳେ ଗ୍ଲେଟ ଟେବୁଲ ଉପରେ ଅଶୋକବାବୁଙ୍କ ଫଟୋଟି ଅଭିମାନ ଭରି ଚାହିଁଥାଏ ।

ବନ୍ଦୁ ଖୁବ୍ ନିରୀକ୍ଷଣ କରି ଚାହିଁଲା । ଶେଷରେ ଅଶୋକବାବୁଙ୍କ ଫଟୋଟି ଉଠାଇ ଆଣି ଖୁବ୍ ଚିନ୍ତିତ ହେଇ ପ୍ରଶ୍ନ କଲା, "ଅପା ! ଯଦି ତୁମକୁ କିଛି ପ୍ରଶ୍ନ ପଚାରି ମୁଁ ଭୁଲ୍ କରି ବସେ, ତୁମେ କଣ କ୍ଷମା ଦେବନି ?"

"ତୋର ସବୁ କିଛି ପଚାରିବା ଓ ବୁଝିବା ଅଧିକାର ରହିଛି ବନ୍ଦୁ, ଯାହା କିଛି ପଚାରିବାରୁ । ତେବେ, ଅନ୍ତତଃ ତୁ ଧରିଥିବା ଫଟୋଟିର ପରିଚୟ ଛଡ଼ା ଅନ୍ୟ ଯାହା କିଛି···।"

"କିନ୍ତୁ ଅପା, ମୁଁ ସେଇଆ ହିଁ ପଚାରିବାକୁ ଚାହୁଁଥିଲି ।"

"ତେବେ ଏତିକି କହିପାରେ, ସେ ଗୋଟାଏ ଆଲୋକ । ଅନ୍ଧାର ଭିତରେ ଅନ୍ଧାର ହେଇ ଗତି କରେ ଓ ଦର୍ପଣରେ ବାଜି ପ୍ରତିଫଳନ ସୃଷ୍ଟି କରେ । ବିଚ୍ଛୁରିତ ହୁଏ । ବାହାରର ଆଲୁଅ ଭିତରେ ଅନ୍ଧାର ହେଇ ରହେ । ବର୍ଣ୍ଣିର ଅନ୍ଧାର ଭିତରେ ପ୍ରତିଫଳନ ମାଧ୍ୟମରେ ଖୁବ୍ ଦୀପ୍ତିମାନ୍

ଆଲୋକ ହିଏ । ବାଣ୍ ଏତିକି । ଆଉ ଅଧିକା ଜାଣିବା ଚେଷ୍ଟା କରନା ବନ୍ଧୁ ।"

"ମୁଁ ଅଧିକା ଗୁହେଁନା ଅପା । ତେବେ···।"

"କଣ ?"

"ଯାହାର ନିର୍ଜୀବ ଛବି ଏତେ ଆଲୁଅ ହିଏ, ତାର ସଜୀବ ଶରୀର କେତେ କଣ ଆଲୁଅ ନଦେବ ! ତେଣୁ ତୁମେ ଯଦି···।"

"କହିବୁ, ବିବାହ କରିଥିଲେ କେତେ ସୁଖଶାନ୍ତି ପାଇ ନଥାନ୍ତି !! ଏଇଆ ନା ?"

"ହଁ ।"

ଅତି ଧୀରସ୍ଥିର ଭାବେ ସନ୍ଧ୍ୟା ଆରମ୍ଭ କଲା, "ଶୁଣ୍ । ସୂର୍ଯ୍ୟଙ୍କର ଆଲୁଅ କେତେ ଉଜ୍ଜ୍ୱଳ ! ତା'ଠାରୁ ବଳି ଆଉ ଆଲୁଅ ଅଛି ? କିନ୍ତୁ ଏ ଧରା ଯଦି ସୂର୍ଯ୍ୟସହ କେବେ ମିଶିଯାଏ, ତେବେ ଜଳପୋଡ଼ି କି ଛାରଖାର ନହୋଇ ଯିବ ! ଏମିତିକି, ପୃଥିବୀଟା ଯଦି ସୂର୍ଯ୍ୟର ଆଉ ଟିକିଏ ନିକଟତର ହୋଇଥାଆନ୍ତା, ତେବେ ଏ ମନୁଷ୍ୟ ଓ ଜୀବଜଗତର ସତ୍ତା ବି ନଥାନ୍ତା । ଏ ଧରା ସୂର୍ଯ୍ୟଠାରୁ ଏତେ ଦୂରରେ ଥିବାରୁ ହିଁ ଆଲୋକର ସ୍ୱଚ୍ଛତା, ଅନ୍ଧାରର ଶୂନ୍ୟତା ନେଇ ଏତେ ବଡ଼ ସୁନ୍ଦର ପ୍ରକୃତି ସଜାଇ ପାରିଛି । ଏଥିରୁ କିଛିଟା ବ୍ୟତିକ୍ରମ ହେଲେ ଏ ସୃଷ୍ଟିରେ ଘୋର ବିଶୃଙ୍ଖଳା ଦେଖାଯିବ । ଆଉ ଅଧିକ କଣ ବୁଝାଇବି । ଶୁକ୍ରଗ୍ରହ ନିକଟତର ବୋଲି ସେଠାରେ ପ୍ରାଣୀର ସନ୍ଧାନ ଆଜଯାଏଁ ମିଳିନି । ବରଂ ପୃଥିବୀଠାରୁ ଆହୁରି ଦୂରରେ ଥିବା ମଙ୍ଗଳ ଗ୍ରହରେ ପ୍ରାଣୀର ସନ୍ଧାନ ମିଳିପାରେ ବୋଲି ବିଜ୍ଞାନ ଆଶାବାଦୀ ।"

ବନ୍ଧୁ କିନ୍ତୁ ବହୁତ ଆଗରୁ ଏ ଯୁକ୍ତିକୁ ଖଣ୍ଡନ କରିବା ପାଇଁ ତର୍କ ସଜାଡ଼ି ବସିଥିଲା । ସନ୍ଧ୍ୟା ତୁନି ହେବା ମାତ୍ରେ ଝାମ୍ପ ଦେଇ କହିଲା, "ତଥାପି ତ ଅପା, ଏ ପୃଥିବୀ ଗୁହୁଁଛି ତାର ବୃତ୍ତାପୃ ଗତି ମାଧ୍ୟମରେ ନିଜର ଅୟନ ଚଳନଠାରୁ ଉପରକୁ ଉଠି ସୂର୍ଯ୍ୟର ନିକଟତର ହେବାକୁ ।

କିଏ କହିପାରିବ ପୃଥିବୀର ଏଇ ଭୂଖଣ୍ଡ ଗତି ନଥିଲେ ମଣିଷ ଦିନକୁ ଦିନ ଏତେଟା ଉନ୍ନତତର ହୁଅନ୍ତା ? ପୃଥିବୀ ନିଜ ଅପୂନଚଳନରେ ସ୍ଥିର ଥିଲେ ମଣିଷ ବି ହୁଏତ ଆଦିମ ମାନବର ମୂର୍ଖତା ଓ ଅଶ୍ଳୀଳତା ନେଇ ରହିଥାଆନ୍ତା । ବିଜ୍ଞାନର ଉତ୍ପତ୍ତି କିବା ବିକାଶ ଘଟି ନଥାନ୍ତା ।"

କିଛିକ୍ଷଣ ନୀରବ ରହି ପୁଣି କହି ଗ୍ଲଲେ, "ତୁମେ ହୁଏତ କହିଥାର ଅପା, 'ପରିଣାମରେ···ସୂର୍ଯ୍ୟର ନିକଟତର ହୋଇ ପୃଥିବୀଟା ନୋଭ୍ରିକୁ ସୁପର୍‌ନୋଭା ହୋଇ ଜଳପୋଡ଼ି ଗୁରଖାର ହୋଇଯିବ ଏବଂ ସମସ୍ତ ଆକର୍ଷଣରୁ ବଞ୍ଚିତ ହୋଇ ଖସିଯିବ ଶୂନ୍ୟର ଶୂନ୍ୟ ଭିତରକୁ ।' ହେଲେ ଅପା, ସେଥିରେ ହିଁ ତାର ଶାନ୍ତି । ଜନ୍ମର ମୃତ୍ୟୁ ଓ ସୃଷ୍ଟିର ପ୍ରଳୟ ଅନିବାର୍ଯ୍ୟ ।"

ଏତିକି କହି ବିଦୁ ବହୁତ ବେଳଯାଏ ତୁନି ରହିଲା । ସନ୍ଧ୍ୟା ବି ନୀରବ ।

ନୀରବତା ଭିତରେ ସନ୍ଧ୍ୟା ବହୁତ କିଛି ଭାବି ଯାଉଥାଏ । ବ୍ୟାପକ ଦର୍ଶନ ଭିତରେ ଏତେ ପରିପୂରକ ଓ ଅନୁପୂରକ ଯୁକ୍ତି ରହିଛି ଯେ କେଉଁଟା ଠିକ୍ କେମିତି ବା ଜାଣିହେବ ? ବିଭିନ୍ନ ମତର ତଫାତ୍ ଭିତରେ ହିଁ ଦର୍ଶନଶାସ୍ତ୍ରର ଉତ୍ପତ୍ତି ।

ହିଟ୍‌ଲର -ଯୁଦ୍ଧକୁ ସ୍ୱୀକାର କରି ଦେଶ ପରେ ଦେଶ ଜୟ କଲେ ତ, ଗାନ୍ଧି– ଅହିଂସାକୁ କେନ୍ଦ୍ର କରି ଦେଶର ସ୍ୱାଧୀନତା ହାସଲ କଲେ । —କମ୍ୟୁନିଜମ୍‌ର ଏକଛତ୍ରବାଦ ତଳେ ବିଜ୍ଞାନର ଉନ୍ନତି ଘଟେ ତ, ଗଣତନ୍ତ୍ରର ଔପନିବେଶବାଦ ତଳେ ବି ବିଜ୍ଞାନର ବିକାଶ ସମ୍ଭବ ହୁଏ ।

ସମସାମୟିକ ପୁଞ୍ଜିବାଦ ତଳେ ଦେଶର ସମୃଦ୍ଧି ଘଟେ ତ ଗଣତନ୍ତ୍ରର ସାମ୍ୟବାଦ ଓ ସମାଜବାଦ ତଳେ ବି ଦେଶ ସମୃଦ୍ଧିଶାଳୀ ହୁଏ । କେଉଁ ବୈଜ୍ଞାନିକ ପରମାଣୁ ଶକ୍ତିର ଶାନ୍ତି ବିନିଯୋଗରେ ମଣିଷକୁ ସୁସ୍ଥ ଓ ଅମର କରିବାର ଚେଷ୍ଟା କରି ବସବାସ ପାଇଁ ଅନ୍ୟାନ୍ୟ ଗ୍ରହ ଖୋଜି ବୁଲେ ତ, କେଉଁ ବୈଜ୍ଞାନିକ ଭୟାବହ ପରମାଣୁ ଓ ଉଦ୍‌ଜାନ ବୋମାର ବିସ୍ଫୋରଣ

ମାଧ୍ୟମରେ ଦେଶ ଓ ପ୍ରାଣୀଜଗତକୁ ସୁରକ୍ଷାର କରି, ସଙ୍କୁଚିତ ଲୋକ ସଂଖ୍ୟାକୁ ପୃଥିବୀପୃଷ୍ଠରେ ରଖିବାକୁ ଚାହେଁ ।

କେଉଁ ଦେଶର ଜନତା ଅସ୍ତ୍ରଶସ୍ତ୍ର ପରିତ୍ୟାଗ କରି ଦେଶ ଦେଶ ଭିତରେ ପଞ୍ଚଶୀଳ ନୀତି ଭିତ୍ତିରେ ଶାନ୍ତି ଓ ମୈତ୍ରୀ ସ୍ଥାପନ କରି ବଞ୍ଚିବାକୁ ଚାହେଁ ତ, କେଉଁ ଦେଶର ଜନତା ଅସ୍ତ୍ରଶସ୍ତ୍ରକୁ ଶାଣ ଦେଇ ତୀକ୍ଷ୍ଣରୁ ତୀକ୍ଷ୍ଣତର କରି ଅନ୍ୟ ଦେଶକୁ ନିଜ ଅକ୍ତିଆର ଭିତରେ ରଖି ବଞ୍ଚି ରହିବାକୁ ଚାହେଁ ।

କେଉଁ ଇଞ୍ଜିନିୟର ନଈନାଳକୁ ବନ୍ଧ ବାନ୍ଧି ସଂକୁଚିତ ଧାରା ମାଧ୍ୟମରେ ସମୁଦ୍ରଗର୍ଭରେ ଛାଡ଼ି, ଦେଶକୁ ବନ୍ୟା ଦାଉରୁ ରକ୍ଷାକରେ ତ, କେଉଁ ଇଞ୍ଜିନିୟର ନଈନାଳକୁ ବନ୍ଧବାଡ଼ ଶୂନ୍ୟ କରି, ପ୍ରସାରିତ ଧାରା ମାଧ୍ୟମରେ ସୁଅର କ୍ଷିପ୍ରତାକୁ ନଷ୍ଟକରି, ବନ୍ୟା ଦାଉକୁ କମାଇବା ସଙ୍ଗେ ସଙ୍ଗେ ପଟୁମାଟି ଦ୍ୱାରା ଜମିକୁ ଉର୍ବର କରିବାର ଉପଦେଶ ଦିଏ ।

ତେଣୁ ଦର୍ଶନର ସଠିକତା କେବଳ ଅନୁଭୂତିରୁ ହିଁ ମଣିଷ ପାଏ ।

ଏମିତି ଭାବ ଭାବି ସଂଧ୍ୟା ଦୀର୍ଘ ନିଶ୍ୱାସଟିଏ ମାରି ନିଜକୁ ପ୍ରକୃତିସ୍ଥ କଲା । ବିଦୁ ବି କାଳେ ଅପାକୁ ଆଘାତ ଲାଗିଥିବ ଭାବି କଥାର ସୁଅ ବଦଳାଇ କହିଲା, "ଅପା ରାଗିଲ ? ମୋତେ କଣ କ୍ଷମା ଦେବନି ? ମୋ କଥା ରଖି ଆମ ସାଥିରେ ବସାକୁ ଚାଲ । ସେଠି ରହିବ ।"

"ନା···· ବିଦୁ । ସେଇଠିକି ଫେରିବାର ପ୍ରଶ୍ନ ଆଉ ଉଠି ନପାରେ ।"

"ତେବେ ତୁମେ ଆଉ କଣ କରିବ ଅପା ? ଘରକରି ତ ଛାଡ଼ିଲ; ନିଜ ରୂପକୁ ତ ବିକୃତ କରି ସାରିଲଣି ? ଶେଷରେ ଆମ ସମସ୍ତଙ୍କୁ ଛାଡ଼ି ତୁମେ ଆଉ କେଉଁଆଡ଼େ ଯିବ ?"

ସଂଧ୍ୟା ଗମ୍ଭୀର ହୋଇ ଅରବିନ୍ଦଙ୍କର "Divine Mother" ବହି ଖେଳାଉ ଖେଳାଉ କହିଲା, "ତୋର ପ୍ରଶ୍ନର ଉତ୍ତର ବହୁ ଆଗରୁ ମୁଁ ଦେଇ

ସାରନ୍ତୁ ବନ୍ଦୁ । ପୃଥିବୀ ଯେପରି ସୂର୍ଯ୍ୟଙ୍କର ଅନ୍ୱେଷଣରେ ଆହ୍ନିକ ଓ ବାର୍ଷିକ ଗତି ବାହାରେ ଉତ୍ପତ୍ତିସ୍ଥ ଗତି ମାଧ୍ୟମରେ ବାରବାର ତଳକୁ ଖସି ମଧ୍ୟ ଉପରକୁ ଉଠିବାର ଚେଷ୍ଟା କରେ, ମୁଁ ଠିକ୍ ସେପରି ଘୂରି ବୁଲିବ—ଏଇ ଦୀପ୍ତିମାନ ଆଲୋକ ସହ ଶେଷରେ ମିଶିଯିବା ପାଇଁ । ତେବେ ତୋତେ ମୋର ଏତିକି ଅନୁରୋଧ, ଯେତେଟା କହୁଛୁ ତୁ ମୋ ବିଷୟରେ ଜାଣିଛୁ, ଦେବ ଛଡ଼ା ଅନ୍ୟ କାହା ପାଖରେ ଗପିବୁନି । ଏମିତିକି ମୋର ଅନ୍ତରଙ୍ଗ ସାଙ୍ଗ ମାଧୁରୀ ବି ଜାଣେନି । ତାକୁ ବି ଜାଣିବାକୁ ଦେବୁନି, ଅନ୍ତତଃ ମୁଁ ବଞ୍ଚିଥିବା ଯାଏ । ଆଉ ବି ଅଶୋକ ବାବୁଙ୍କ ଅନ୍ୱେଷଣରେ କେବେ ବାହାରିବୁନି ।”

“ଏ କଣ କହୁଛ ଅପା ! ଯେତେବେଳେ ଅଶୋକବାବୁ ତୁମକୁ ଭଲ ପାଆନ୍ତି, ଆଉ ତୁମେ ବି ତାଙ୍କୁ ଏତେ ଭଲ ପାଅ, ସେତେବେଳେ କଥାଟାକୁ ଏତେଟା ଲୁଚାଇବା କାହିଁକି ଚାହୁଁ ତୁମେ ? ତୁମକୁ ବା ମୁଁ କି ଉପଦେଶ ଦେବି ଅପା······ତୁମକୁ ମୋର ଏତିକି ଅନୁରୋଧ, ଅଶୋକବାବୁ ସହ ତୁମ ଭଲ ଏବେ ବି ଅବିବାହିତ······”

“କିନ୍ତୁ ବିବାହ କରି, ଏଇଯୁନା ?······ବନ୍ଦୁ ! ତୋତେ ବହୁତ ଆଗେଇବାର ପ୍ରଶ୍ରୟ ଦେଇ ଆଜ ଏସବୁ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ୁଛି । ତେବେ ଏଇ ପ୍ରଶ୍ନର ଉତ୍ତର ପରେ ଅନ୍ତତଃ ଆଉ ଆଗେଇବୁନି । ହଉ ଶୁଣ୍ । ଭଲ ପାଇଥିଲି ବୋଲି, ପ୍ରେମରେ ଭାସି, ବିବାହିତ ଅଶୋକ ବାବୁଙ୍କ ସଂସାରକୁ ଜାଳିପୋଡ଼ି ଦେବାଟା କଣ ଉଚିତ୍ ହୋଇଥାଆନ୍ତା ?”

“ତା’ ମାନେ ଅଶୋକବାବୁ କଣ ବିବାହିତ !!!”

ବନ୍ଦୁ ନୀରବ ରହିଲା । ସମସ୍ତ ପ୍ରଶ୍ନର ଗତି ହଠାତ୍ ବଦଳାଇବା ତା’ ପକ୍ଷେ ସମ୍ଭବ ହେଲାନି ।

ତାର ମାନସିକ ଅବସ୍ଥା ଲକ୍ଷ୍ୟ କରି ସନ୍ଧ୍ୟା କହିଲା, “ସେଇଥି ପାଇଁ ମୁଁ କହୁଥିଲି ଏ ଭିତରେ ମଥା ନ ଘୂରାଇବା ପାଇଁ । ମୋ ନିକଟରେ ସେ ଗୋଟିଏ ଉତ୍ତପ୍ତ ଦୀପ୍ତିମାନ ଶିଖା ମାତ୍ର । ଦୂରରେ ଥାଇ ତାର ଆଲୋକ ପାଇବାରେ ହିଁ ଶାନ୍ତି ମିଳେ ।”

ଏତିକିବେଳେ, ଦେବ ଫେରି ଆସୁଥିବା ଦେଖି ବନ୍ଧୁ ଉଠି ଠିଆ ହେଲା । ସନ୍ଧ୍ୟା ବି ଆଖିର ଶୁଖିଲା ଧାରକୁ ପୋଛି ଟିକିଏ ସଚେତନ ହୋଇ ବସିଲା । ଗପ ଏତିକିରେ ବନ୍ଦ ।

ଦେବର ନିର୍ଦ୍ଦେଶରେ ଘେରି ଘଣ୍ଟାରେ ଟ୍ରେନ ଧରିବା ପାଇଁ ପଞ୍ଚପ୍ରାଣ ବନ୍ଧୁ ଲାଗିପଡ଼ିଲା ଅପାର ଜିନିଷପତ୍ର ସଜାଡ଼ିବାରେ । ସନ୍ଧ୍ୟା ବହୁତ ବେଳଯାଏ ସେମିତି ନିଶ୍ଚଳ ହୋଇ ବସିଥାଏ ।

ଟ୍ରେନ ଧରି, ଦୀର୍ଘ ତିନି ଦିନ ଯାତ୍ରା କଲାପରେ, ସମସ୍ତେ କଟକରେ ପହଞ୍ଚିଲେ । ଦେବ ଓ ବନ୍ଧୁ ଓହ୍ଲାଇ ଗଲେ । ସନ୍ଧ୍ୟା କିନ୍ତୁ ବସିଥାଏ ଆହୁରି ଆଗକୁ ଯିବାପାଇଁ ।

ବନ୍ଧୁ କହିଲା, "ଅପା···ସବୁ କଥା ଭୁଲିଯାଇ ଥରେ ବଖାକୁ ଆସ । କାଲିକ ପଚଛ ଫେରି ଆସିବ ।"

"ନା·· ବନ୍ଧୁ ଜୀବନରେ ବହୁତ କିଛି କରିବାକୁ ବାକି ରହିଛି । ସମୟ କିନ୍ତୁ ଖୁବ୍ କମ୍ ।"

ଦେବ କୋହ ସମ୍ବରଣ କରି ନପାରି କହିଲା, "ଅପା ପୁଣି କେବେ ଆସିବ ? ନା···ମୁଁ ଯିବି ?"

"ନା···ଦେବ । ତୋର ଯିବା ମୋର ଆସିବା ଅନାବଶ୍ୟକ । ହୋଇ ତ ଆଉ ସପ୍ତାହ ପରେ ତୁ ଆମେରିକା ଯିବୁ । ତେଣୁ ଆଉ ଯିବା ଆସିବାରେ ସମୟ ନଷ୍ଟ ନକରି, ବରଂ ସୁବିଧାରେ ବିଦେଶ ଯିବାର ବ୍ୟବସ୍ଥା କର । ଗଲାବେଳକୁ ଗା ଠିକଣାରେ ମୋ ପାଖକୁ ଚିଠି ଦେବୁ ଏବଂ ସେଠି ପହଞ୍ଚିଲା ସଙ୍ଗେ ସଙ୍ଗେ ବି ଜଣାଇବୁ ।"

ବଦୁ ପଗ୍ଭରିଲା, "ଏବେ କଣ ସିଧା ଗାଁକୁ ଯିବ ଅପା ?"

"ହଁ । ସେଠି କଚ୍ଛୁଟା ଦିନ ଶାନ୍ତିରେ କାଟିବି । ଆଜିକାଲି ଦେହ କିଛି ଭଲ ଲାଗୁନି । ସମୟେ ସମୟେ ଟିକଏ କଲିକ୍ ବାଧାରୁଛି ।"

"ତେବେ ଅପା ଆସ, ଡାକ୍ତରଙ୍କୁ ଦେଖାକରି ଯିବ ।"

"ନା ବଦୁ·· ଯିବାର ଦରକାର ନାହିଁ । ପଣ୍ଡିଚେରୀରେ ତ ସ୍ୱାସ୍ଥ୍ୟ ପରୀକ୍ଷା କରିଥିଲି । ବିଶ୍ରାମ ହେଉଛି ମୋ ପାଇଁ ଏକମାତ୍ର ଔଷଧ ।"

ଗାର୍ଡ଼ ହୁଇସିଲ୍ ଦେଲା—

ଅପାର ପାଦଧୂଳି ନେଇ ରୁମାଲରେ ଲୁହ ପୋଛି ପୋଛି ତଳକୁ ଓହ୍ଲାଇଲା ଦେବ ।

କିନ୍ତୁ ବଦୁ !! ସେ ବା ବିଦାୟ ନେବ କିପରି ? ତାର ମୋଟେ ଇଚ୍ଛା ହେଉ ନଥାଏ ଅପାକୁ ଛାଡ଼ିଯିବା ପାଇଁ । ସମ୍ଭାଳି ନପାରି ଅପା ଉପରେ କାନ୍ଦି କାନ୍ଦି ଢ଼ଳିଗଲା । ସନ୍ଧ୍ୟାର ଆଖିରେ ବି ଅଜସ୍ର ଲୁହ ।

ତେବେ ବୟସର ଦୀର୍ଘତା ସନ୍ଧ୍ୟା ପାଖରେ । ତେଣୁ ବଦୁକୁ ଧରି ନିଜେ ଓହ୍ଲାଇଲା ଟ୍ରେନରୁ । ଦେବ ପାଖରେ ତାକୁ ଛାଡ଼ିଦେଇ ପୁଣି ଟ୍ରେନକୁ ଉଠିଲାବେଳେ, ବଦୁ ସ୍ୱର ବିକଳ ହେଇ ଡାକିଲା "ଅପା" । ଲୁହ ଭିତରେ 'ଅପା' ଶବ୍ଦଟି ଅସ୍ପଷ୍ଟ ହେଇ ରହିଲା ।

ଟ୍ରେନଟି ଆଗକୁ ଗଡ଼ିବା ଆରମ୍ଭ କଲା । ବଦୁ ଅପାର ପାଦଧୂଳି ନେବା ପାଇଁ ହାତ ବଢ଼ାଇଲାବେଳେ ସନ୍ଧ୍ୟାର ପାଦ ଦୁଇଟି ବଦୁର ପରଶ ନେଇ ଦୂରେଇ ଗଲା । ସନ୍ଧ୍ୟା ଚାଲିଗଲା ଡବା ଭିତରକୁ ।

ଅନେକ ବେଳଯାଏ ବାହାରକୁ ଗ୍ଭହିଁ ଆଖିରୁ ଲୁହ ପୋଛୁଥାଏ ସନ୍ଧ୍ୟା ।

ଏଣିକି ସେ ଖୁବ୍ ଏକାକିନୀ ।

ସୁଦୂର ଗଡ଼ଜାତର ମଫସଲ । ଯିବାକୁ ହେଲେ କଚ୍ଚା ଚଲାବାଟ ହିଁ ଭରସା । ଏତେ କଦର୍ଯ୍ୟ ଓ ଭୟଙ୍କର ଯାହା ଯେ ଜଣେ କେହି ଯିବାକୁ ଭୟ କରିବେ କିମ୍ବା ଗଲେ ଆଉ ଫେରି ଆସିବାକୁ ଇଚ୍ଛା କରିବେ ନାହିଁ ।

ସନ୍ଧ୍ୟା ସେଇ ମଫସଲର ନିଜର ପୈତୃକ ଘରେ ପହଞ୍ଚିଲା । ସାଧା ସିଧା କୋଠା । କହିବାକୁ ଗଲେ, ଆଖପାଖ ଅନେକ ଗାଁ ଭିତରେ ସେଇ ଗୋଟିକ ହିଁ କୋଠାଘର । ଗଡ଼ଜାତ ମହାରାଜାଙ୍କ ଦପ୍ତରରେ ତାର ବାପା ଚାକିରି କଲାବେଳେ ବହୁତ କଷ୍ଟ ସହି କରି ଯାଇଥିଲେ ।

ବହୁଦିନ ଧରି ଅବ୍ୟବହୃତ କୋଠା, ପ୍ରକୃତିର ଖରା ବର୍ଷା ସହି ନପାରି, ଖୁବ୍ ବିକୃତ ଦେଖା ଯାଉଥାଏ । କାନ୍ଥବାଡ଼ ସବୁ ଶିଉଳିରେ ଭରା । ଘର ଭିତରେ ଖାଲି ଚିଁ ଚିଁ ଓ ଫର୍ ଫର୍ ଶବ୍ଦ । ଖୁବ୍ ଅପରିଷ୍କାର । ସନ୍ଧ୍ୟା ଲାଗିପଡ଼ିଲା ସେଇ କୋଠାକୁ ନୂତନ ରୂପ ଦେବାରେ ।

ସେତେବେଳକୁ ଆଜକାଲିକା ବ୍ଲକ୍‌ର ଉଦ୍ଭବ ହୋଇ ନଥାଏ । ପଞ୍ଚାୟତରାଜର ପରିକଳ୍ପନା ଚାଲିଥାଏ ମାତ୍ର । ତେଣୁ ଗଡ଼ଜାତର ପାହାଡ଼ଭିରା ଆଦିବାସୀ ମାନଙ୍କରେ ଶିକ୍ଷା ଓ ସଂସ୍କୃତିର ଘୋର ଅଭାବ । ପରିଷ୍କାର ପରିଚ୍ଛନ୍ନତା ମାନେ ଗୋଟିଏ ବିଦେଶୀ ସଭ୍ୟତା ବୋଲି ଲୋକେ ଭାବନ୍ତି । ରାସ୍ତାଘାଟ, ସ୍କୁଲ, ଡାକ୍ତରଖାନା ଦେଖିବାକୁ ସ୍ୱପ୍ନ ।

ସନ୍ଧ୍ୟାର ଆଗମନରେ ସମସ୍ତେ ଅଭିଭୂତ ହୋଇ ପଡ଼ିଲେ । କେତେକ ବୟସ୍କ ବନ୍ଧୁ ବି ସ୍ନେହର ଦାବୀ ବଦଳରେ ସମ୍ମାନ କରି ବସିଲେ ତାକୁ । ଦେଶର ଏପରି ପରିସ୍ଥିତି ଦେଖି, ସହରର ପରିମାର୍ଜିତ ସଭ୍ୟତାରେ ଦୀର୍ଘ ଦିନ ଧରି ବଢ଼ି ଆସିଥିବା ସନ୍ଧ୍ୟା, ଖୁବ୍ ଦୁଃଖିତା ହେଲା । ମନେ ମନେ ଯୋଜନା କରି ଗ୍ରହିଲା ତାର ଭବିଷ୍ୟତ କର୍ତ୍ତବ୍ୟ ।

ଶ୍ରୀ ମାଙ୍କର ଆଶୀର୍ବାଦ ନେଇ ଆସିଥିବା ସନ୍ଧ୍ୟା ସେଇଠୁ ଆରମ୍ଭ କଲା ତାର ଦେଶସେବା ଅଭିଯାନ ।

ନିଜ ଘରକୁ ଛୋଟିଆ ଆଶ୍ରମର ରୂପରେଖ ଦେଇ ନିରାଡ଼ମ୍ବର ଜୀବନ କଟାଇବା ଭିତରେ ସେ ଅକ୍ଳାନ୍ତ ଚେଷ୍ଟା କଲା ଗାଁ ଓ ଦେଶର ସମୃଦ୍ଧ ଉନ୍ନତି ନିମନ୍ତେ ।

ପ୍ରଥମେ ପ୍ରଥମେ ତାର ଉପଦେଶ ଓ କର୍ମକୁ ଲୋକେ ନାପସନ୍ଦ କଲେ । ଏମିତିକି କେତେକ ସ୍ୱାର୍ଥଲିପ୍ସୁ ଟାଉଟର ତାଚ୍ଛଲ୍ୟ କଲେ ବି । କିନ୍ତୁ ସନ୍ଧ୍ୟା ତାର ଦୃଢ଼ ମନୋବଳ, ଅଟଳ ନିଷ୍ଠା, ଉଚ୍ଚ ଆଦର୍ଶ, ସଚ୍ଚରିତ୍ର ଓ ସର୍ବୋପରି ମୈତ୍ରୀ ମନୋଭାବ ବଳରେ ଖୁବ୍ ଶୀଘ୍ର ସେ ସବୁ ଦୂର କରିପାରିଲା । ଭାରତୀୟ ସମ୍ବିଧାନର ମୌଳିକ ଅଧିକାର ଓ ପାଶ୍ଚାତ୍ୟ ବିଜ୍ଞାନର ଆଦର୍ଶ ନେଇ ଗଢ଼ିଥିବା ଆଶ୍ରମ ପ୍ରତି ଆବାଳବୃଦ୍ଧବନିତା ଆକୃଷ୍ଟ ହୋଇପଡ଼ିଲେ ।

ପୁରାତନ ଯୁଗର ପରଦା ତଳେ ଏବଂ ଆଦିବାସୀଙ୍କ ଅଶ୍ଳୀଳ ସଭ୍ୟତା ଭିତରେ ପଡ଼ି ସଢ଼ି କଷ୍ଟ ପାଉଥିବା ମହିଳାମାନଙ୍କ ଉନ୍ନତି ଓ ସେବା ବାହାରେ ଗାଁର ନିର୍ମଳତା ଓ ନିରକ୍ଷରତା ଦୂରୀକରଣରେ ସେ ଲାଗିପଡ଼ିଲା ।

ଏଣେ ନିଜ ରକ୍ତମାଂସର ପ୍ରବୃତ୍ତି ବିରୁଦ୍ଧରେ ସଂଗ୍ରାମ କରିବାର ପ୍ରବଳ ଚେଷ୍ଟା, ତେଣେ ଦେଶର ସେବା— ଏ ଦୁଇଟି କର୍ତ୍ତବ୍ୟ ଭିତରେ ନିଜକୁ ବୁଡ଼ାଇ ଦିନ କାଟେ । ଭାବେ, "ଏମିତି ତ ଦିନ କଟିଯିବ ।"

ତେବେ ଦିନର କର୍ମମୟ ଜୀବନ ସାରି ସେ ଯେତେବେଳେ ରାତିରେ ଶୋଇବାକୁ ଯାଏ, ଅଶୋକବାବୁଙ୍କ ଛବି ଓ ରେକର୍ଡପ୍ଲେୟାର୍ଟି ତା ଆଗରେ

ଚିଆ ହୁଏ । ବ୍ୟସ୍ତବ୍ୟସ୍ତ ହୋଇପଡ଼େ । ଭାବେ, ସେ ଭୁଲି ଯାଇଛି ବିରାଟ କର୍ତ୍ତବ୍ୟ । ତାର ଜୀବନର ପ୍ରିୟ ପ୍ରତି ଏ ଯାଏଁ ସେ କିଛି କରିପାରିନି । ଉକ୍ତ ଚିଠିରେ ଅଶୋକବାବୁ ଯେଉଁ ଅନୁରୋଧ କରିଥିଲେ ତାକୁ ଏ ଯାଏଁ ପୂରଣ କରିପାରିନି ।

ଏଇ ଆଶ୍ରମ ମାଧ୍ୟମରେ ସେ ପରିସ୍ଥିତି ସଜାଡ଼ୁଛି ମାତ୍ର । ମନରେ ବଳ ଓ ବାହାରେ ସହଯୋଗ ସଂଗ୍ରହ କରୁଛି । ସାମନାରେ ବିରାଟ ଦାୟିତ୍ୱ ଓ କର୍ତ୍ତବ୍ୟ । ତାର ଏକମାତ୍ର ଆଶଂକା—ଅଶୋକ ବାବୁଙ୍କ ଅନୁରୋଧ ରକ୍ଷା କରିବାକୁ ହେଲେ, ତାର ଗୁପ୍ତପ୍ରେମର ସମସ୍ତ ଅପରାଧ ଓ ଭଲ ପାଇବା ପରର ନୃଶଂସ ନିଷ୍ଠୁରତା କାଳେ ପ୍ରକାଶ ପାଇଯିବ ! ଆସ୍ତେ ଆସ୍ତେ ଏଇସବୁହିଁ ହେଲା ତାର ପ୍ରଧାନ ନୀରବ ଆଲୋଚନା ।

ଦିନକୁ ଦିନ ସେ ବେଶୀ ଚିନ୍ତିତା ହୋଇପଡ଼ିଲା । ଯେତିକି ଶାନ୍ତି ପାଇବ ବୋଲି ଆଶ୍ରମ ଜୀବନ ଓ ଦେଶସେବାର ବ୍ରତ ଗ୍ରହଣ କରିଥିଲା ସେତିକି ପାଇ ପାରିଲାନି । ନିଜର ମାନସିକ ଅଶାନ୍ତି ସେଥିରେ ମିଶିଗଲା । ରାତିର ଘନଅନ୍ଧାର ଭିତରେ ଭାବେ ନିଜର ଓ ନିଜ ପ୍ରିୟାର କଥା—ଦିନ ହେଲେ ଭାବେ ଦେଶ ଓ ଜାତିର କଥା ।

ନିଃଶବ୍ଦ ରାତିର ଘନଅନ୍ଧାର ଭିତରେ ଭାବୁ ଭାବୁ ବ୍ୟସ୍ତ ହୋଇଉଠେ । ଦେଖେ, ତାର ପାଖରେ ସମାଜର ତାଡ଼ନାରେ ଛିଟିକି ପଡ଼ିଥିବା କେତୋଟି ନିଃସହାୟ ଅବଳା ଓ ଅଭିଶପ୍ତା ବିଧବା ଉତ୍‌ଫୁଲ୍ଲ ହୋଇ ଶୋଇଛନ୍ତି । ଦିନର କ୍ଳାନ୍ତି, ରାତିର ଶାନ୍ତି ଭିତରେ ଲୁଚି ଯାଇଛି । ସେମାନଙ୍କର ନିଦ୍ରିତ ମୁଖରେ ବି ଆଶା ଓ ଆନନ୍ଦର ସଂସ୍ଫୁରଣ ସ୍ପଷ୍ଟ ଜଳୁଛି । ନିଜେ ଅଶାନ୍ତ ହୋଇ ବି ଆନ ବୁକୁରେ ଶାନ୍ତିର ଆଲେକପାତ କରିପାରିଛି ।

ସେଇ ନିର୍ଜନତା ଭିତରେ ସନ୍ଧ୍ୟା ମେଲି ବସେ ତାର ଦର୍ଶନ ଓ ଚିନ୍ତାଧାରା । ଆଜି ବି ସମୟେ ସମୟେ କଳ୍ପନା କରେ—ନିର୍ଜନତା ଭିତରେ ପୁରୁଷ ଆଖିରେ ନାରୀ କେତେ ସୁନ୍ଦର ଦିଶେ ! ନିଃଶବ୍ଦତା ଭିତରେ ପୁରୁଷ ପାଖରେ ନାରୀର ପରଶ କେତେ କୋମଳ ହୋଇଉଠେ ! ଯେଉଁ ପରଶ ପାଇଁ ବିରହୀ ଝୁରେ—ବହୁତ ଝୁରେ । ସେମିତି ଝୁରି ଝୁରି ଅଶୋକବାବୁ କେତେ କଷ୍ଟ ପାଇ ନଥିବେ !!

ରାତ୍ରିର ଘନ ତମସା ଭିତରେ ଆଖିର ସେଇ ଉଷ୍ଣ ପ୍ରବାହ ହିଁ ତାକୁ ଦିଏ ଆସନ୍ତା ଦିନ ପାଇଁ ପ୍ରେରଣା ।

ସେ ଯାହାହେଉ, ସୁଧା ଠିକ୍ କଲା ତାର ଶେଷ ପର୍ଯ୍ୟାୟର କର୍ମ । ସେତକ ସରିଲେ ତାର ଛୁଟି । ମାତ୍ର ଦୁଇ ବର୍ଷ ଭିତରେ ସାରିବାକୁ ପଡ଼ିବ । ତେବେ ଜଣେ ନିଃସହାୟା ନାରୀ ହେଇ ଏତେ ବଡ଼ କଠିନ ପରୀକ୍ଷାର ସମ୍ମୁଖୀନ ହେବ କପରି ?

ଥରେ ନିଷ୍ପତ୍ତି କଲେ ତ ସେ ଓହରେନା । ତେଣୁ ଦେଶର ସେବା, ତାର ପ୍ରିୟର ଅନୁରୋଧ ରକ୍ଷା ଓ ଜୀବନର ଅନ୍ତିମ କର୍ତ୍ତବ୍ୟ ପାଇଁ ପଦକ୍ଷେପ ନେଲା ।

ସୁଧା ଖୁବ୍ ଲାଗିପଡ଼ିଲା । ଖାଲି ସେ ନୁହେଁ, ଭାଇ ସୋମନାଥ ଓ ତାଙ୍କ ସ୍ତ୍ରୀ ବି । ବହୁ ଇଞ୍ଜିନିୟର୍, ଡାକ୍ତର, ସରକାରୀ କର୍ମଚାରୀ, ମନ୍ତ୍ରୀ, ଉପମନ୍ତ୍ରୀ-- ସମସ୍ତଙ୍କ ସାହାଯ୍ୟ ସହଯୋଗ ପାଇଁ ସୁଧା ଅନବରତ ଦୌଡ଼ୁଥାଏ ସେତେବେଳର ରାଜଧାନୀ କଟକ ସହରକୁ । ଆଉ ପାଉଥାଏ ବି ।

ଦିନ ପରେ ଦିନ, ମାସ ପରେ ମାସ ଗଡ଼ିବାରେ ଲାଗିଲା । କ୍ୟାଲେଣ୍ଡରର ପୃଷ୍ଠା ପରେ ପୃଷ୍ଠା ଓଲଟୁଥାଏ । ଆଲୁଅ ଓ ଅନ୍ଧାରକୁ ନେଇ ନିୟମିତ ଭାବେ ଋତୁ ପରେ ଋତୁ ଫେରି ଯାଉଥାଏ ଧରାକୁ ଚୁମ୍ବନ ଦେଇ । ସନ୍ଧ୍ୟାର କାମ ବି ଆଗେଇ ଥାଏ । ଦିନର କ୍ଲାନ୍ତ ଜୀବନକୁ ରାତିରେ ଟିକିଏ ବିଶ୍ରାମ ଦେଇ, ପୁଣି ସକାଳୁ ନୂତନ ଜାଗରଣ ନେଇଉଠେ । ଏକ ଲକ୍ଷ୍ୟ--ଏକ ମନ । ପ୍ରିୟର ସ୍ମୃତି ଓ ପ୍ରେମର ପ୍ରତିଦାନକୁ ରୂପଦେଇ ଆଖି ଆଗରେ ଠିଆ କରାଇବ---ବିରାଟ ତାଜମହଲ ଭଳି ପ୍ରେମର ନିଦର୍ଶନ ।

ବଢ଼େଇ, ମିସ୍ତ୍ରୀ, କୁଲି ମଜୁରିଆଙ୍କ ହାତ ଖୁବ୍ ଚଞ୍ଚଳ ହେଇପଡ଼ିଲା । ପ୍ରତିକ୍ଷେତ୍ରରେ ପ୍ରତ୍ୟେକଙ୍କଠାରୁ ଆନ୍ତରିକ ସାହାଯ୍ୟ ଓ ସହଯୋଗ ପାଇ, ବିନା ବାଧା ଓ ପ୍ରତିବନ୍ଧକରେ କାମ ଖୁବ୍ ଆଗେଇ ଚାଲିଲା ।

ଦୀର୍ଘ ତିନ ବର୍ଷ ତଳର କଳ୍ପନାକୁ ସଠିକ୍ ରୂପଦେଇ ଅଜସ୍ର ଅର୍ଥ ଓ ଅକ୍ଳାନ୍ତ ପରିଶ୍ରମ ଖଟାଇ ଅନେକଙ୍କ ଅତୁଳନୀୟ ଦାନରେ ସନ୍ଧ୍ୟା ରୂପ ଦେଇ ପାରିଲା ଅଶୋକ ବାବୁଙ୍କ ଅନୁରୋଧକୁ । ଯେଉଁଠି ମଣିଷ ଜୀବନର ସମାଧାନ ନେଇ ଫେରୁଥିବ ।

ଦେବ ଓ ବିନ୍ଦୁ ବିଦେଶରେ ଥାଇ ନିୟମିତଭାବେ ଚିଠି ଦେଉଥାଆନ୍ତି । ସନ୍ଧ୍ୟା ସେତକ ପଢ଼ି ଖୁବ୍ ଖୁସି ହେଉଥାଏ । ତାର ଦେବ ବିଦେଶରୁ ଉପାଧି ନେଇ ଆସିବ---ଏତକ ଭାବିଲେ ମନେ ମନେ ଖୁବ୍ ଗର୍ବ ଅନୁଭବ କରୁଥାଏ ବି ।

ନିଉୟର୍କରେ ଅଧ୍ୟୟନ ସାରି ଦେବ ଗଲା ଆୟର୍ଲାଣ୍ଡ । ତେଣୁ ତାର ସ୍ୱଦେଶ ଫେରିବା ସମୟ ଗଡ଼ି ଯାଉଥାଏ । ମନେ ମନେ ସନ୍ଧ୍ୟା ସେ ଦୁହିଙ୍କ କଥା ଭାବି ଖୁବ୍ ଲାଜ ପଡୁଥାଏ ।

ସେ ଯାହାହେଉ, ସନ୍ଧ୍ୟା ମୋଟେ କିଛି ଜଣାଇ ନଥାଏ ତାର ଯୋଜନା ବିଷୟରେ । ସେ ଠିକ୍ କରିଥିଲା—ଦେବ ଯେତେବେଳେ ଉଡ଼ାଜାହାଜରୁ ଓହ୍ଲାଇ ତାର ଅପାକୁ ଗୁଡ଼ାଏ ବିଦେଶ ଉପାଧି ଉପହାର ଦେବ, ଠିକ୍ ସେତିକବେଳେ ରୂପ ଦେଇଥିବା ବିରାଟ ଯୋଜନାକୁ ସନ୍ଧ୍ୟା ସମର୍ପି ଦେବ ସେ ଦୁହିଙ୍କ ହାତରେ । ତା ପରେ ତାର ଛୁଟି ।

କିନ୍ତୁ ପ୍ରତ୍ୟେକ ବିଷୟର ତ ସମୟ ବୋଲି କିଛି ଗୋଟାଏ ବିଶିଷ୍ଟ ଉପାଦାନ ଅଛି । ଯେଉଁ ସମୟରେ ସେଇ କଥା । ସମୟ ଗଡ଼ିଗଲେ ରୂପ ବଦଳି ଯାଏ । ଅକ୍ଳାନ୍ତ ପରିଶ୍ରମ କରି ଜଗତ ବିଖ୍ୟାତ ଆଇନ୍‌ଷ୍ଟାଇନ୍ ଆବିଷ୍କାର କରିଥିଲେ ଚତୁର୍ଥ ପରିସର ବା ଆୟତନ —"ସମୟ ଉପାଦାନ ।"

ସନ୍ଧ୍ୟା ସଠିକ୍ ବୁଝିଥିଲା ସମସ୍ୟାର ଗୁରୁତ୍ୱ । ସମସ୍ୟା ଗଢ଼ିଗଲେ ସମାଧାନ ବିକୃତ ହୁଏ । ସମସ୍ୟା ହିଁ ସମାଧାନର କର୍ତ୍ତା ।

ଏଇ ସମସ୍ୟା ଗଢ଼ିଦେଇ ଦେଇ ସେ ଭୋଗିଗଲା ଅନେକ କଷ୍ଟ । ଜୀବନଟା ବିଶୃଙ୍ଖଳ ହୋଇପଡ଼ିଲା । ପୁଣି ତାକୁ ସଜାଡ଼ୁ ସଜାଡ଼ୁ ବିଚ୍ଛିନ୍ନ ହୋଇପଡ଼ିଲା ସମାଧାନର ଅନ୍ୟାନ୍ୟ ଉପାଦାନ ସବୁ । ଜୀବନର ପ୍ରତିଟା ସମସ୍ୟା ଚିରଦିନ ପାଇଁ ରହିଗଲା ଅମୀମାଂସିତ ହୋଇ ।

ପ୍ରତିଟା ଜୀବନର ସାଫଲ୍ୟ ନିର୍ଭର କରେ ସମସ୍ୟା ଓ ସମାଧାନର ସଠିକତା ଉପରେ । ଏହାହିଁ ଜୀବନର ଗଜଗଣିତ—ସାଫଲ୍ୟ ଜୀବନର ଉତ୍କୃଷ୍ଟ ସତ୍ୟ ।

ତେଣୁ ତାର ସର୍ବଶେଷ ସମାଧାନଟିର ସଠିକ୍ ସମସ୍ୟା ଆବିଷ୍କାର କରିବାରେ ଲାଗିପଡ଼ିଲା ସନ୍ଧ୍ୟା । ଦେବ ଆସିବା ଯାଏ ଅପେକ୍ଷା କଲେ ହୁଏତ ସମାଧାନ ହୋଇ ପାରିବନି; ସେ ଫେରିବାର ବହୁ ପୂର୍ବରୁ ତାକୁ ବିଦାୟ ନେବାକୁ ହେବ ।

ସମାଧାନ ପାଇଁ ସମସ୍ୟା ଯେତିକି ନିକଟତର ହେଉଥାଏ, ସନ୍ଧ୍ୟା ବି ସେତିକି ବ୍ୟସ୍ତ ହେଉଥାଏ । ସେ ସମାଧାନ ନେଇ ଚାଲିଯିବ, କିନ୍ତୁ ଦେବ ଓ ବିନ୍ଦୁ ସହ ଦେଖା ହୋଇ ପାରିବନି—ଏଇତକ ଭାବିଲେ ତାର କୋମଳ ହୃଦୟରୁ ନରମ ଲୁହ ବହେ ।

ଦୀର୍ଘ ଦିନ ଧରି କ୍ଲାନ୍ତ ହୋଇ ପଡ଼ିଥିବା ଜୀବନକୁ ହଠାତ୍ ବିଶ୍ରାମ ଦେଇ ପୋଷା ମନାଇବା ବେଳକୁବେଳ କଷ୍ଟକର ହୋଇପଡ଼ିଲା ତା ନିକଟରେ । ସେ ଯେତେ ଚେଷ୍ଟାକରେ, ସେତିକି ଅକୃତକାର୍ଯ୍ୟ ହୁଏ ।

ଧରମ ଭାଇ ସୋମନାଥର ପୁଅଟିକୁ ଧରି ବାନୀର କଚ୍ଛାଟା ମୁହଁରୁ ଓଲ୍ଟାଏ । ହେଲେ ସେଥିରେ ବି ନାଣ୍ଟ ଜୀବନର ମାତୃତ୍ୱ ଖୁବ୍ ବ୍ୟାକୁଳ ହୁଏ । ବାନୀର ଆଲୁଅ ବିଦାୟ ନେଲାବେଳେ ଖୁବ୍ ଦରିଦ୍ର ଅନୁଭବ କରେ । ରାତି କଟିବ କିପରି ?—ଏଇ ଚିନ୍ତାରେ ମନେ ମନେ ଭାଜପଡ଼େ ସନ୍ଧ୍ୟା ।

ଅସ୍ତମିତ ସୂର୍ଯ୍ୟଙ୍କୁ ପଛରେ ରଖି ବିରାଟ କୋଠାକୁ ଦୂରରୁ ଚାହେଁ । କୋଠାର ଉପର ଭାଗକୁ, ଯେଉଁଠିକି ଆକାଶଟା ଖସିଯାଇ ବାଗ୍‌ବଳୟ ସୃଷ୍ଟି କରିଥାଏ, ସେଇଠିକି ଚାହିଁରହେ ସନ୍ଧ୍ୟା । ଭାବେ, ତାର ଅଶୋକବାବୁ ଆହୁରି କେତେ ଉଚ୍ଚରେ ! କି ମହାନ୍ ବ୍ୟକ୍ତିତ୍ୱ ! ସେଇ ବ୍ୟକ୍ତିତ୍ୱକୁ ସେ କଣ ଏତେ ତଳେ ଥାଇ ବୁଝିପାରିବ ? ପେଟପୂରା ଚାହିଁ ଶାନ୍ତି ପାଇପାରିବ ??

ତାର ଦୃଷ୍ଟି ନଇଁ ଆସେ । ଘନ ଶ୍ୟାମଳିମା ଆକାଶ ଉପରୁ ଦୃଷ୍ଟି ଫେରାଇ ଆଣେ । ଅନୁତାପର ଗୁରୁ ଭାରରେ ମଥା ନୁଆଁଇ ଭାବେ--ସତରେ କଣ ଅଶୋକବାବୁଙ୍କର ଭଲ ପାଇବାର ପ୍ରତିଦାନ ଦେଇପାରିବ ? ଅସରନ୍ତି ପ୍ରେମର ଝରକୁ ନିଜ ପାଖରେ ରଖିପାରିବ ଚିରଦିନ ?

ଏମିତି ଭାବୁ ଭାବୁ ବି ଟୋପା ଲୁହ ପାଦତଳର ଭୂଇଁ ଛୁଇଁ ଦିଏ । ତାର କ୍ଷତସ୍ଥାନରୁ ଜ୍ୱାଳା ଘନେଇ ଉଠେ । ଆଖିର ଲୁହ କେବଳ ସେଇ ବିଷାକ୍ତ ଘା'ର ପୂଜମାତ୍ର । ସ୍ମୃତିଭରା ଆକାଶରେ ଘୂରେ ଭାବନାର ମୌସୁମୀ । କେତୋଟି ବିକୂଳ ଗୁଡ଼ିକୁ ଥରାଇ ଫେରିଯାଏ । ଅଭିମାନ ଭରି ଭାବେ, ଅଶୋକବାବୁ ଥରେ ହେଲେ ଭାବିଲେ ନାହିଁ ଯେ କେବଳ ପରିସ୍ଥିତିର ପ୍ରତିବନ୍ଧକ ଯୋଗୁଁ ସନ୍ଧ୍ୟା ଖସି ଆସେ ତାଙ୍କ ପାଖରୁ । ଚିଠି ବି ଦେବାର ସାହସ ଆସେନା । ନିଜ ଭୂଲର ଅନୁତାପ କରୁ କରୁ ଆହୁରି ଅନେକ ଭୂଲ କରିଯାଏ । ଖାଲି ଆଖିରୁ ଲୁହ ଦେଇ ଚୁପ୍ ରହେ । ଲୁହ ଶେଷରେ ସବୁବେଳେ ଶେଯ ଉପରେ ଛଟପଟ ହୁଏ । ପୂରା ପୂରା ଗରମ ନିଶ୍ୱାସ ତା ହୃଦ ଭିତରୁ ବାହାରି ଯାଏ ଏବଂ ସେ କେତେ କଣ ଭାବି ବସେ ।......

ଗୁଡ଼.... । ଅଶୋକବାବୁ ତ ବୁଝି ପାରିଲେନି । ଆଉ ଟିକିଏ ଅପେକ୍ଷା କରିଥିଲେ ସେ ବହୁତ କିଛି ଦେଇଥାଆନ୍ତା । ସବୁ ଭୂଲପାଇଁ କ୍ଷମା ମାଗିଥାଆନ୍ତା । ମନ୍ଦିର ଭଳି ତରଳ, ନାରୀ ଭଳି ସରଳ ଓ ସ୍ୱର୍ଗ ଭଳି

କୋମଳ ହୋଇ ତାଙ୍କର ବୁକୁ ଉପରେ ଢ଼ଳି ଯାଇଥାଆନ୍ତା । କିନ୍ତୁ ହୋଇନି । ନିୟତି ନିଷ୍ଠୁର ହୋଇ । ଅଶୋକବାବୁଙ୍କ ସ୍ମୃତିକୁ ମଧ୍ୟ ସେ ଖୋଜି ଖୋଜି ପାଇନାହିଁ । ଫେରି ଆସିଥିଲା ସେଇଦିନ ।

ହେଲେ, ଅଶୋକବାବୁଙ୍କ ପ୍ରତିପଦ କଥା ଜ୍ୱଳନ୍ତ ଅଗ୍ନି ସାଜି ତା ହୃଦୟ ଭିତରଟାକୁ ଜାଳିପୋଡ଼ି ଦେଉଥାଏ । ଧୂପକାଠି ଭଳି ସେ ଜଳିଜଳି ଯାଉଥାଏ ।

ନିରୁପାୟ ହୋଇ ସେ ସମ୍ଭାଳି ନିଏ ସବୁ ଜ୍ୱାଳାକୁ, ଆଉ ସବୁ କ୍ଷତକୁ । କାହା ଆଗରେ ତାର କୁମାରୀତ୍ୱ, ସତୀତ୍ୱ ଓ ନାରୀତ୍ୱର ପରିଚୟ ଦେବ ? କିଏ ଅବା ତାକୁ ଦର୍ପଣ ଭଳି ଭଲ ପାଇବ ? ଆଉ ଦେଖିଲା ମାତ୍ରେ ନିଜ ପ୍ରତିବିମ୍ବକୁ ପ୍ରତିଫଳିତ କରିବ ??

ଏଇଟା ନିଘଞ୍ଚ ସତକଥା ବୋଲି ସେ ଭାବେ ଯେ ସେ ଭୁଲ କରିଛି । ଜଣକର ପ୍ରେମ ଓ ସ୍ନେହକୁ ଗ୍ରହଣ କରି ତା'ର ଭଲ ପାଇବାର ଦାବୀକୁ ଅସ୍ୱୀକାର କରିଛି । ତେଣୁ ଅଶୋକବାବୁ ସବୁବେଳେ ଅଭିମାନୀ ହୋଇ ଥାଆନ୍ତି । ଆଉ ସେଇ ଅଭିମାନକୁ ଭାଙ୍ଗିବାର କୌଣସି ଉପାୟ ତାର ପାଖରେ ନଥାଏ । କେବଳ ସମବେଦନାରେ ନିରମି ଯାଏ ମାତ୍ର ।

ଏଇଟା ବି ସତକଥା ଯେ ହୃଦୟ ଭିତରେ ଅଶୋକବାବୁଙ୍କ ପାଇଁ ସଂରକ୍ଷିତ ସ୍ଥାନଟି ଅଧିକାର କରିବା ପାଇଁ ଏ ଜଗତରେ ଆଉ କାହାର ଯୋଗ୍ୟତା ନାହିଁ ।

ପାହାଡ଼ ତଳିଆଁ ବିଶାଳ କୋଠାରେ ସମୟେ ସମୟେ ଝରଣାର ଛନ୍ଦ-ଚପଳ ମଧୁର ନୃତ୍ୟ ଏବଂ ଆଦିବାସୀଙ୍କ ଉନ୍ମତ୍ତ, ଉତ୍‌ଫୁଲ୍ଲ ଓ ଅମାୟିକ ସଙ୍ଗୀତ ପ୍ରତିଧ୍ୱନିତ ହୁଏ । ସଂଧ୍ୟା ଗୁହେଁ ପଛକୁ । ବନ୍ଧୁ ପଛକୁ । ଖୋଜି ବୁଲେ ତାର ହଜିଲା ଛନ୍ଦ ଓ ଶୁଖିଲା ପ୍ରେମରେ ସୁଧା ଝରେଇ ।

ଏକୁଟିଆ ଜୀବନ ଭିତରେ ଗୁଡାଏ ଏମିତି ଭାବ ଭାବ ଦୀର୍ଘନିଶ୍ୱାସ ମାରେ । ସମସ୍ତଙ୍କ ପାଖରୁ ଦୂରେଇ ଯାଇ ସବୁ ମାୟା ମମତାର ବନ୍ଧନ ଛୁଟାଇ, ଜୀବନଟାକୁ ତିଳ ତିଳ କରି ଛିନ୍ନ ଭିନ୍ନ କରିଯାଏ ସେ । ଯୌବନଟାକୁ ଦିନ ଭିତରେ ଅଧିକାଂଶ କାହିଁକି ସବୁଠିକ ସମୟ ଭୁଲିଯାଏ । ରାତି ହେଲେ ଦୁଃଖରେ ଭାଙ୍ଗିପଡ଼େ । କପାଳ ଉପରୁ ହାତଟାକୁ ମଥା ଉପରେ ଦେଇ ଘୁରାଇ ଆଣୁ ଆଣୁ ଦେଖେ, ମୁଣ୍ଡର କେଶ ଅସ୍ଥିର ହେଉନି କିବା ଯୌବନର ଚପଳତାରେ ଉଚ୍ଚା ଗୁଚ୍ଛିରୁ ଲୁଗା ଖସୁନି ।

ନିଜ ହାତରେ ନିଜର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜାଳିବାର ଶେଷ କେବେ ପଡ଼ିବ, ସେଥିକି ପାଇଁ ସବୁବେଳେ ସେ ଅପେକ୍ଷା କରି ରହିଥାଏ । ଜୀବନଟା ଦୁଃସହ ଓ ଦୁର୍ଭେଦ୍ୟ ଅନୁଭବ କରେ । ତେଣୁ ଚାଲିଥାଏ ଧ୍ୱଂସପଥର ଯାତ୍ରୀ ହୋଇ ।

କିଛି ଦିନ ପରେ ସନ୍ଧ୍ୟା ଖଣ୍ଡିଏ ଟେଲିଗ୍ରାମ ପାଇଲା ପ୍ରଶାନ୍ତବାବୁଙ୍କ ଠାରୁ, "**Arrived Bombay Today. Reaching Cuttack on 6th.**"

ସଂଧ୍ୟା କାଲେଣ୍ଡରକୁ ଦେଖିଲା । ଜାନୁୟାରି ଏକ । ଭାବିଲା ଆହୁରି ଚାରିଟା ଦିନ ବାକି ରହିଛି ।

ବେଙ୍କରୁ ସମସ୍ତ ଟଙ୍କା ଉଠାଇ ଆଣିଲା । ଦିନରାତି ନ ଶୋଇ ସେମିତି ଭାବୁ ଭାବୁ ତିନୋଟି ଦିନ ବିତିଗଲା ।

ପାହାଡ଼ ତଳର ସ୍ଥାପତ୍ୟକଳାଭରା ବିରାଟ କୋଠାରେ ସେଇଟା ଶେଷ ଦିନ ।

ସିଡ଼ି ଉପରେ ପାହାଚ ପରେ ପାହାଚ ଉଠି ସବା ଉପରେ ଠିଆ ହେଲା ସନ୍ଧ୍ୟା । କ୍ଳାନ୍ତ ବଦନରୁ ଲୁହ ପୋଛୁ ପୋଛୁ ତଳକୁ ଚାହିଁଲା । ସାମନା

ବଗିଚ୍ଚର ଫୁଲଗୁଡ଼ିକ ଖୁବ୍ ଶ୍ରେଷ୍ଠ ଦିଶୁଛି । ଖୁବ୍ ସୁନ୍ଦର—ଅତି ଚମତ୍କାର । ଖୁବ୍ ମୁଗ୍ଧ ହୋଇପଡ଼ିଲା ସେ । ତେବେ ବହୁ ସମୟ ଧରି ଚାହିଁ ପାରିଲାନି । ଶରୀରରେ ସ୍ନାୟବିକ ଦୁର୍ବଳତା ସ୍ପର୍ଶ କଲା । ଫେରିଆସିଲା ତଳକୁ । ହାତ ଘଡ଼ିକୁ ଚାହିଁଲା । ସମୟ ନିକଟ । ଖୁବ୍ ନିକଟ ହେଲାଣି ।

ଭାଇ ସୋମନାଥ ଓ ଭାଉଜଙ୍କୁ ତାକ ହୃଦୟ ଭିତରେ କୋହକୁ ଖୁବ୍ ଚାପି କହିଲା, "ମୁଁ ଯାଉଛି । ଚେଷ୍ଟା କରିବି ଜଲ୍‌ଦି ଫେରିଆସିବା ପାଇଁ ।"

ପୁଅଟିକୁ ଧରି ନାରୀ ହୃଦୟର ସମସ୍ତ ବାତ୍ସଲ୍ୟ ସ୍ନେହ ଭରି ଚୁମାଟିଏ ଦେଲା । ଆଖିଟାକୁ ପୋଛି ନେଲା । ତାର ବ୍ୟବହାର ଓ କଥାବାର୍ତ୍ତା ସେମାନଙ୍କ ପାଖରେ ଟିକିଏ ନୂଆ ନୂଆ ଲାଗିଲେ ମଧ୍ୟ ସେମାନେ କିଛି ନକହି ଭୁନି ରହିଲେ । କୋଠାଟାକୁ ବହୁତ ବେଳଯାଏ ପଛକୁ ଫେରି ଚାହିଁ ଚାହିଁ ସନ୍ଧ୍ୟା ଆଗେଇ ଚାଲିଲା ।

ଷ୍ଟେସନର ଲେଡ଼ିଜ୍ ଫାଷ୍ଟ କ୍ଲାସ ଭଏଟିଂ ରୁମ୍ । କେବଳ ସନ୍ଧ୍ୟା ଓ ମାୟା ବସିଥାନ୍ତି । ସନ୍ଧ୍ୟା ଖୁବ ଗମ୍ଭୀର । ସାମନା ଚୌକିରେ ବସିଥାଏ ମାୟା । ଦୁଇ ଚୌକି ମଝିରେ ରାଉଣ୍ଡଟେବୁଲ ଉପରେ ବସିଥାଏ ଆଶା । ଖୁବ୍ ସୁନ୍ଦର । ଗୋରା ତକ ତକ ଚେହେରା । ଖୁବ୍ ଗୁଲୁଗୁଲିଆ ଝିଅଟିଏ । ବୟସ ପାଖାପାଖି ପାଞ୍ଚ ।

ସନ୍ଧ୍ୟା ନୀରବରେ ଏକଲୟରେ ଚାହିଁଥାଏ ଆଶାକୁ । ସତେ ଯେପରି ତାର ଉପରେ ସନ୍ଧ୍ୟା ମେଳି ବସିଛି ବିରାଟ ଦର୍ଶନ ।

ମାୟା ଯଥେଷ୍ଟ ଉଦ୍‌ବେଗ ଓ ଆତୁରତା ନେଇ ଅପେକ୍ଷା କରିଥାଏ ପ୍ରଶାନ୍ତବାବୁଙ୍କୁ ।

ସନ୍ଧ୍ୟାର ଏପରି ଶୁଷ୍କବଦନ ଓ ଅନ୍ୟମନସ୍କତାକୁ ଲକ୍ଷ୍ୟ କରି ମାୟା ପଚାରିଲା, "ଅପା···! ଆଜ କଲିକତା ନଗଲେ କଣ ଚଳନ୍ତାନି ? ପ୍ରଶାନ୍ତ ବାବୁ ଯେତେବେଳେ ଫେରୁଛନ୍ତି, ଆଜ ଦିନଟା ଅଟକି ଯାଅ। କାଲିକି ଯିବ।"

ସନ୍ଧ୍ୟା ସେମିତି ନିଶ୍ଚଳ ଓ ନୀରବ···।

ମାୟା ପୁଣି "ଅପା···ଅପା" ବୋଲି ଡାକିଲା। ସନ୍ଧ୍ୟା ପ୍ରକୃତିସ୍ଥ ହୋଇ ଆଶା ଉପରୁ ଦୃଷ୍ଟି ଫେରାଇ ଆଣିଲା। ମାୟା ପୁଣି ଥରେ ପୁନରାବୃତ୍ତି କଲା ତାର ପ୍ରଶ୍ନକୁ।

ଅତି ଖାମଖିଆଲି ଭାବେ ସନ୍ଧ୍ୟା ଉତ୍ତର ଦେଲା, "ନା······ମାୟା। ଆଜ ହିଁ ଯିବାକୁ ହେବ। ଖୁବ୍ ଜରୁରୀ।"

ଆଶା ବସିଥାଏ। ତଳକୁ ଲମ୍ବି ଯାଇଥିବା ଗୋଡ଼ ଦୁଇଟିକୁ ନଚାଉ ନଚାଉ ସମୟେ ସମୟେ ସନ୍ଧ୍ୟାକୁ ପଚାରେ, "ମାମି···! ଦାଦା କେତେବେଳେ ଆସିବେ ?"

ସନ୍ଧ୍ୟା ସେମିତି ନୀରବ ରହେ। ମାୟା ଉତ୍ତର ଦିଏ।

ଗାଡ଼ି ଦୁଇ ଘଣ୍ଟା ଡେରି। ତେଣୁ ବହୁତ ବେଳଯାଏ ଅପେକ୍ଷା କରିବାକୁ ପଡ଼ିଲା।

ପ୍ଲାଟଫର୍ମ ଉପରେ ବାରମଜାର ଡାକରେ ଆଶା ଉଠି ଚାଲିଗଲା ଫାଟକ ନିକଟକୁ। ସନ୍ଧ୍ୟା ଧୂରାଇ ଆଣିଲା ତାର ସମସ୍ତ ଭାବନାକୁ। ଦୀର୍ଘନିଃଶ୍ୱାସ ଭିତରେ ସେ ଖୁବ୍ ଫୁଲି ଉଠିଲା।

ମାୟା ଖୁବ୍ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲା, "ଅପା···ଆଜ ଏମିତି କଣ ହେଉଛ ମ ! କଣ ଦେହ ଖରାପ ?"

"ନା···ମାୟା। ସାରାଜୀବନ ଭିତରେ ଆଜ ହିଁ ମୁଁ ସୁସ୍ଥ ଅନୁଭବ କରୁଛି।"

"ନା···ମିଛ କହୁଛ । ସେତେବେଳଠୁ ଦେଖୁଛି ତୁମେ ଖୁବ୍ ଅନ୍ୟମନସ୍କ ।"

କଥା ବାଆଁରେଇ ସନ୍ଧ୍ୟା ପ୍ରଶ୍ନ କଲା, "ଆଚ୍ଛା ମାଯ୍ବା, ଆଶାଠାରେ ତୁମ ଭାଇଙ୍କ ଚେହେରା ସ୍ପଷ୍ଟ ପ୍ରତିଫଳିତ ହେଉଛି ନା ?"

"ହଁ, ଉତ୍ତର ଦେଲା ମାଯ୍ବା ।

ପୁଣି ସନ୍ଧ୍ୟା ଚାହିଁ ରହିଲା ଫାଟକ ଆଡ଼େ—ଯେଉଁଠି ପଛ କରି ଆଶା ଠିଆ ହୋଇଥାଏ । ପାଟିରୁ ବାହାରି ପଡ଼ିଲା "ଖୁବ୍···ସୁନ୍ଦର" ।

"ହଁ···ଅପା । ଆଶାକୁ ଦେଖିଲେ ଭାଇଙ୍କୁ ଭୁଲି ହୁଏ ।" ସନ୍ଧ୍ୟା ସେମିତି ଚାହିଁ ରହିଲା ଆଶା ଆଡ଼େ ।

ମାଯ୍ବା ବିବ୍ରତ ହୋଇ ପ୍ରଶ୍ନ କଲା, "କ'ଣ ମ ଅପା ! କେଇଟା ଦିନ ପାଇଁ କଲିକତା ଯାଉଛ ଯେ ଏତେ ବ୍ୟସ୍ତ !"

"ତୁମେ ବୁଝି ପାରିବନି ମାଯ୍ବା । ସବୁଦିନ ଭଲ ଅଳି ନୁହ । ଏ ରହସ୍ୟକୁ ଆଜିଯାଏଁ କେହି ଉଦ୍‌ଘାଟନ କରିପାରିନି ।"

"ଏ କଣ କହୁଛ ଅପା ?" ଆଶ୍ଚର୍ଯ୍ୟ ହୋଇ ମାଯ୍ବା ପ୍ରଶ୍ନ କଲା ।

ସନ୍ଧ୍ୟା ହସିଲା । ସେ ହସରେ ସୁଖ ନାହିଁ, କେବଳ ଦୁଃଖ । ଏତିକି-ବେଳେ ଗାଡ଼ି ଆସିବା ପାଇଁ ଫାଷ୍ଟ ବେଲ୍ ହେଲା । ଆଶା ଚାଲି ଆସିଲା ସନ୍ଧ୍ୟା ପାଖକୁ ।

ସନ୍ଧ୍ୟା ବି ଜାକିନେଲା ଆଶାକୁ । ତା ପରେ, ନିଜ ମୁହଁକୁ ଭଲ ଭାବେ ଥରେ ପୋଛି ନେଇ ଆରମ୍ଭ କଲା—

"ଶୁଣ, ମାଯ୍ବା ! ଏଇ ବେଲ୍‌କୁ ବହୁତ ଦିନ ହେଲା ଅପେକ୍ଷା କରିଥିଲି । ଏଣିକି ମୋର ଜୀବନ ପୁଣି ଗତି ବଦଳାଇ ନେବ । ଆଜିଯାଏଁ ଯାହା ନ କହି ନିଜ ପାଖରେ ଲୁଚାଇ ରଖିଥିଲି, ଏଇନେ କହି ଯାଉଛି ।

କିନ୍ତୁ ମୋ କଥା ଉପରେ ପ୍ରଶ୍ନ କରିବନି । ଶୁଣିବାକୁ ଅନିଚ୍ଛୁକ ହେଲେ ବି ଉଠି ଯିବନି ।”

“କଣ ଏମିତି କହୁଛ ଅପା ! ଏମିତି କଣ କଥା ଅଛି ଯେ ଏତେ ଦୁର୍ବଳ ହୋଇ ଯାଉଛ !” ଆଶ୍ଚର୍ଯ୍ୟ ହେଲା ମାଧୁରୀ ।

“ହଁ ମାଧୁରୀ·· ଆଜିପାଏଁ ମୁଁ ଖୁବ୍ ଶକ୍ତ ଥିଲି । ଏଣିକି ଖୁବ୍ ଦୁର୍ବଳ । ହଉ, ଘଣ୍ଟି ବାଜିଲାଣି । ଆଉ ପନ୍ଦର ମିନିଟ ପରେ ଟ୍ରେନ ଆସିଯିବ । ତେଣୁ ଶୁଣ—ତୁମ ଭାଇଙ୍କର ସେଇ ନିଷ୍ଠୁର ପ୍ରିୟା କିଏ ଜାଣ ?”

“କିଏ ?”

“ମୁଁ ”

“ଅପା······?!!!”

“ହଁ ମାଧୁରୀ··· ମୁଁ ଆଗରୁ କହିଛି ଆଉ କିଛି ପ୍ରଶ୍ନ କରିବନି । ତୁମର ଯାହା ଜାଣିବା ଦରକାର ମୁଁ କହି ଯାଉଛି ।

ମୁଁ ହେଉଛି ସେଇ ନିଷ୍ଠୁର ପ୍ରିୟା । ପ୍ରଥମ ଦେଖାରେ ତାଙ୍କୁ ଖୁବ୍ ଭଲ ପାଇଥିଲି । ଆଉ ସେ ବି । କିନ୍ତୁ ବେଶିଦିନ ତାଙ୍କୁ ଭଲ ପାଇବାର ପ୍ରତିଦାନ ଦେଇ ପାରିଲିନି । ପ୍ରଥମତଃ ବାପା ମାଙ୍କର ଅତି ବାଧ ହୋଇ ପରିସ୍ଥିତିଟାକୁ ହିଁ ଖୁବ୍ ଗୁରୁତର ବୋଲି ଭାବିଲି ।

ଦ୍ୱିତୀୟରେ ଦୁହିଁଙ୍କ ଭିତରେ ସମାଜର ପ୍ରତିବନ୍ଧକ ଠିଆ ହୋଇଥିଲା ସୁଦୀର୍ଘ ଓ ସୁଦୃଢ଼ ପାଚେରୀ ହୋଇ । ତୃତୀୟତଃ ସେତେବେଳକୁ ମୋର ବୟସ ଖୁବ୍ କମ୍ । ତେଣୁ ଭଲ ପାଇବାଟାକୁ ଖାମଖିଆଲି ଭାବେ ଧରି-ନେଲି । ସମୟର ଗୁରୁତ୍ୱ ବୁଝିପାରି ନଥିଲି । ମୋ ପାଖରେ ଜ୍ଞାନର ଖୁବ୍ ଅଭାବ ଥିଲା । ଶେଷରେ ଖୁବ୍ ଭାବପ୍ରବଣ ହୋଇ ମୁଁ ତାଙ୍କୁ ପ୍ରତ୍ୟାଖ୍ୟାନ କଲି । ଏମିତି କି ବିବାହ ପ୍ରସ୍ତାବଟାକୁ ଖୁବ୍ ତାଚ୍ଛଲ୍ୟ କଲି । ଦୂରେଇ ଯିବା ଏବଂ ଆପେ ଆପେ ଲିଭିଯିବାର ଉପାୟ ବାଛି ଯଥେଷ୍ଟ ଘୃଣାକରି ବୋଲି ତାଙ୍କୁ ଜଣାଇଲି । ଭାବିଥିଲି, ଏମିତି କଲେ ସେ ଦୂରେଇ ଯିବେ ।

ହେଉନଥିଲା...ମୁଁ ସିନା ଭଲ ପାଇବାର ଦର୍ଶନରେ ଅନଭିଜ୍ଞ ଥିଲି କିନ୍ତୁ ସେ ନୁହଁ । ତେଣୁ ବାରମ୍ବାର ସେ ଦୌଡ଼ି ଆସନ୍ତି ମୋର ପାଖକୁ । ତାଙ୍କର ସମସ୍ତ ଦର୍ଶନ, ସାହିତ୍ୟ, କବିତା ଓ ସଙ୍ଗୀତ ଢାଳି ମୋତେ ବୁଝାନ୍ତି, ବହୁତ ଅନୁରୋଧ କରନ୍ତି । ତଥାପି ମୁଁ ପାପିନୀ ଅବୁଝା ହୋଇ ଆହୁରି ନିଷ୍ଠୁର ହେଲି । ଭୀରୁ ଦୁର୍ବଳ ପୁରୁଷ ବୋଲି ଆକ୍ଷେପ କଲି । ଶେଷରେ ଦିନେ ମୋ ପାଖକୁ ଆସିବା ପାଇଁ ମୁହେଁ ମୁହେଁ ମନା କଲି; ରାଗିଲି ବି ।

କିନ୍ତୁ ସେଇ ବିରାଟ ବ୍ୟକ୍ତିତ୍ୱ ଟଳିଲାନି । ପ୍ରେମ ଉପରେ ଦୃଢ଼ ବିଶ୍ୱାସ ତାଙ୍କର । ତେଣୁ ଆଖିରେ ଅଜସ୍ର ଲୁହ ଓ ଶରୀରରେ ଆଘାତ ନେଇ ବି ଭଲ ପାଇଲେ । ତେଣୁ ବାଧ ହେଲି ତାଙ୍କୁ ଗାଳି ଦେବାକୁ । ଦେଲି ବି ।

ସେ ଫେରିଗଲେ । ଆଉ ଆସିଲେନି । ତେବେ ଖୁବ୍ କାନ୍ଦି କାନ୍ଦି ଅନେକ ଅଶ୍ରୁଭିଜା ଚିଠିଦେଲେ । ଗୋଟିଏ ନୁହ—ଦୁଇଟା ନୁହ । ଏମିତି ଶହ ଶହ । ମୁଁ ଦିବିଗଲି ସତ, ହେଲେ, ଉତ୍ତର ଦେଇ ତାଙ୍କ ଜୀବନରେ ଶାନ୍ତି ଦେବାର ସାହସ ହେଲାନି । ଖାଲି ଅନୁତାପ କରୁ କରୁ ମୋ ଦିନ ଗଲା ।

ସମୟ ସେମିତି ଗଡ଼ି ଚାଲିଥାଏ

ତା' ପରେ ଦିନେ—ଗ୍ଳବର କଲା ଭିତରେ ଜଣେ ସଙ୍ଗୀନୀଠାରୁ ଗପ ଶୁଣୁ ଶୁଣୁ ଶୁଣିଲି ତାର ଜଣେ ଦୂର ସମ୍ପର୍କୀୟ ବନ୍ଧୁ ତାଙ୍କର ପ୍ରିୟାର ଧକ୍କା ସହି ନପାରି ବିଷଖାଇ ଆତ୍ମହତ୍ୟା କରିଥିଲେ । କିନ୍ତୁ ସୌଭାଗ୍ୟକୁ ଡାକ୍ତରଙ୍କର ଅକ୍ଳାନ୍ତ ପରିଶ୍ରମରେ ବଞ୍ଚିଗଲେ । ପରିଚୟ ପଚାରି ବୁଝିଲି, ସେଇ ଅଶୋକବାବୁ । ଖୁବ୍ ଦୁଃଖ ଲଗିଲା । ଭାବିଥିଲି ମୁଁ ବି ଆତ୍ମହତ୍ୟା କରି ମରିଯିବି । କିନ୍ତୁ ସେ ଏତେ ଭଲ ପାଇଥାନ୍ତି ଯେ ମୋ ମରଣରେ ତାଙ୍କ ଅଶାନ୍ତି ଓ ଦୁଃଖ ଆହୁରି ବଢ଼ିଯିବ – ଏଇସ୍ୱା ଭାବି ସେଥିରୁ କ୍ଷାନ୍ତ ହେଲି । ତେବେ ଇଚ୍ଛା ହେଉଥାଏ ତାଙ୍କୁ ଥରେ ଦେଖିବି । ଆଉ ଅଜସ୍ର କ୍ଷମା ମାଗିବି ।

ସେଇଆ ହେଲା । ଦିନେ ମୁଁ ଟ୍ରେନରୁ ଓହ୍ଲାଇ ଏଇ ପ୍ଲାଟଫର୍ମ ଉପରେ ଯାଉ ଯାଉ ତାଙ୍କୁ ଦେଖିଲି । ଅଭିମାନଭରା ମୁଁହରେ ମୁଁ ଓହ୍ଲାଇଥିବା ଟ୍ରେନ ଭିତରେ ହିଁ ବସିଥାନ୍ତି । ସେଇଦିନ ସେ ବଦଳି ହୋଇ ଯାଉଥାଆନ୍ତି ବ୍ରହ୍ମପୁରରେ ଜଏନ୍ କରିବାକୁ । ଚେହେରା ତାଙ୍କର ଖୁବ୍ କଦର୍ଯ୍ୟ ଦେଖା ଯାଉଥାଏ ।

ସମ୍ଭାଳି ପାରିଲିନି । ଧୈର୍ଯ୍ୟହରା ହୋଇପଡ଼ିଲି ତାଙ୍କର ବିଷଣ୍ଣ ବଦନ ଦେଖି । ଯଦିଓ ମୋର ଘରକୁ ଯିବା ଖୁବ୍ ଜରୁରି ଥିଲା, ତଥାପି ଲେଉଟିଲି । ସେ ବସିଥିବା କମ୍ପାର୍ଟମେଣ୍ଟକୁ ଉଠିଲି ।

ସେତେବେଳ ଯାଏଁ ସେ ମୋତେ ଦେଖି ନଥିଲେ । ମୁହଁମାରି ନୀରବରେ ବସି ଭାବୁଥାଆନ୍ତି । ବୋଧହୁଏ ମୋରି କଥାହିଁ ଭାବୁଥିଲେ । ମୋତେ ଦେଖି ସେ ଖୁବ୍ ଆଶ୍ଚର୍ଯ୍ୟ ହୋଇ ପଡ଼ିଲେ । ତାଙ୍କ ମୁଖମଣ୍ଡଳରୁ ବେଶ୍ ଜାଣି ହେଉଥାଏ, ସେ ମୋତେ ଦେଖି ଖୁବ୍ ଡରିଯାଇଛନ୍ତି ବେକତଳର ହାଡରୁ ବେଶ୍ ଜଣା ହେଉଥାଏ, ତାଙ୍କର ଖର ନିଶ୍ୱାସର ଉଦ୍ବ୍ୟାକୁଳତା ।

ତାଙ୍କର ଯେତେ ନିକଟକୁ ମୁଁ ଯାଉଥାଏ, ସେ ଡରି ଡରି ଆହୁରି ଦୂରେଇ ଯାଉଥାଆନ୍ତି ।

ବେଶି ସମୟ ଏପରି ହେବାକୁ ଦେଲିନି । ମୁଁ ନିଜେ ଯାଇ ଖୁବ୍ ଆତ୍ମୀୟଭାବେ ତାଙ୍କର ନିକଟରେ ବସି ଆଳାପ ଜମାଇଲି ।

ଆଶ୍ଚର୍ଯ୍ୟ କଥା ! ସେଇ ବ୍ୟକ୍ତିତ୍ୱଠାରେ ମୁଁ ଟିକିଏ ହେଲେ ରାଗ, ଦ୍ୱେଷ, ଅଭିମାନ, ଗୁମାନ କିଛି ଦେଖିଲିନି । ଖୁବ୍ ହସି ହସି କଥାବାର୍ତ୍ତା କଲେ । ଖୁବ୍ ନିଜର ଭଳି ସବୁ କିଛି ବ୍ୟବହାର କଲେ । ତାଙ୍କ ଜୀବନରେ ମୋର ଉପସ୍ଥିତି ଯୋଗୁଁ ହଠାତ୍ ପରିବର୍ତ୍ତନ ବି ଲକ୍ଷ୍ୟ କଲି ।

ଖୋର୍ଦ୍ଧାରୋଡ଼ରେ ବାଧ ହୋଇ ମୁଁ ଓହ୍ଲାଇଲି ଅନ୍ୟ ଟ୍ରେନ ଧରି ଫେରିଆସିବା ପାଇଁ । ସେ ଖୁବ୍ ଦରଦୀ ହୋଇ ଉଠିଲେ । ମୋତେ ଅଟକାଇବା ଦୂରେ ଥାଉ, କିଛି କହି ବି ପାରିଲେନି ।

ସହାନୁଭୂତିରେ ତରଳ ଯାଇ ଶେଷ ମୁହୂର୍ତ୍ତରେ ତାଙ୍କୁ ଅନୁରୋଧ କଲି ଓହ୍ଲାଇବାକୁ । ସଙ୍ଗେ ସଙ୍ଗେ ସେ ଓହ୍ଲାଇଲେ । ବହୁତ ବେଳଯାଏ ଏମିତି ଗୋଟାଏ ଓ୍ୱେଇଟିଂ ରୁମରେ ଦୁହେଁ ବସି ଗପିଲୁ । ସେ ଖୁବ୍ କାନ୍ଦିଲେ ପିଲାଙ୍କ ଭଳି । କହିଗଲେ ତାଙ୍କର ଦୁଃଖର ଇତିହାସ ।

ସତେ ମ ମାୟା । ହେ··· ଟି କାଲି ଭଳି ଲାଗୁଛି । ମୁଁ ଖୁବ୍ ତରଳ ଗଲି । ତାଙ୍କ ଉପରେ ନଜରକୁ ଆଉଜାଇ ନେଇ ଭୁଲ୍ ମାଗିଲି । କ୍ଷମା ଚାହିଁଲି । ସେ ଦେଲେ ସତ, ହେଲେ ମୋ ଭଲ ପାଇବାଟାକୁ ସେ ମୋଟେ ବିଶ୍ୱାସ କଲେନି । ଠିକ୍ ନାଗକନ୍ୟାଠାରୁ ଦୂରେଇ ରହିଲା ଭଳି ପୁରୁଷ ହେଇ ସବୁବେଳେ ମୋ ଠାରୁ ଦୂରେଇ ରହିଲେ । ଶେଷରେ ଭଗବତ୍ ବିଶ୍ୱାସର ଆଶ୍ରୟ ନେଇ, ମୁଁ ତାଙ୍କୁ ଧରି ପ୍ରସିଦ୍ଧ ଓ ପ୍ରତ୍ୟକ୍ଷ ଦେବଦେବୀ ମନ୍ଦିର ବୁଲି ସବୁଠି ନିୟମ କଲି । କଟକ ଚଣ୍ଡୀଠାରୁ ଆରମ୍ଭ କରି ପୁରୀ ଜଗନ୍ନାଥ ଯାଏ । ଶେଷରେ ଲୋକନାଥଙ୍କଠାରୁ ଫେରି କହିଲି, "ଅଶୋକବାବୁ ! ସାକ୍ଷୀ ଦେବା ପାଇଁ ମୋର ସମସ୍ତ ଦେବତା ଓ ଦେବୀ ସରିଲେ । ଆଉ କାହାକୁ ବା ସାକ୍ଷୀ ଦେବି ? ତୁମଠୁ ବଡ ହେଇ ଦେବତା ମୋ ଜୀବନରେ ଆଉ କିଏ ଅଛି ? ତେଣୁ ତୁମ ଦେହ ଛୁଇଁ ଶେଷରେ କହୁଛି ମୁଁ ତୁମକୁ ଖୁବ୍ ଭଲପାଏ ।" କହି ଆଉଜି ପଡ଼ିଥିଲି ବି ।

ସେତେବେଳେ ପ୍ରଥମ ଥର ପାଇଁ ତାଙ୍କଠାରେ ଭଲ ପାଇବାର ହସ ଦେଖିଲି । ଠିକ୍ ପ୍ରିୟାଭଳି ସେ ମୋତେ ନିରୋଳାରେ ଭିଡ଼ିନେଲେ ।

ତା' ପରେ ଦୁହେଁ ଆସିଲୁ କୋଣାର୍କ । ପ୍ରିୟା ଓ ପ୍ରିୟର ଆଶାକୁ ରୂପଦେଇ ବାରଶହ ବଢ଼େଇଙ୍କ କାରୁକାର୍ଯ୍ୟ ଦେଖୁ ଦେଖୁ ସମୟେ ସମୟେ ଅଶ୍ଳୀଳତାକୁ ଭଲପାଇ ଦହେଁ ଚାହିଁ ରହୁ କେତୋଟା ଚିତ୍ରକୁ ।

କିନ୍ତୁ ମୁଁ ହତଭାଗିନୀ ସେଦିନକବେଳେ ପୁଣି ଥରେ ତାଙ୍କର ଭଲ ପାଇବାର ପରୀକ୍ଷା କଲି । ଡ଼ାକବଙ୍ଗଳାର ସୁସଜ୍ଜିତ କୋଠରୀ ଭିତରେ, କୋଣାର୍କ ମନ୍ଦିରରେ ଦେଖି ଆସିଥିବା ନିର୍ଜୀବ ଅଶ୍ଳୀଳ ଛବିକୁ ଜୀବନର ପ୍ରଥମ ଥର ପାଇଁ ସଜୀବ ଶରୀର ଭିତରେ ପରୀକ୍ଷା କରୁ କରୁ ମୁଁ ତାଙ୍କଠାରୁ ମୋ ସର୍ବାଙ୍ଗ ଟାଙ୍ଗରାଇ ଦେବାର ନିୟମ କରାଇ ନେଲି ।

ଭାବଥିଲି ପୁରୁଷ ଜାତି ତ ନାରୀ ପାଖରେ ଖୁବ୍ ଦୁର୍ବଳ । ତେଣୁ ଅଶୋକ ତାଙ୍କୁ ବାଧ ହୋଇ ନଇଁମି ଯିବେ । ମୋ ପାଖରେ ଖୁବ୍ ଦୁର୍ବଳ ହୋଇ ପ୍ରେମଭିକ୍ଷା କରିବେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ରାତି ପାହିଗଲା । ସେ ଜିଣି ଗଲେ । ମୁଁ ହାରିଲି । ତଥାପି ତାଙ୍କଠାରେ ଦୁଃଖ, ଅଭିମାନ ଓ ଗ୍ଲାନି କିଛି ନଥିଲା । ହସି ହସି ସେ କହିଥିଲେ, "ମୋର ପ୍ରେମର ପ୍ରତିଦାନ ଏତିକି । ତୁମକୁ ଏତେ ଭଲ ପାଇ, ନିରୋଳାରେ, ଏକାନ୍ତରେ ପାଇ ବି ଆଜଯାଏଁ ତୁମର କୁମାରୀତ୍ୱ ନଷ୍ଟ କରିନି ।"

ସେ ଖୁବ୍ ଗର୍ବ ଅନୁଭବ କଲେ । ଆଉ ମୁଁ, ନିଜର ଭୁଲ ପାଇଁ ନିଜକୁ ଶତ ଧିକ୍କାର କରି ଫେରିଆସିଲି ମୋ କର୍ମକ୍ଷେତ୍ରକୁ ।

ଅନେକ ଦିନଯାଏ, ସେ ମୋ ପାଖକୁ ଖାସ୍ ଦୌଡ଼ିଆନ୍ତି । ସବୁବେଳେ ବେଳାଏ ଚିଠି ଲେଖି ମୋତେ ବଢ଼ାନ୍ତି । ମୋର ବିଚ୍ଛେଦ ଓ ବିରହରେ ସେ କେତେ ଅଥୟ ଓ ଅସହ୍ୟ ହୋଇ ପଡ଼ନ୍ତି, ସେ ସବୁକୁ ଚିତ୍ରଣ କରିଥାନ୍ତି ସେଥିରେ । ମୋ ନିକଟରେ କିନ୍ତୁ ଖୁବ୍ ଖୁସି ଆଳାପ କରିଯାଆନ୍ତି ।

ଏମିତି କେତେ ଦିନ କଟିଗଲା··· ।

ଦିନେ ଧୂମକେତୁ ଭଳି ଦେଖାଦେଲେ ମନୋଜ । କାନ୍ତ, କମନୀୟ ଓ ମହାନ୍ ଅଶୋକବାବୁଙ୍କଠାରୁ ପାଇଥିବା ସମ୍ପତ୍ତିକୁ ନଷ୍ଟଭ୍ରଷ୍ଟ କରିଦେଇ ଚାଲିଗଲେ । ଚିରଦିନ ପାଇଁ ମୁଁ ମୋ ନିଜ ପାଖରେ ହେଲି ଅସତୀ ।

ଏତିକିବେଳେ ମାୟା ପ୍ରଶ୍ନ କଲା, "ମନୋଜ କିଏ ?"

"ତୁମେ ଦେଖିଛ ମାୟା । କିନ୍ତୁ ତମର ମନେ ନଥିବ । ଶେଷଥର ପାଇଁ ତାଙ୍କୁ ମୁଁ କଟକ ମେଡ଼ିକାଲ୍‌ରେ ଥିବାବେଳେ ଦେଖିଥିଲି । ପତ୍ନୀଙ୍କ ବିୟୋଗରେ ଖୁବ୍ ବ୍ୟଥିତ ହୋଇ ସେ କାନ୍ଦୁଥାନ୍ତି । ତାଙ୍କ କଥା ଛାଡ଼···।"

ହଁ······ଏଣେ ମନୋଜବାବୁଙ୍କ ଦଂଶନ ତେଣେ ଅଶୋକବାବୁଙ୍କ ମହତ୍ ଓ ପବିତ୍ର ପ୍ରେମ ଏ ଦୁଇଟିର ମିଶ୍ରଣରେ ମୋ ହୃଦୟସାରା ବିଷର ଜ୍ୱାଳା ଜନେଇ ଉଠିଲା । ଚିରଦିନ ପାଇଁ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ ହରାଇ,

ଅଶୋକବାବୁଙ୍କୁ ପୁଣି ଥରେ ଦୂରେଇବାକୁ ଚେଷ୍ଟା କଲି । ବିବାହ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲି । ଦ୍ୱିତୀୟ ବିପ୍ଳବର ସୂତ୍ରପାତ ହେଲା ସେଇଠୁ ।

ଏଇ ଦ୍ୱିତୀୟ ବିପ୍ଳବ ଭିତରେ ପୁଣି ଥରେ ଆତ୍ମହତ୍ୟା ଉଦ୍ୟମ କରି ବିଚାରାଳୟରେ ଦଣ୍ଡିତ ହେଲେ ସେ । ଏତିକି ଶୁଣିବା ପରେ ମୁଁ ନିଜେ ତାଙ୍କ ପାଖକୁ ଗଲି । ସେତେବେଳକୁ ସେ ବିବାହିତ । ତେଣୁ ଦାମ୍ପତ୍ୟ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ମୋତେ ଦୂରେଇ ରହିବାକୁ ହିଁ ପଡ଼ିଲା ; ସେତିକି ବି ସେ ସହି ପାରିଲେନି । ସେ ଚାହିଁଲେ ଖାସ୍ ମୋ ସହିତ ମିଶିଯିବା ପାଇଁ ।

ଶେଷରେ ବାଧହେଇ ନିଜକୁ ଅସାଧାରଣ ସାଜିଲି । ଖୁବ୍ ନିଷ୍ଠୁର ଓ ବିଶ୍ୱାସଘାତିନୀ ଭଳି ଅଭିନୟ କଲି । ଆଉ ବଞ୍ଚି ରହିଲି ଜୀବନରେ ବିରାଗର ଶ୍ରୀ ନେଇ । ଏଇ ହେଲା ମୋର ଶେଷ ପରିଚୟ । ମୋର ଏଇ ପରିଚୟକୁ ନେଇ ଆରମ୍ଭ ହେଲା ତାଙ୍କର ଡାଏରୀ । ଡାଏରୀରେ ତେଣିକି ସେ ଯାହା ଲେଖିଛନ୍ତି ସବୁ ଠିକ୍ । ଅକ୍ଷରେ ଅକ୍ଷରେ ସତ୍ୟ । ଡାକ୍ତରଖାନାରେ 'ଡାଏରୀଟି ପଢ଼ିବା ବେଳେ ମୁଁ ଖୁବ୍ କଲବଲ ହେଉଥାଏ । ତୁମେ ବିଶ୍ୱାସ କରିବନି ମାମୁ—ମୁଁ କି ଛଟପଟ ହେଇଚି ! ସେଇ ରାତି ଭିତରେ ବି ଥରେ ଦି' ଥର ତାଙ୍କ ପାଖକୁ ଯିବାକୁ ଉଦ୍ୟମ କରିଛି । କିନ୍ତୁ ଦରଓ୍ୱାନ୍‌ର ଆପତ୍ତିରେ ଫେରି ଆସିଛି । ହୁଏତ ଚେଷ୍ଟା କରିଥିଲେ ତୁମ ସହ ଯାଇ ପାରିଥାଆନ୍ତି । ତେବେ ଏଇଟା ସତ ଯେ ତାଙ୍କ ପାଖରେ ମୋ ଉପସ୍ଥିତି ତାଙ୍କ ଜୀବନର ସମାଧାନଟିକୁ ଜଟିଳ କରିଦେଇ ଥାଆନ୍ତା । ଯେତେହେଲେ ସେ ବିବାହିତ । ତେଣୁ ମୋର ପ୍ରେମଟିକୁ ଲୋକଲୋଚନ ଅଗୋଚରରେ ହିଁ ରଖିବାକୁ ଚେଷ୍ଟା କରୁଥାଏ । ତାଙ୍କ ପକ୍ଷରେ—ମୋ ଜୀବନଟା ଯାହା, ମୋ ମୃତ୍ୟୁ ବି ସେଇଆ । ମୋ ଅନୁପସ୍ଥିତିଠାରୁ ବରଂ ଉପସ୍ଥିତିଟା ଆହୁରି ଭୟଙ୍କର । ତାଙ୍କର ମୁମୁର୍ଷୁ ଶରୀର ଉପରେ ମୁଁ ଯେତେବେଳେ ଦମ୍ଭ, ଧୈର୍ଯ୍ୟ, ସାହସ ଓ ଶକ୍ତି ଢାଳି ଲୋଟି ପଡ଼ିଥାଆନ୍ତି, ସେତେବେଳେ ସେ ଜିଇଁ ଉଠିଥାନ୍ତେ ସତ, ତେବେ ତା ପରର ପରିଣାମ ଓ ପରିସ୍ଥିତି ତାଙ୍କ ଜୀବନରେ ମୃତ୍ୟୁଠାରୁ ବି ଆହୁରି ଦୁଃଖ ଦେଇଥାଆନ୍ତା । ତାଙ୍କ ସହ ମିଶିଯିବାର ସମୟ ଗଡ଼ି ଯାଇଥିଲା । ତେଣୁ ତୁମେ ସେଇ ରାତିରେ ଦ୍ୱିତୀୟବାର ଆସି ଦେଖା କଲାବେଳକୁ ମୁଁ

ନିଷ୍ପତ୍ତି କରିସାରିଥିଲି ନିୟତିର ନିର୍ଦ୍ଦେଶକୁ ମାନି ନେବାକୁ । ସମସ୍ୟାର ସମାଧାନକୁ ବଦଳାଇବାକୁ ଚାହିଁ ନଥିଲି । ବରଂ, ଉପଯୁକ୍ତ ସମାଧାନ କରି ସେ ଯାଆନ୍ତୁ ଏବଂ ମୁଁ ତାଙ୍କର ଅତୃପ୍ତ ଆତ୍ମାକୁ ଲୋକଲୋଚନ ଅଗୋଚରରେ ତୃପ୍ତି କରିପାରିବି, ଏଇ ଆଶା ପୋଷଣ କରିଥିଲି ।" ଏତିକି କହିଲାବେଳକୁ ସନ୍ଧ୍ୟା ଆଖିରୁ ଅଜସ୍ର ଲୁହ ବହି ଯାଇଥିଲା ।

ଏତେ ପରେ ବି ତା' ପରଦିନ ସକାଳୁ, ତମକୁ ଦେଖିଯିବା ବାହାନାରେ ତାଙ୍କ ପାଖକୁ ଯିବାକୁ ଚେଷ୍ଟା କରିଥିଲି । କିନ୍ତୁ ପରିସ୍ଥିତି ସହଯୋଗ କଲାନି ।

"ଛାଡ଼......। ସେଥିରୁ କଣ ମିଳିବ ? ସମସ୍ତ ହେଲାଣି ।"

ଏତିକିବେଳେ ଗାଡ଼ି ଆସିବାର ଶେଷ ଘଣ୍ଟି ବାଜି ଉଠିଲା । ସନ୍ଧ୍ୟା ତରବରରେ ଉଠି କହିଲା, "ଆଉ ଅଧିକ କଣ କହିବି ମାଧୁ । ମୁଁ ଜାଣେ. ସେ ଖୁବ୍ କଲବଲ ହୋଇ ମୋତେ ଝୁରି ଝୁରି ଶେଷ ନିଶ୍ୱାସ ଛାଡ଼ିଥିବେ । ହେଲେ, ମୁଁ ନିରୁପାୟ ହୋଇ ରହିଲି । ସେ ଡାକ୍ତରଖାନାକୁ ଯିବା ପୂର୍ବରୁ, ତାଙ୍କର ଶେଷ ଚିଠିଟି ରେଜିଷ୍ଟାର୍ଡ କରି ମୋ ପାଖକୁ ପଠାଇ ଥିଲେ; ଯେଉଁଟା କି ମୁଁ ମେଡିକାଲରୁ ଉତ୍ତୀର୍ଣ୍ଣ ହୋଇ ଘରକୁ ଗଲାପରେ ପାଇଲି । ସେଇ ଚିଠିରେ ଯେଉଁ ଅନୁରୋଧ କରିଥିଲେ ତାକୁ ଅକ୍ଷରେ ଅକ୍ଷରେ ପାଳନ କରି ଆଜି ଚାଲିଯାଉଛି" କହି ସନ୍ଧ୍ୟା ଖୁବ୍ କାନ୍ଦିଲା । ରେଜିଷ୍ଟାର୍ଡ ଚିଠି ଖଣ୍ଡିକ ମାଧୁ ହାତକୁ ବଢ଼ାଇ ଦେଲା ।

ମାଧୁ ପଢ଼ିବା ଆରମ୍ଭ କଲା ଖୁବ୍ ଆତୁର ହୋଇ ।

ପ୍ରାଣର......

ସମ୍ବୋଧନ କରିବା ପାଇଁ ଉପଯୁକ୍ତ ଶବ୍ଦ ପାଇ ପାରିଲିନି । କ୍ଷମା ଦେବ ।

ହଁ ସନ୍ଧ୍ୟା, ଏଇ ବୋଧହୁଏ ମୋର ଶେଷ ଚିଠି ଓ ଶେଷ ଭାଷା । ବୋଧହୁଏ ଏଣିକି ସମାଧାନ ପାଇପାରିବ ।

ଚଠି ପାଇଲାବେଳକୁ ହୁଏତ ମୁଁ ବଞ୍ଚିଥାଇପାରେ । ତେବେ ଅନୁରୋଧ, ଆସିବାକୁ ଇଚ୍ଛା ହେଲେ ବି ଆସିବନି ।

ପ୍ରିୟେ ! ଜୀବନରେ ବହୁତ କିଛି ଶେଷ ଆଶା ଓ ଅନୁରୋଧ ଜଣାଇ ଆସିଛି । ହେଲେ ଜୀବନର ଶେଷ ଘଟିନଥିଲା । ଆଜି ସେଇଥିପାଇଁ ପ୍ରତିଥର ଶେଷ ଆଶା ବଦଳି ବଦଳି ଯାଉଥାଏ ।

ହେ ମୋର ପ୍ରିୟା ! ତୁମ ଜୀବନରେ ହୁଏତ ମୁଁ ଗୋଟାଏ ଧୂମକେତୁ ହୋଇଥିବି । କାରଣ ବାରବାର ତୁମ ପାଖକୁ ଦୌଡ଼େ । ମନା କଲେ ବି ଯାଏ । ମୋ ଉପସ୍ଥିତିଟା ତୁମକୁ ଯଥେଷ୍ଟ ଅଶାନ୍ତି ଦିଏ । ତେଣୁ କ୍ଷମା ଦେବ ।

ଯେତେବେଳେ ମନ୍ଦିର ମନ୍ଦିର ବୁଲି ତୁମେ କାମନା କରିଥିଲ 'ଭଲ ପାଅ' ବୋଲି ଏଇତକ ଆଶା ମୋର ପୂରଣ କରିବନି ? ମୁଁ ବଞ୍ଚିଥିବାରୁ ସିନା ପରିସ୍ଥିତିଟା ଖୁବ୍ ଶକ୍ତ ହୋଇଥିଲା । ହେଲେ ଏଣିକି ପରିସ୍ଥିତିକୁ ଦୂରେଇ ଏତିକି ରଖିବନି ?

ଲଟେରୀ ପାଇଥିବା ଟଙ୍କାରୁ ଅଢ଼େଇ ଲକ୍ଷ ଟଙ୍କାର ଚେକ୍ ଏଇ ଚିଠି ସହ ପଠାଇଛି । ବେଙ୍କ୍‌କୁ ବି ଇନ୍ଷ୍ଟ୍ରକସନ୍ ଦେଇଛି । କାହିଁକି ଜାଣ ? ସେଇ ଟଙ୍କାରେ, ମୋ ପରେ ଦାତବ୍ୟ ଚିକିତ୍ସାଳୟଟିଏ ତିଆରି କରିବ, ଯେଉଁଠି ମଣିଷ ଜୀବନ ଓ ମୃତ୍ୟୁର ସମାଧାନ ନେଇ ଫେରୁଥିବ । ଆଉ ମୋର ସାନ ଭାଇ ବିଦେଶରୁ ଉଚ୍ଚଶିକ୍ଷା ପାଇ ଫେରିଲେ ସେଇ ଚିକିତ୍ସାଳୟରେ ଡାକ୍ତର ହେବ ।

ନିଶ୍ଚୟରେ ମୋ ପରେ ମୋ ବିଧବା ସ୍ତ୍ରୀ ଏବଂ ମୋର ଏକମାତ୍ର ରକ୍ତର ସନ୍ତକ ଝିଅ 'ଆଶା' ଖୁବ୍ ଭାଙ୍ଗିପଡ଼ିବେ । ନିଃସହାୟ ହୋଇ ଖୁବ୍ ବ୍ୟଥିତ ହୋଇ ରହିବେ । ତାଙ୍କର ଖବର ନେଉଥିବ । ନାରୀ ହୋଇ ଅନ୍ୟ ନାରୀ ପାଇଁ ଟିକିଏ ସହାନୁଭୂତି ଦେଖାଇବନି ?

ବିଶ୍ବାସ କର, ମୋ ସ୍ତ୍ରୀ ତୁମପାଇଁ କଣ ନ ସହିଛି !!

ହେଉ···ଶେଷ ଆଶା ଟିକକ ଜଣାଇଲି । ତୁମର ଯଦି ଆନ୍ତରିକତା ଅଛି ତେବେ ଚେଷ୍ଟା କରିବ ପୂରଣ କରିବା ପାଇଁ । ନ ହେଲେ ବି ଦୁଃଖ ନାହିଁ । ମୋର ଦୁର୍ଭାଗ୍ୟ ଭାବି ସମାଧି ଭିତରେ ରହିଥିବି ।

ଆଉ କଣ ବା ଲେଖିବି । ସମୟ ଖୁବ୍ କମ୍ । ତେବେ ଖାସ୍ ତୁମକୁ ଝୁରି ଝୁରି ଚାଲିଯାଉଛି ।

ବିଦାୟ·········

ତୁମର ହତାଦୃତ

ଅଶୋକ

ଚିଠି ପଢ଼ା ସରିଲାବେଳକୁ ସଂଧ୍ୟା ମୁଣ୍ଡପୋତି ବ୍ୟତିବ୍ୟସ୍ତ ହୋଇ କାନ୍ଦୁଥାଏ । ମାୟାର ଆଖିରେ ବି କମ୍ ଲୁହ ନଥାଏ । ମାୟା କହିଲା, "ଅପା··· ·ଏ ଘଟଣା କଣ ଆଉ କେହି ଜାଣନ୍ତିନି ?"

ସଂଧ୍ୟା ଅଶ୍ରୁ ଗଦଗଦ୍ କଣ୍ଠରେ କହିଲା, "ଯେତେବେଳେ ପ୍ରଶାନ୍ତବାବୁ ଭାଇଙ୍କ ମୃତ୍ୟୁପରେ ଖୁବ୍ ଭାଙ୍ଗିପଡ଼ିଲେ ଏବଂ ବିଦେଶ ନଯିବା ପାଇଁ ଏକା ଜିଦ୍ କଲେ, ସେତିକବେଳେ ଏଇ ଚିଠି ଦେଖାଇବାକୁ ବାଧ୍ୟ ହୋଇଥିଲି । ସେଥିରୁ ସେ ସବୁକିଛି ବୁଝି ପାରିଥିଲେ । ତାଙ୍କ ଛଡ଼ା ତୁମେ ହେଲ ଦ୍ୱିତୀୟ । ହଉ ମାୟା ବିଦାୟ !"

"ଅପା······ଅପା ! ଶୁଣ ।"

"ନା······ମାୟା । ହେଇ ଦେଖ ଟ୍ରେନ ଠିଆ ହୋଇଛି "।

ଠିକ୍ ସେଇ ଉଏଟିଂ ରୁମ୍ ସାମନାର ଫାଷ୍ଟକ୍ଲାସ କମ୍ପାର୍ଟମେଣ୍ଟରୁ ପ୍ରଶାନ୍ତ ପୂରା ସାହେବୀ ପୋଷାକରେ ଓହ୍ଲାଇଲେ । ଆଶା ଖୁବ୍ ଜୋରରେ ଦୌଡ଼ିଗଲା "ଦାଦା····· ଦାଦା" ପାଟିକରି । ପ୍ରଶାନ୍ତବାବୁ ଜାକିନେଲେ ଆଶାକୁ । ଚୁମା ଉପରେ ଚୁମାଦେଇ ତାକୁ କୋଳକରି ଆଗକୁ ମାଡ଼ି ଆସିଲେ । ସଂଧ୍ୟାର ସନ୍ନ୍ୟାସିନୀ ରୂପ ଦେଖି ପ୍ରଥମେ ଟିକିଏ ଅବାକ୍

ହେଲେ । କିନ୍ତୁ ପ୍ରଥମ କର୍ତ୍ତବ୍ୟ ଭାବେ ତାର ପାଦଧୂଳି ମୁଣ୍ଡରେ ଲଗାଇ ମାମ୍ପୀର ପ୍ରଣାମ ଗ୍ରହଣ କଲେ ।

ସନ୍ଧ୍ୟା ଓ ମାମ୍ପା ଆଖିରେ ଲୁହ ଦେଖି, ତାଙ୍କର ବି ଲୁହ ଖସି ଆସିଲା । ମାମ୍ପା ସେମିତି ଚଟିଖଣ୍ଡିକ ଧରି ଠିଆ ହୋଇଥାଏ ।

ସନ୍ଧ୍ୟା ଜାକିନେଲା ଆଶାକୁ । ହାତରେ ଧରିଥିବା ନୋଟ୍ ବଣ୍ଡିଟି ପ୍ରଶାନ୍ତ ଆଡ଼େ ବଢ଼ାଇ କହିଲା, "ନିଅନ୍ତୁ ପ୍ରଶାନ୍ତବାବୁ । ଅଶୋକବାବୁ ଦେଇଥିବା ଟଙ୍କାରୁ ଏତିକି ବଳିଯାଇଛି । ମୋର ବର୍ତ୍ତମାନ ଛୁଟି । ଲୋକେ କହନ୍ତି ଗୃହଧାମ ତୀର୍ଥ ସାରି ଗଙ୍ଗାରେ ସ୍ନାନ କଲେ ମଣିଷ ପାପରୁ ମୁକ୍ତ ହୁଏ । ତେଣୁ ମୁଁ ବାହାରିଲି ସେଇ ରାସ୍ତାରେ । ଅଶୋକବାବୁଙ୍କ କଳ୍ପନାର ଡାକ୍ତରଖାନା ତୁମରି ହାତରେ ସମର୍ପି ଦେଇଯାଉଛି ।

ମାମ୍ପା ସନ୍ଧ୍ୟାକୁ ଜାବୁଡ଼ି ଧରି କହିଲା, "ଅପା……ଅପା, ତୁମେ ଯାଅନି ଅପା ।"

ଏତିକିବେଳକୁ ସନ୍ଧ୍ୟାର ବେଡ଼ିଂ ଓ ସୁଟ୍‌କେଶ ପ୍ରଶାନ୍ତ ଉଠାଇ ଥିବା କମ୍ପାର୍ଟମେଣ୍ଟରେ ରହି ସାରିଲାଣି ।

ମାମ୍ପାକୁ ଆସ୍ତେ ଆସ୍ତେ ଦୂରେଇ ଦେଇ ସନ୍ଧ୍ୟା କହିଲା, "ମାମ୍ପା… ! ମୁଁ ଯିବାପୂର୍ବରୁ ଜୀବନର ସମସ୍ତ କର୍ତ୍ତବ୍ୟ ସାରିଦେଇଛି । ବୟସ ବି ଖୁବ୍ ବଢ଼ିଗଲାଣି । ବହୁତ ଭାବି ଭାବି ଆଜି ବାହାରିଛି । କେବଳ ଅପେକ୍ଷା କରିଥିଲି ପ୍ରଶାନ୍ତବାବୁଙ୍କ ବିଦେଶ ଫେରିବା ଦେଖିବାକୁ ।

ଆଶାକୁ ପ୍ରଶାନ୍ତଙ୍କ ପାଖରୁ ଆଣି, ସନ୍ଧ୍ୟା ଖୁବ୍ ଜୋର୍‌ରେ ଜାକିନେଲା । ଏତିକିବେଳେ ଚହଲି ଉଠିଲା ତାର ବ୍ଲାଉଜ୍ ଭିତରେ ଥିବା ଅଶୋକବାବୁଙ୍କ ଉଷ୍ମ ଅଶ୍ରୁଭରା ଶିଶିଟି । ମାଂସାଳ ସ୍ତନ ଭିତରେ ଅଶ୍ରୁ ଶିଶିଟିର ପରଶ ଜାଗ୍ରତ କଲା ତାର ଶୋକାକୁଳ ନିସ୍ତବ୍ଧ ଶରୀରରେ ତୀବ୍ର ଆନ୍ଦୋଳନ । ସେଇ ଅଶ୍ରୁର ଉଷ୍ମତା ନେଇ ତାର ଆଖିରୁ କେଇ ଟୋପା ଲୁହ ଖସିପଡ଼ିଲା ଅଶୋକବାବୁଙ୍କ ଝିଅ ଆଶାର ମଥା ଉପରେ । ବେଶି ସମୟ ଆଶାକୁ ଜାକି ଧରି ଠିଆ ହୋଇ ପାରିଲାନି । ଭାବିଲା, ଅଶୋକବାବୁଙ୍କ ଏଇମାନ ସର୍ବଶ୍ରେଷ୍ଠ ଅନୁରୋଧ ବାକି ରହିଛି । ତାର ସ୍ତନ ଭିତରେ ସେଇ ଅଶ୍ରୁ ଶିଶିକୁ ଧରି

ଗଙ୍ଗା ଯମୁନାର ସଙ୍ଗମରେ ମିଶିବାକୁ ପଡ଼ିବ । ଏଇ ଅଶ୍ରୁ ହିଁ ଗୁପ୍ତ-ସରସ୍ୱତୀ ହୋଇ ସୃଷ୍ଟି କରିବ ଦୁହିଁଙ୍କ ପ୍ରେମର ମହାପ୍ରୟାଗ । ଗଙ୍ଗୋତ୍ରୀରୁ ଝରି ବାହାରି, ଦେବପ୍ରୟାଗରେ ଗଙ୍ଗାର ପବିତ୍ରତା ଲାଭ କରି, ହରିଦ୍ୱାରରେ ସମତଳକୁ ସ୍ପର୍ଶ କରିସାରିଲାଣି । କେବଳ ବାକି ରହିଛି—ଗୁପ୍ତ-ସରସ୍ୱତୀକୁ ବକ୍ଷରେ ଧରି ଯମୁନାର ମିଶ୍ରଣ । ଆଉ ଭାବି ପାରିଲାନି ।

ଆଶାର କେଶ ଉପରେ ଗାଢ଼ ଚୁମ୍ବନଟିଏ ଦେଇ ଅଶ୍ରୁ ଗଦ୍‌ଗଦ କଣ୍ଠରେ ସନ୍ଧ୍ୟା କହିଲା, "ଆଶା, ଏ ମାମିକୁ ଭୁଲି ଯିବୁନି ।"

ପ୍ରଶାନ୍ତ ଅଶ୍ରୁ ଜର୍ଜରିତ ଆଖି ଉପରେ ପାପୁଲିକୁ ଚୁପି ନେଇ କହିଲେ, "ଅଚ୍ଛା······ତୁମେ ଚାଲିଯିବ !!!" ଆଉ କିଛି କହି ପାରିଲେନି ।

"ହିଁ ପ୍ରଶାନ୍ତବାବୁ । ହୁଇସିଲ ହେଲାଣି । ମୁଁ ଯାଉଛି " କହି ଆଶାକୁ ମାୟାଁ ହାତରେ ସନ୍ଧ୍ୟା ଧରେଇ ଦେଲା । ମାୟାଁକୁ ନିରୀକ୍ଷଣ କରି ରହିଲା କିଛିଟା ସମୟ ପାଇଁ । ତା' ପରେ ଲୁହ ପୋଛି ପୋଛି ଡ଼ବାକୁ ଉଠିଲା ।

କେତେ ଜଣ ସହଯାତ୍ରୀ ବି ଏ କରୁଣ ଦୃଶ୍ୟ ଦେଖିବାର ସୁଯୋଗ ଛାଡ଼ି ନଥାନ୍ତି ।

ଡବାକୁ ଉଠି ଗେଟ୍ ସାମନାର ଲୌହଦଣ୍ଡକୁ ଧରି ସନ୍ଧ୍ୟା ଠିଆ ହୋଇଥାଏ । ଗାଡ଼ି ଗଡ଼ିଲା । ଚକେ ଘୂରିଲେ ବାର ହାତ । ବାର ଚକ ଘୂରିଲେ କେତେ ହାତ ନହେବ !!!

ସନ୍ଧ୍ୟା ଆଖିରେ ଅସରନ୍ତି ଧାର । ପ୍ରଶାନ୍ତ ଓ ମାୟାଁ ବହୁତ ବେଳଯାଏଁ ଚାହିଁ ରହିଲେ ସେଇ ଧାରକୁ······

କାକଟପୁର
୧୦-୮-୭୬



# ଏଇ ପ୍ରକାଶନ ସଂସ୍ଥାର ଉପାଦେୟ ବହି କେତୋଟି

## ● ଉପନ୍ୟାସ

ମଧୁମିତା
ଅଭିମନ୍ତ୍ରିତା
ମରୁ ଝରଣା
ମାନସ ମନ୍ଥନ
ଶତାବ୍ଦୀର କ୍ଷୁଧା
ରୁମ୍ ନମ୍ବର ତେର

## ● ଜୀବନୀ-ସମାଲୋଚନା

ଚିତ୍ରଲେଖା
ସପ୍ତ ସାରଥି
ସାହିତ୍ୟ ଓ ସାହିତ୍ୟିକ
ଜାନକୀଶବିଳାସ ରାମାୟଣ

## ● ନାଟକ ଓ ଏକାଙ୍କିକା

ସହସ୍ର ଶିଖା
ପାହାନ୍ତ ତାରା
ପହିଲି ଆଷାଢ଼
ଫଲ୍ଗୁର ବନ୍ୟା
ଏଇ ଆବରଣ ତଳେ (ଏକାଙ୍କିକା)

## ● କବିତା ସଂଚୟନ

ଶହେଟି ସନେଟ
ଅସଲଗ୍ନ ପାଖୁଡ଼ା କେତୋଟି
ଗୋଟିଏ ଜନ୍ମରାତିର ଇତିବୃତ୍ତ

